# ହଂସପ୍ରହରୀ
# ଓ ଅନ୍ୟାନ୍ୟ ଗଳ୍ପ

ଅର୍ଚ୍ଚନା ନାୟକ

ଗ୍ରନ୍ଥମନ୍ଦିର,
ବିନୋଦବିହାରୀ, ମନ୍ଦିରଲେନ୍, କଟକ-୨

ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ପ୍ରକାଶନ ପରିଚାଳନା : ଅଭିରାମ ମହାପାତ୍ର

ମୁଦ୍ରଣ : ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟସ୍
'ଶ୍ରୀନିବାସ', ସୂତାହାଟ, କଟକ-୧

ଡି.ଟି.ପି. : 'ସାବିତ୍ରୀ', ସହିଦ ନଗର

ପ୍ରଥମ ସଂସ୍କରଣ : ୦୧/୦୪/୨୦୧୩
(୭୫୦)

ମୂଲ୍ୟ : ଟ. ୧୫୦/-

## ସୂଚୀପତ୍ର

ମୋର କଲ୍ୟାଣୀୟ ପୁତ୍ର **ସିଦ୍ଧାର୍ଥ** ଓ

ପୁତ୍ରବଧୂ **ବନ୍ଦିତା**ଙ୍କ ହାତରେ ।

# ହଂସ ପ୍ରହରୀ

ସନ୍ଧ୍ୟାବେଳେ ପଣ୍ଡିଚେରୀ ସମୁଦ୍ରକୂଳ ସାମ୍‌ନା ରାସ୍ତାରେ ଗାଡ଼ିମଟର ଯାନବାହାନର ଚଳାଚଳ ନିଷିଦ୍ଧ । ସାନ୍ଧ୍ୟଭ୍ରମଣ କରୁଥିବା ଛୋଟ ପିଲାଙ୍କଠାରୁ ବୟସ୍କଙ୍କ ଯାଏ ବହୁପ୍ରକାର ଲୋକଙ୍କର ଗହଳି । ଫୁଟ୍‌ପାଥ୍‌ର ସିମେଣ୍ଟ ବାଡ଼ ଉପରେ ବସି ଗପ ଜମାଇଥିବା ସ୍ତ୍ରୀ ପୁରୁଷଙ୍କ ସଂଖ୍ୟା କିଛି କମ୍ ନୁହେଁ ।

ସେଦିନ ମୁଁ ମଧ୍ୟ ସେଇ ବାଡ଼ ଉପରେ ଏକୁଟିଆ ସମୁଦ୍ରକୁ ପଛକରି ବସିଥାଏ । ଆଗରେ ଚଲାବୁଲା କରୁଥିବା ଲୋକଙ୍କ ଉପରେ ଦୃଷ୍ଟି ପଡୁଥିଲେ ବି ମୁଁ ପ୍ରକୃତରେ କାହାରିକୁ ଦେଖୁନଥାଏ । ଚିହ୍ନାଜଣା କେହି ବୁଲୁଥିଲେ ବି ସେମାନଙ୍କ ମଧ୍ୟରୁ କାହାରିକୁ ଚିହ୍ନି ପାରିବା ପାଇଁ ଯେତିକି ସଚେତନତା ଆବଶ୍ୟକ ତା' ମୋର ରହୁନଥିଲା । ମୁଁ ସମ୍ପୂର୍ଣ୍ଣ ଅନ୍ୟମନସ୍କ ହୋଇ ପଡ଼ିଥିଲି ।

ହଠାତ୍ କାହା ଡାକରେ ମୋର ଧ୍ୟାନ ଭାଙ୍ଗିଗଲା । ମୁଁ ଚାହିଁ ଦେଖିଲି ମୋ ପାଖରେ ଠିଆ ହୋଇଛି ପଣ୍ଡିଚେରୀରେ ରହୁଥିବା ମୋର ଜଣେ ପୁରୁଣା ବନ୍ଧୁ ନିକିତା । ସେ ଏଠାରେ ବହୁବର୍ଷ ହେଲାଣି ରହୁଛି । ମୁଁ ଏଠାକୁ ଯେବେ ଆସେ ତା' ସହିତ ଦେଖାକରେ । କିଛି କିଛି ସମୟ ସାଙ୍ଗ ହୋଇ

କଟାଇଥାଉ । କିନ୍ତୁ ଏଥର ମୋର ଏଠାକୁ ଆସିବା ସାତଆଠ ଦିନ ହୋଇ ଯାଇଥିଲେ ବି ମୋର ତା' ସହିତ ଯୋଗାଯୋଗ ହୋଇପାରିନଥିଲା । ଜାଣିନି ମତେ ଏଥର ପୂରା ଏକାକୀ ନୀରବ ହୋଇ ରହିବାକୁ କାହିଁକି ଏତେ ଭଲ ଲାଗୁଥିଲା ।

କିନ୍ତୁ ହଠାତ୍ ତାକୁ ସେଠି ଦେଖିଦେବା ପରେ ମତେ ଖୁବ୍ ଭଲ ଲାଗିଲା । ମୁଁ ତାର ବେଶ ପୋଷାକ ଉପରେ ଆଖିବୁଲାଇ ନେଇ ହସିହସି କହିଲି, "ଆରେ ନିକିତା ତୁ କେବେଠାରୁ ଇଭିନିଙ୍ଗ୍ ୱାକ୍ କଲୁଣି ?"

ସେ ମୋ କଥାକୁ ଗୁରୁତ୍ୱ ନଦେଇ କହିଲା "ତୁ କେବେଠୁ ଆସିଲୁଣି ?"

"ଏଇ ସାତ ଆଠ ଦିନ ହେବ ।"

"ଆଚ୍ଛା ଏତେ ଦିନ ହେଲାଣି ଆସିଲୁଣି, ମତେ ଖବର ବି ଦେଇନୁ ! କଥା କ'ଣ ?"

ମୁଁ ମନେମନେ ଟିକେ ଅପ୍ରସ୍ତୁତ ହେଲେ ବି ସହଜ ଭାବରେ କହିଲି, "ନାଇଁରେ, ଏଥର କାହିଁକି ଟିକେ ଏକୁଟିଆ ଚୁପ୍‌ଚାପ ରହିବାକୁ ଇଚ୍ଛା ହେଉଛି ।"

ସେ ମୋ କଥା ବୁଝିପାରିଲା । ସେ ବିଷୟରେ ଆଉ ଅଧିକ କିଛି ନପଚାରି ନିକିତା କହିଲା, "ହଉ ଠିକ୍ ଅଛି । ଯଦି ଇଚ୍ଛା କରିବୁ ମୋ ପାଖକୁ ଆସିବୁ । ନହେଲେ ତୁ ଯେଉଁଠି ରହୁଛୁ, ସେଠିକି ମତେ ଡାକିପାରୁ ।"

ସେ ଯିବାକୁ ବାହାରିଲା । ସେତିକି ସମୟ ଭିତରେ ମୋ ଭିତରର ନୀରବତାର ସୁରଟି କିପରି କଟିଯାଇଥିଲା । ମୁଁ ତାକୁ ଅଟକାଇ ଦେଇ କହିଲି, "ଛାଡ଼ ତତେ ଦେଖିବା ପରେ କ'ଣ ମୁଁ ଆଉ ଏକୁଟିଆ ବସିବାକୁ ଚାହିଁବି । ଚାଲ୍ ମୁଁ ବି ତୋ ସହିତ ରାସ୍ତାରେ ୱାକ୍ କରିବି । କଥା ହୋଇହୋଇ ଯିବା ।"

ନିକିତା ଆମଠାରୁ ଅଳ୍ପ ଦୂରରେ ଠିଆ ହୋଇଥିବା ଅନ୍ୟ ଜଣେ ଝିଅକୁ ହାତଠାରି ଡାକିଲା । ମୁଁ ଦେଖିଲି ସେ ଝିଅ ଆମ ବୟସର ହେବ । ବର୍ଣ୍ଣ କଳା । ସାଧାରଣ ସ୍ୱାସ୍ଥ୍ୟ । ପତଳା ଡେଙ୍ଗା ଚେହେରା, ମୁହଁର ଗଢ଼ଣ ବେଶ୍ ଆକର୍ଷଣୀୟ ମନେ ହେଲା । ସେ ମଧ୍ୟ ନିକିତା ପରି ଜିନ୍ ଓ ସାର୍ଟ ପିନ୍ଧିଥିଲା । ପାଦରେ ଥିଲା ୱାକିଂ ସୁ । ମୁଁ ବୁଝିଗଲି ସେ ଦୁହେଁ ଏକାଠି ୱାକ୍ କରୁଥିଲେ । ଫୁଟପାଥର ସିମେଣ୍ଟ ବାଡ଼ ଉପରେ ମତେ ବସିଥିବାର ଦେଖିପାରି ନିକିତା ମୋ ପାଖକୁ ଆସି କଥା ହେଉଥିବାରୁ ସେ ହୁଏତ ଜାଣିକରି ଟିକେ ଦୂରଛଡ଼ା ହୋଇ ରହିଛି ।

ନିକିତା ମତେ ଚିହ୍ନାଇବାକୁ ଯାଇ ଇଂରେଜିରେ କହିଲା, "ମାରିଆ, ଇଏ ହେଉଛି ମୋର ପିଲାଦିନର ବନ୍ଧୁ ରୀତା । ମୁଁ ଓଡ଼ିଶାରେ ଥିବାବେଳେ ଆମେ ସାଙ୍ଗହୋଇ ପାଠ ପଢ଼ିଛୁ । ତା'ପରେ ମୁଁ ଏଠି ଆସି ରହିଲି, ସେ ସେଇଠି ଅଛି । ସେଠାକାର ଗୋଟେ କଲେଜରେ ଅଧ୍ୟାପିକା ଅଛି । ମଝିରେ ମଝିରେ ଏଠାକୁ ଆସେ ।"

ପୁଣି ମୋ ଆଡ଼କୁ ଚାହିଁ କହିଲା, "ରୀତା ଇଏ ହେଉଛି ମାରିଆ ଡୁରାଣ୍ଡ । ବେଶ୍ କିଛି ଦିନ ହେଲାଣି ଆମେ ବନ୍ଧୁ ହୋଇଛୁ । ଏକାଠି ସନ୍ଧ୍ୟାବେଳଟା କଟାଉଛୁ ।"

ମାରିଆ ଓ ମୁଁ ପରସ୍ପରକୁ ସାଦର ସମ୍ଭାଷଣ ଜଣାଇଲୁ । ନିକିତା ମତେ ଦେଖିବା ପରେ ମୋ ସହିତ ଆଉ କିଛି ସମୟ କଟାଇବାକୁ ଚାହୁଁଥିଲା । ଏଣେ ମାରିଆକୁ ଏକା ଫେରିଯିବାକୁ କହି ପାରୁନଥିଲା । ତେଣୁ ସେ ପ୍ରସ୍ତାବ ଦେଲା, "ଚାଲ ତିନିଜଣ ମିଶି ସମୁଦ୍ର କୂଳରେ ଥିବା 'ସିଭିୟୁ' ରେସ୍ତୋରାଁରେ କଫି ପିଇବା ।"

ମାରିଆ ରାଜିହେଲା । ମୁଁ ତା' ପ୍ରସ୍ତାବରେ ଖୁସି ହୋଇଗଲି । ଏଇ କିଛିଦିନ ହେଲାଣି ମୋର ଏକା ରହିବାଟାକୁ ମୁଁ ବେଶ୍ ଉପଭୋଗ କରୁଥିଲି । ହଠାତ୍ ସାଙ୍ଗ ଜଣକୁ ଦେଖି ମୁଁ ଏତେ ଉଲ୍ଲାସ ଅନୁଭବ କରିବା କଥାଟା ମତେ ବି ଆଶ୍ଚର୍ଯ୍ୟ କରିଥିଲା ।

କଫି ପିଉପିଉ ନିକିତା, ମାରିଆ ବିଷୟରେ ଯେତିକି କହିଲା ସେଥିରୁ ମୁଁ ବୁଝିଲି ଯେ ଏଠାରେ ଫ୍ରେଞ୍ଚମାନେ ଥିବାବେଳେ ସେମାନଙ୍କ ଭିତରୁ ଯେଉଁ କେତେଜଣ ସ୍ଥାନୀୟ ତାମିଲ ଝିଅଙ୍କୁ ବାହାହୋଇ ଏଠାକାର ସ୍ଥାୟୀ ବାସିନ୍ଦା ହୋଇଯାଇଛନ୍ତି ତା' ମଧ୍ୟରୁ ମାରିଆର ପରିବାର ଗୋଟିଏ । ମୁଁ ସେତେବେଳେ ବୁଝିପାରିଥିଲି ଏ ଝିଅର ଫ୍ରେଞ୍ଚ ନାମ ସହିତ କଳାରଙ୍ଗ ଓ ମୁହଁର ଗଢ଼ଣ ଏପରି କାହିଁକି ହୋଇଛି । ସେ ନିଶ୍ଚୟ ତା' ମାଙ୍କ ପରି ହୋଇଥିବ । ତେଣୁ ମାତୃସୂତ୍ରରେ ବର୍ଣ୍ଣ ଓ ଗଢ଼ଣ ପାଇଛି ।

ଏ ସମସ୍ତ କଥା ମତେ ନିକିତା ଇଂରାଜୀରେ କହିଥିଲା । କାରଣ ଆମେ ଓଡ଼ିଆରେ କଥାହେଲେ ଆମ ଭାଷା ଆଦୌ ବୁଝୁନଥିବା ମାରିଆକୁ କାଳେ ଅଡୁଆ ଲାଗିବ । ମୋ ବିଷୟରେ ମଧ୍ୟ ସେ ଗୋଟେ ବିସ୍ତୃତ ପରିଚୟ ଦେଇଦେଲା । ତା'ପରେ ନିକିତା ପରିହାସ କରି ମାରିଆକୁ କହିଲା, "ଜାଣିଛ ଆମ ତିନିଜଣଙ୍କ ମଧ୍ୟରେ କେଉଁ କଥାଟି ସମାନ ରହିଛି ?"

ମାରିଆ ଓ ମୁଁ ତା' ମୁହଁକୁ ଚାହୁଁଥିବାବେଳେ ସେ କିଛି ଗୋଟେ ଘୋଷଣା କରିବାପରି ଭଙ୍ଗୀରେ କହିଲା "ଆମେ ତିନିଜଣ ଯାକ ତିରିଶ ବର୍ଷ ପାର ହୋଇଗଲେ ବି କେହି ଏପର୍ଯ୍ୟନ୍ତ ବାହା ହୋଇନୁ । ମୋର ଯାହା ମନେ ହୁଏ ମୁଁ ଓ ମାରିଆ ଆମର

ସ୍ୱାଧୀନତା ହରାଇବାକୁ ଚାହୁଁନୁ । ରୀତା, ତୋ'କଥା ମୁଁ କହିପାରିବିନି । ଏ ଭିତରେ ତୁ ତୋ'ର ଅବିବାହିତା ଷ୍ଟାଟସ ବିଷୟରେ କ'ଣ କରିବାକୁ ଯାଉଛୁ । ତେବେ ଆମେ ବର୍ତ୍ତମାନ ସମସ୍ତେ ସମାନ ଷ୍ଟାଟସ ଉପଭୋଗ କରୁଛେ ।"

ତା' କଥାରେ ଆମେ ଦୁହେଁ ବେଶ୍ ଆମୋଦିତ ହେଲୁ । କଫି ସରିଆସିଥିଲା । ମୁଁ ସେ ଦୁହିଁଙ୍କଠାରୁ ବିଦାୟ ନେଇ ମୋ ଗେଷ୍ଟହାଉସ୍‌କୁ ଫେରିବା ପୂର୍ବରୁ ମାରିଆ ହଠାତ୍ ଖୁବ୍ ଆବେଗରେ ମତେ ଓ ନିକିତାକୁ ତା' ପରଦିନ ଅପରାହ୍ନ ପାଞ୍ଚଟା ବେଳକୁ ତା' ଘରକୁ କଫି ପାଇଁ ନିମନ୍ତ୍ରଣ ଜଣାଇଲା ।

ନିକିତା ମୋର ସମ୍ମତି ଚାହିଁଲା । ମତେ ସେତେବେଳକୁ ମାରିଆ ବେଶ୍ ଭଲ ଲାଗିଗଲାଣି । ତା'ଛଡ଼ା ତା'ର ଫ୍ରେଞ୍ଚ ଓ ତାମିଲ କମ୍ବିନେଶନ ମତେ କେମିତି କୌତୂହଳୀ କରିସାରିଥିଲା । ସେମାନଙ୍କ ବିଷୟରେ ଅଧିକ କିଛି ଜାଣିବା ପାଇଁ ମୋର ଆଗ୍ରହ ହେଉଥିଲା । ମୁଁ ଖୁସିରେ ତା' ପ୍ରସ୍ତାବରେ ରାଜି ହୋଇଗଲି ।

କଥା ଅନୁସାରେ ପରଦିନ ନିକିତା ଠିକ୍ ସମୟରେ ଅଟୋଟିଏ ଧରି ମୋ ପାଖରେ ଆସି ପହଞ୍ଚିଲା । ଦୁହେଁ ସାଙ୍ଗହୋଇ ଚାଲିଲୁ ମାରିଆ ଘରକୁ । ତା' ଘର ଥିଲା ପଣ୍ଡିଚେରୀ ମୁଖ୍ୟ ସହରଠାରୁ କିଛି ଦୂରରେ ।

ନିକିତା କଥାନୁସାରେ ଗୋଟେ ବିରାଟ ଗେଟ୍ ପାଖରେ ଅଟୋ ଛିଡ଼ାହେଲା । ଅଟୋରୁ ଦୁହେଁ ଓହ୍ଲାଇ ତାକୁ ଫେରିଯିବାକୁ କହି ଗେଟ୍ ଖୋଲି ଭିତରକୁ ପଶିଲୁ । ଭିତରର ଶ୍ୟାମଳ ଶୋଭା ଓ ପ୍ରସ୍ଫୁଟିତ ପୁଷ୍ପର ବର୍ଣ୍ଣବିଚିତ୍ରା ମତେ ମୁହୂର୍ତ୍ତକ ମଧ୍ୟରେ ଅଭିଭୂତ କରିଦେଲା । ମୁଁ ସେଇଠି ସେମିତି ଠିଆହୋଇ କିଛି ସମୟ ଚାହିଁରହିଲି ।

ଗେଟ୍ ଠାରୁ ପୋର୍ଟିକୋ ଥିଲା କିଛି ଦୂରରେ । ଘରର ଆକୃତି ତାକୁ ଘେରି ରହିଥିବା ବଡ଼ବଡ଼ ଗଛଗୁଡ଼ିକ ଭିତରେ ପ୍ରାୟ ହଜିଯାଇଥିଲା । ପୋର୍ଟିକୋ ଉପରେ ମାଡ଼ିଥିବା ପ୍ୟାରିସ୍‌ଗେଟ୍ ଲତାରେ ଭର୍ତ୍ତି ହୋଇଥିଲା ପେନ୍ଥାପେନ୍ଥା ନାରଙ୍ଗୀ ରଙ୍ଗର ଫୁଲ । ଗେଟ୍ ପାଖରୁ ପୋର୍ଟିକୋ ଯାଏ ଲମ୍ବିଯାଇଥିଲା ମାଟି ତିଆରି ପରିଚ୍ଛନ୍ନ ରାସ୍ତାଟିଏ । ରାସ୍ତାର ଦୁଇକଡେ ପ୍ରାୟ ଦୁଇ ଫୁଟ ଚଉଡ଼ାର ବର୍ଣ୍ଣିଳ ଶୀତଦିନିଆ ଫୁଲର ଦୁଇଟି ଧାରା ପୋର୍ଟିକୋ ଦିଗରେ ଲମ୍ବି ଯାଇଥିଲେ । ଫୁଲର ପଥକୁ ଲାଗି ଉଭୟ ପାର୍ଶ୍ୱରେ ସବୁଜ ରଙ୍ଗ ମଖମଲି ଘାସର ଆସ୍ତରଣ ଦୁଇଟି ସବୁଜ ଗାଲିଚା ବିଛା ହୋଇଥିବା ପରି ଦିଶୁଥିଲେ ।

ମୁଁ ମୁଗ୍ଧ ହୋଇ ସେସବୁ ଦେଖିଦେଖି ଚାଲିଥାଏ । ମୋଠୁ ବେଶ୍ ଟିକେ ଆଗରେ ଯାଉଥାଏ ନିକିତା । ସେ'ତ ସବୁବେଳେ ଏସବୁ ଦେଖୁଥି , ତାକୁ ନୂଆ ବା ଲାଗିବ କ'ଣ ।

ହଠାତ୍ ମୋ ଆଖି ପଡ଼ିଗଲା ଟିକେ ଦୂରରେ ଥିବା ଏକ ଅଜଣା ଗଛର ଗଣ୍ଡିକୁ ଗାଢ଼ ବାଇଗଣୀ ରଙ୍ଗର ଅର୍କିଡ୍ ଫୁଲରେ ଭର୍ତ୍ତି ଲତାଟିଏ ଜାବୁଡ଼ି ଧରି ପବନର ମୃଦୁ ସ୍ପର୍ଶରେ ଧୀରେ ଧୀରେ ଦୋହଲୁଛି । ମୁଁ ପୂର୍ବରୁ ଥରେ ଅଧେ କାହା ଘରର ଫୁଲଦାନୀରେ ଅର୍କିଡ ଦେଖିଥିଲି । ଆଉ ଦାମ ବେଶି ହୋଇଥିବାରୁ ଏ ଫୁଲ ବଜାରରେ କେବେ ବିକ୍ରି ହେବାର ମୁଁ ଦେଖିନାହିଁ ।

ମୁଁ ସେ ଅପୂର୍ବ ଦୃଶ୍ୟରେ ବାଟ ଭାଙ୍ଗି ସେ ଗଛ ପାଖକୁ ଦଉଡ଼ିଗଲି । ଆଃ ଏତେ ଅର୍କିଡ୍ । ସେ ଅର୍କିଡ ଫୁଲକୁ ହାତରେ ଛୁଇଁ ଟିକେ ଅନୁଭବ କରିବାକୁ ଚାହୁଁଥିଲି । କିନ୍ତୁ ସେ ଦିଗରେ ହାତ ବଢ଼ାଇଛି କି ନାହିଁ ଶୁଣାଗଲା ଗୋଟେ ଅଦ୍ଭୁତ ତୀବ୍ର ସ୍ୱର "କ୍ୱାକ୍", "କ୍ୱାକ୍" ।

ମୁଁ ପଛକୁ ଚାହିଁଦେଇ ତଟସ୍ଥ ହୋଇଗଲି । ମୋ ଦିଗରେ ମାଡ଼ି ଆସୁଥାଏ ଗୋଟାଏ ବିରାଟ ରାଜହଂସ । ତା'ର ଲମ୍ବା ବେକକୁ ଆହୁରି ଆଗକୁ ଲମ୍ବାଇ ଦେଇ ମେଲା ଥଣ୍ଟରେ ସେଇ ଅଦ୍ଭୁତ ସ୍ୱର କରିକରି ମୋର ନିକଟତର ହେଉଥାଏ । ତା'ର ସେ ରୂପ ଦେଖି ସେ ଯେ ମତେ ଆକ୍ରମଣ କରିବାକୁ ଆସୁଛି ଜାଣି ଭୟରେ ମୋର ଗୋଡ଼ ହାତ ଥରିବାକୁ ଲାଗିଲା । ଛାତିଟା ଦମଦମ ହୋଇ ଦେହରେ ଝାଳ କଣ୍ଟି ଯାଉଥାଏ । ଗୋଟେ ହଂସର ଏପରି ଭୟଙ୍କର ରୂପ କଥା ମୁଁ କେବେ ବି କଳ୍ପନା କରିନଥିଲି । ମୋ ଆଖି ବୁଜି ହୋଇଗଲା । ମୁଁ ଅସହାୟ ଭାବରେ ତା'ର ଥଣ୍ଟର ଆଘାତକୁ ଅପେକ୍ଷା କରୁଥାଏ ।

ଏତିକିବେଳେ ଶୁଣିପାରିଲି ଜଣେ ପୁରୁଷ ଲୋକର କଣ୍ଠସ୍ୱର । ସେ ତାଗିଦ କଲାପରି କହୁଥିଲେ, "ଷ୍ଟପ୍ ଷ୍ଟପ୍ ଡାଭିଡ । ସି ଇଜ୍ ନଟ୍ ଗୋଇଙ୍ଗ୍ ଟୁ ହାର୍ମ ୟୋର ଫ୍ଲାଓ୍ୱାରସ୍ ।"

ମୁଁ ଆଖି ଖୋଲି ଚାହିଁଲି । ଜଣେ ଅତି ଗୋରା ରଙ୍ଗର ବୟସ୍କ ବ୍ୟକ୍ତି ପୋର୍ଟିକୋ ବାହାରକୁ ବାହାରି ଆସି ହଂସକୁ ଫେରିଯିବାକୁ ହାତରେ ଇଙ୍ଗିତ କରୁଛନ୍ତି । ନିକିତା ମଧ୍ୟ ସେଇ ରାସ୍ତାରେ ସ୍ଥାଣୁ ହୋଇ ଠିଆହୋଇଛି ।

ହଂସଟି ତା'ର ପ୍ରସାରିତ ଦୀର୍ଘ ଗ୍ରୀବାକୁ ସଂକୁଚିତ କରିନେଇ ବେଶ୍ ଲୀଳାୟିତ ଭଙ୍ଗୀରେ ପାଦ ପକାଇ ପକାଇ ଫେରିଗଲା । ମୁଁ ଆଶ୍ୱସ୍ତିର ଦୀର୍ଘ ନିଃଶ୍ୱାସଟିଏ ମାରିଲି ।

ନିକିତା ମୋ ପାଖକୁ ଦଉଡ଼ି ଆସି କହିଲା "ତୁ ଏ ରାସ୍ତା ଛାଡ଼ି ସେ ଗଛ ପାଖକୁ କାହିଁକି ଯାଇଥିଲୁ ?"

ମୋ ପାଟିରୁ କଥା ବାହାରୁ ନଥାଏ । ମୁଁ ତାକୁ ଅର୍କିଡ୍ ଆଡ଼କୁ ହାତ ବଢ଼ାଇ ଦେଖାଇଲି । ସେତେବେଳକୁ ଉକ୍ତ ଭଦ୍ରଲୋକ ଆମ ପାଖରେ ପହଞ୍ଚି ଯାଇଥିଲେ ।

ନିକିତା ତାଙ୍କୁ ନମସ୍କାର କରି ମତେ ଚିହ୍ନାଇ ଦେବାକୁ ଚେଷ୍ଟା କରିବା ବେଳକୁ ସେ ଖୁବ୍ ବିନୀତ ଭାବରେ ଇଂରାଜୀରେ କହିଲେ, "ମୁଁ ବହୁତ ଦୁଃଖିତ । ଆପଣ ଅସୁବିଧାରେ ପଡ଼ିଲେ । ଆସନ୍ତୁ ଭିତରକୁ ଆସନ୍ତୁ ।"

ଅଳ୍ପ ସମୟ ପୂର୍ବରୁ ଘଟିଯାଇଥିବା ଘଟଣାଟି ଥିଲା ମୋ ପାଇଁ ଅଭାବିତ । ମୁଁ ସେ ଆକ୍ରମଣକାରୀ ହଂସର ରୂପ ଭୁଲି ପାରୁନଥାଏ । ନିକିତା ମତେ ହଲାଇ ଦେଇ କହିଲା, "ଇଏ ହେଉଛନ୍ତି ମାରିଆର ବାପା ଜ୍ୟାକେସ୍ ଡୁରାଣ୍ଡ ।"

ମୁଁ ତାଙ୍କୁ ହାତଯୋଡ଼ି ନମସ୍କାର କଲି ।

ସେ ମତେ ପ୍ରତି ନମସ୍କାର ଜଣାଇ ହସିହସି କହିଲେ, "ତୁମେ ନିଶ୍ଚୟ ରୀଟା । କଲେଜରେ ପାଠ ପଢ଼ାଅ । ନିକିର ପିଲାଦିନର ସାଙ୍ଗ । ଓଡ଼ିଶାରୁ ଆସିଛ ।"

ଏଥର ମୋ ମୁହଁକୁ ହସ ଫେରିଆସିଲା । ମୁଁ ଆପାତତଃ ସହଜ ହୋଇଗଲି । ତାଙ୍କର ସୁନ୍ଦର ବଗିଚା ପାଇଁ ତାଙ୍କୁ ବହୁତ ପ୍ରଶଂସା କଲି । ସେ ମତେ ଘରର ବାରିପଟେ ଥିବା ବଗିଚା ଦେଖାଇବା କଥା କହୁଥିଲେ । ଏତେବେଳକୁ ମାରିଆ ଘରଭିତରୁ ବାହାରି ଆସିଥିଲା । ଏଇ କିଛି ସମୟ ପୂର୍ବରୁ ମୁଁ କିପରି ହଂସ ଆକ୍ରମଣର ଶିକାର ହେବାକୁ ଯାଉଥିଲି ସେ ଜାଣିନଥିଲା ।

ସେ ଆମ ଦୁହିଁଙ୍କୁ ସ୍ୱାଗତ କଲା। ଏଥର ଆମେ ତାଙ୍କର ପୋର୍ଟିକୋରୁ ଚଉଡା ଦାରଣ୍ଡା ଦେଇ ଘର ଭିତରକୁ ଗଲୁ । ପ୍ରଶସ୍ତ ବୈଠକ ଘର । ଭିତରେ ପଡ଼ିଥିବା ଆସବାବପତ୍ର ସବୁ ଥିଲା କୌଣସି ଦାମୀ କାଠରେ ତିଆରି । ପୋଛାପୋଛି ହୋଇ ସୋଫା, ଚୌକୀ, ଟେବୁଲ ସବୁ ଦର୍ପଣ ପରି ଚିକ୍‌ଚିକ୍ କରୁଥିଲା । ସେସବୁ ଥିଲା ପୁରୁଣା ଫ୍ରେଞ୍ଚ ଡିଜାଇନର । ଯାହା ମୁଁ କୋଉଠି କେବେ ବି ଦେଖିନଥିଲି । ମୁଁ ସେ ଘରର ସାଜସଜ୍ଜାକୁ ଦେଖୁଥାଏ ।

ମାରିଆ କହିଲା, "ଡାଡ଼ି ତୁମେ ରୀଟାଙ୍କ ସହିତ ଟିକେ କଥା ହେଉଥାଅ, ମୁଁ ଚା'ଟା ନେଇ ଆସୁଛି ।"

ନିକିତା ମଧ୍ୟ ତାକୁ କିଚେନ୍‌ରେ ସାହାଯ୍ୟ କରିବାକୁ ଭିତରକୁ ଚାଲିଗଲା ।

ମୁଁ ସେ ଭଦ୍ରଲୋକଙ୍କ ସହ କ'ଣ କଥାହେବି ଭାବିପାରୁନଥାଏ, ତଥାପି ହଠାତ୍ ପାଟିରୁ ବାହାରିଗଲା "ଆଚ୍ଛା ଅଙ୍କଲ ଆପଣ ଇଣ୍ଡିଆରେ କେବେଠାରୁ ରହିଲେଣି ?"

ସେ ହସିହସି କହିଲେ "ମୋ ଜେଜେବାପା ପିଅର ଡୁରାଣ୍ଡ ଏଠାର ଫ୍ରେଞ୍ଚ କଲୋନୀରେ ଚାକିରି କରିବାକୁ ଆସିଥିଲେ । ସାଙ୍ଗରେ ଥିଲେ ଜେଜେମା । ସେମାନେ

ଏଇଠି ଥିବାବେଳେ ଜନ୍ମ ହୋଇଥିଲେ ମୋ ବାପା ବର୍‌ନାର୍ଡ । ସେ ଏଇଠି ବଡ଼ ହୋଇଛନ୍ତି, ଖାଲି ତାଙ୍କ ବାହାଘର ପାଇଁ ସେ ଫ୍ରାନ୍‌ସର ବରଡେକ୍‌ସ ସହରରେ ଥିବା ଆମର ମୂଳ ଘରକୁ ଯାଇଥିଲେ । ମୋ ବାପାଙ୍କୁ ଇଣ୍ଡିଆ ବହୁତ ଭଲ ଲାଗୁଥିଲା । କିନ୍ତୁ ମୋ ମା କିଛିଦିନ ମାତ୍ର ଏଠାରେ ରହିବା ପରେ ଫ୍ରାନ୍‌ସକୁ ଫେରିଯିବାକୁ ବ୍ୟସ୍ତ ହୋଇପଡ଼ନ୍ତି । ମୁଁ ଦଶବର୍ଷର ହେଇଯିବା ପରେ ମା' ବାପାଙ୍କୁ ଛାଡ଼ପତ୍ର ଦେଇ ତାଙ୍କ ଦେଶକୁ ଫେରିଗଲେ । ମୁଁ ଜାଣେ ବାପା ମା ପରସ୍ପରକୁ ଖୁବ୍ ଭଲ ପାଉଥିଲେ । କିନ୍ତୁ ଦୁହିଁଙ୍କର ମନ ରହିବା ଜାଗାକୁ ନେଇ ମିଶିଲା ନାହିଁ ବୋଲି ଖୁବ୍ ଦୁଃଖରେ ପରସ୍ପର ଠାରୁ ଅଲଗା ହୋଇଯାଇଥିଲେ । କିନ୍ତୁ ମୋ ଜେଜେବାପା ଓ ଜେଜେମା ସେମାନଙ୍କର ମୃତ୍ୟୁଯାଏ ଏଇଠି ରହିଥିଲେ ।''

ମୁଁ ଭାବିଲି ଏ ଫରାସୀ ଭଦ୍ରଲୋକ କେତେ ସହଜରେ ନିଜର ବ୍ୟକ୍ତିଗତ ଜୀବନର କଥା କହିଯାଉଛନ୍ତି ।

ମୁଁ ଆଉ କିଛି ପଚାରିବା ପୂର୍ବରୁ କାନ୍ଥରେ ଟଙ୍ଗା ହୋଇଥିବା ଏକ ବିରାଟ ତୈଳଚିତ୍ର ଉପରେ ମୋର ଦୃଷ୍ଟି ପଡ଼ିଗଲା । ଛବିରେ ଜଣେ ଫରାସୀ ଭଦ୍ରଲୋକ ଖୁବ୍ ସଂଭ୍ରାନ୍ତ ପୋଷାକରେ ଛିଡ଼ା ହୋଇଥାନ୍ତି ।

ମୁଁ ସେ ଦିଗରେ ଚାହୁଁଥିବାର ଦେଖି ମାରିଆର ବାପା କହିଲେ "ଇଏ ମୋ ବାପା ବର୍‌ନାର୍ଡଙ୍କର ଛବି । ଆର୍ଟିଷ୍ଟ ଏତେ ଭଲ କରିପାରିନି ।"

ମୁଁ ବୋଧହୁଏ ସେମିତି ତାଙ୍କ କଥା ଖୁସିରେ ଶୁଣୁଛି ବୋଲି ଫଟୋ ପାଖକୁ ଉଠିଗଲି । ଭଲରେ ଦେଖିବାକୁ ଚେଷ୍ଟା କଲି । ଭଦ୍ରଲୋକ ଖୁବ୍ ଉତ୍ସାହିତ ହୋଇପଡ଼ି କାନ୍ଥରେ ଟଙ୍ଗା ହୋଇଥିବା ଫଟୋର ଲୋକଙ୍କ କଥା କ'ଣ ସବୁ କହୁଥିଲେ ମୁଁ ସେ ଆଡ଼ିକି ଧ୍ୟାନ ଦେଉନଥିଲି ।

ହଠାତ୍ ମୋର ଦୃଷ୍ଟି ପଡ଼ିଲା ମୋ ସହିତ କଥା ହେଉଥିବା ଭଦ୍ରଲୋକଙ୍କର କାଚବନ୍ଧାଇ ଫଟୋ ଉପରେ । କଡ଼ରେ ତାଙ୍କର ଜଣେ କୃଷ୍ଣବର୍ଣ୍ଣା ସ୍ୱାସ୍ଥ୍ୟବତୀ ମହିଳା । ନିକିତା କଥା ମୋର ମନେ ପଡ଼ିଗଲା । ମୁଁ ବୁଝିଗଲି ସେ ଫଟୋରେ ମାରିଆର ତାମିଲ ମା'ର ଛବି ରହିଛି ।

ଜ୍ୟାକେସ ଅଙ୍କଲ୍ ଟେବୁଲ ଉପରେ ଗୋଟେ କାଚବନ୍ଧାଇ ଫଟୋଟେ ଉଠାଇଆଣି ମତେ ଦେଖାଇଲେ । ଗୋରା ତକତକ ପନ୍ଦର ଷୋହଳ ବର୍ଷର ସୁନ୍ଦରୀ ଝିଅର ଫଟୋ । ସେ ମତେ ତାକୁ ଦେଖାଇ କହିଲେ, "ଇଏ ହେଉଛି ଲୋରା । ମୋର ପ୍ରଥମ ଝିଅ ।

ଲଣ୍ଡନରେ ଅଛି । ସେ ଠିକ୍ ମୋ ମା'ଙ୍କ ପରି । ଇଣ୍ଡିଆରେ ସେ ରହିବାକୁ ଚାହିଁଲାନି । ମୋ ବାପା ତାକୁ ବହୁତ ଭଲ ପାଉଥିଲେ । ସେ କିନ୍ତୁ ଆମକୁ କାହାକୁ ନ ଅନାଇ ଏଠାରୁ ଚାଲିଗଲା । କାରଣ ସେ ଜାଣିଥିଲା ମୁଁ ଓ ମୋର ବାପା କେବେବି ଇଣ୍ଡିଆ ଛାଡ଼ିବୁ ନାହିଁ । ତା'ଛଡ଼ା ମୋ ପତ୍ନୀ ଅମ୍ବିକାମ୍ମା ଏଠାକାର ଝିଅ । ତା'ର ଇଣ୍ଡିଆ ଛାଡ଼ିବାର ନଥିଲା । ଲୋରା ତା' ମାକୁ ଖୁବ୍ ଘୃଣା କରୁଥିଲା ତାର ବର୍ଣ୍ଣ ପାଇଁ । ସେ ମତେ ବି କ୍ଷମା କରି ପାରିନଥିଲା ମୋର ତାମିଲ ଝିଅ ବିବାହ କାରଣରୁ ।''

ଜ୍ୟାକେସ୍ ଅଙ୍କଲଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଯିବା ପରି ମନେହେଲା । ମୁଁ ପରିସ୍ଥିତି ବଦଳିଯାଉ ବୋଲି ଚାହୁଁଥିଲି । ନିକିତା ବା ମାରିଆଙ୍କର ଦେଖାନାହିଁ । କେମିତିକା ଝିଅ ଏମାନେ । ସମ୍ପୂର୍ଣ୍ଣ ଅପରିଚିତ ଆଗନ୍ତୁକାକୁ ଛାଡ଼ିଦେଇ ଉଭାନ୍ ହେଇଯାଇଛନ୍ତି ।

ତା'ପରେ ଭାବିଲି, ହଁ ସତ କଥା ତ ମାରିଆ ବି କ'ଣ ମୋର ପରିଚିତା କି ! ଏ ଭଦ୍ରଲୋକ ତ ଖୁବ୍ ଆନ୍ତରିକ ଲାଗୁଛନ୍ତି । ତାଙ୍କ ସହିତ ବରଂ କଥାବାର୍ତ୍ତା କରି ଫ୍ରେଞ୍ଚ ମାନଙ୍କର ଏଠି ରହିଥିବା ସମୟକଥା ଟିକେ ଜଣାଯାଉ ।

ମୁଁ କଥା ଯୋଡ଼ିବାକୁ ଯାଇ ଆରମ୍ଭ କଲି "ଆଚ୍ଛା ଅଙ୍କଲ ମାରିଆଙ୍କର ମା'ଙ୍କର ଏ ଛବି ! ଆଣ୍ଟି ଏବେ କୋଉଠି ?"

ମୁଁ କ'ଣ ଜାଣିଥିଲି ଯେ ଜଣକ ସହ କଥା ଯୋଡ଼ିବାକୁ ଯାଇ ମୁଁ ତାଙ୍କର ହୃଦୟର ଖୁବ୍ କୋମଳ ତନ୍ତ୍ରୀରେ ଆଘାତ କରିଛି ବୋଲି ! କିଛି ସମୟ ପୂର୍ବରୁ ଜ୍ୟାକେସ ଅଙ୍କଲଙ୍କର ବାଷ୍ପରୁଦ୍ଧ କଣ୍ଠ ଲୁହହୋଇ ଆଖିବାଟ ଦେଇ ଝରିଆସିଲା ।

ମୋର ବୁଝିବାରେ ଅସୁବିଧା ହେଲାନି ଯେ ମାରିଆର ମା ଆଉ ନାହାନ୍ତି । କିନ୍ତୁ କ'ଣ କହି ଏଇ ଅପରିଚିତ ବୟସ୍କ ବ୍ୟକ୍ତିଙ୍କୁ ସାନ୍ତ୍ୱନା ଦେବି ବୁଝିନପାରି ଖାଲି ବିକଳ ହୋଇ କହିଲି "ସରି ଅଙ୍କଲ । ମୁଁ ଜାଣିନଥିଲି ।''

ସେ ସେହିକ୍ଷଣି ନିଜକୁ ସହଜ କରିନେଇ କହିଲେ, "ନୋ ବେବି, ତୁମର ଆଦୌ ଭୁଲ ନାହିଁ । ଅମ୍ବିକାମ୍ମା ଯିବା ହୋଇଗଲାଣି ପଚିଶ ବର୍ଷ । ମାରିଆକୁ ଆଠ ବର୍ଷ ବୟସ ହୋଇଥାଏ, ତା'ମା ହଠାତ୍ ଦୁଇଦିନ ଜ୍ୱରରେ ପଡ଼ି ଚାଲିଗଲା । ତାକୁ ହରାଇବାର ଦୁଃଖ ମୋ ପାଇଁ ସହିବା ଏକପ୍ରକାର ଅସମ୍ଭବ ଥିଲା । ସେ ସମୟରେ ମୋ ବାପା ହିଁ ମତେ ସମ୍ଭାଳି ନେଇଥିଲେ । ମୁଁ ଜାଣେ ସେ ମୋର ଭାରତୀୟ ଝିଅ ବିବାହର ନିଷ୍ପତ୍ତିକୁ ବିରୋଧ ନ କଲେ ବି ପସନ୍ଦ କରିନଥିଲେ । କିନ୍ତୁ ଅମ୍ବିକାମ୍ମାର ବ୍ୟବହାର, ସେବା ଯତ୍ନ ତାଙ୍କୁ ପ୍ରକୃତରେ ଭାରତୀୟ କରିଦେଲା । ଏଠାକାର ପୁରୁଷମାନେ ଘରର ସ୍ତ୍ରୀ, ଭଉଣୀ

ଓ ଝିଅଙ୍କ ଉପରେ ବହୁତ ନିର୍ଭର କରନ୍ତି । ବାପା ତା' ପାଇଁ ତାଙ୍କ ରୁମାଲ, ବାଡ଼ି, ଛତା ଆଣି ହାତରେ ଦେବାପାଇଁ ବୋହୂକୁ ଦିନସାରା ଡାକୁଥାନ୍ତି । ମୋ ସ୍ତ୍ରୀ ବି ଶୁଦ୍ଧ ଭାରତୀୟ ନାରୀ ପରି ବିନା ଆପତ୍ତିରେ ବରଂ ଆନନ୍ଦରେ ଶ୍ୱଶୁରଙ୍କର ସେବା କରିଯାଉଥିଲା ।

ଏସବୁ କିନ୍ତୁ ଲୋରାର ଆଦୌ ପସନ୍ଦ ନଥିଲା । ସେ ଅଯଥାରେ ରାଗୁଥିଲା । ମାରିଆ ଜନ୍ମହେଲା ବେଳକୁ ତାକୁ ଦଶ ବର୍ଷ ହୋଇଯାଇଥିଲା । ମାରିଆର ବର୍ଣ୍ଣ ପ୍ରାୟ ତା' ମା ପରି । ତା' ମା ପରି ତା'ର ଘନ କଳା ବାଳ । ଗଢ଼ଣ ମଧ୍ୟ ସେହିପରି । ଲୋରା ତାକୁ ଗ୍ରହଣ କରିପାରିଲା ନାହିଁ । ତା ମା'କୁ ତ ସେ ପସନ୍ଦ କରୁନଥିଲା । ଏଣେ ଭଉଣୀକୁ ସେହିପରି ଦେଖି ସେ ଚିଡ଼ିଲା ।

ମୁଁ ବୁଝି ପାରୁଥିଲି ତାର ମାନସିକ ସ୍ଥିତି । କାରଣ ଏଠି ସେତେବେଳେ ବହୁତ ଫ୍ରେଞ୍ଚ ପରିବାର ରହୁଥିଲେ । ତାଙ୍କ ଘରର ସ୍ତ୍ରୀ ପିଲାମାନେ ସମସ୍ତେ ଥିଲେ । ସେହିପରି ଗୌରବର୍ଣ୍ଣ ଓ ଟିପିକାଲ ଫ୍ରେଞ୍ଚ ଚେହେରା । ଲୋରା ଥିଲା ସେହିମାନଙ୍କ ପରି । ତେଣୁ ସହଜରେ ଲୋରା ସେ ପିଲାଙ୍କ ସାଙ୍ଗରେ ମିଶୁଥିଲା । କିନ୍ତୁ ତା'ର କୌଣସି ସାଙ୍ଗକୁ ସେ ଘରକୁ ଡାକୁ ନଥିଲା । ତାର ଭୟ ଥିଲା ଘରକୁ କେହି ଆସିଲେ ତା' ମାର ପରିଚୟ ପାଇଯିବେ ଓ ଏଣେ ଏତେ କାଳୀ ଝିଅକୁ ସେ ଭଉଣୀ ବୋଲି କହିବାକୁ ସଂକୋଚ ଅନୁଭବ କରିବ । ଅମ୍ବିକାମ୍ମା ତା' କଥା ବୁଝୁଥିଲା । ମନେ ମନେ ଖୁବ୍ ଦୁଃଖ କରୁଥିଲା । ସଂକୋଚ ଅନୁଭବ କରୁଥିଲା । ତେଣୁ ସେ ଲୋରାକୁ କୌଣସି ଭୁଲ କଥାରେ ବି ଶାସନ କରିପାରୁନଥିଲା । ସେ ପଦଟିଏ କହିଲେ ଲୋରା ତାକୁ ତା'ର ଓରିଜିନ୍‌କୁ ନେଇ ଆକ୍ଷେପ କରୁଥିଲା ।

ମୁଁ ବୁଝିପାରୁନଥିଲି ଏତେ ଛୋଟ ପିଲା ଭିତରେ ବର୍ଣ୍ଣବୈଷମ୍ୟର ଏତେ ବିଷ କିପରି ଆସିଲା । ତା' ବାପା ମାଙ୍କର ପରସ୍ପର ପ୍ରତି ଥିବା ଗାଢ଼ ଭଲପାଇବା ସୁନ୍ଦର ବୁଝାମଣା ସମ୍ପର୍କରେ ସେ କେମିତି କିଛି ବୁଝି ପାରୁନି !

ଆମ ଘରର ପରିସ୍ଥିତି ତା' ଲାଗି ଦିନକୁ ଦିନ ଜଟିଳ ହେଉଥିଲା । ବିଶେଷକରି ମୋ ବାପା ମାରିଆକୁ ଧରି ଗେଲ କରୁଥିବାର ଦୃଶ୍ୟରେ ଦିନେ ସେ ଏପରି ଅପ୍‌ସେଟ୍ ହେଲା ଯେ ଘରର ବେଶ୍ ସୌଖୀନ୍ ଦାମୀ ଜିନିଷ ସବୁ ଭାଙ୍ଗି ପକାଇଲା । ତାକୁ କଣ୍ଟ୍ରୋଲ କରିବା ସହଜ ନଥିଲା । ଆମେ ବାପ ପୁଅ ତାକୁ ନେଇ କ'ଣ କରିବୁ ବୁଝିପାରୁନଥିଲୁ । ଏହି ସମୟରେ ମୋର ମାମୁ ଇଣ୍ଡିଆ ବୁଲିବାକୁ ଆସିଥିଲେ । ସେ ଆମ ଘରେ କିଛିଦିନ

ରହିବା ଭିତରେ ଘଟଣାଟା ବୁଝିଗଲେ ଓ ନିଜ ତରଫରୁ ଲୋରାକୁ ସାଙ୍ଗରେ ନେଇଯିବାର ପ୍ରସ୍ତାବ ଦେଲେ ।

ଲୋରାର ଖୁସି ଦେଖିବାର କଥା । ମୋ ମାମୁଙ୍କୁ ପୂର୍ବରୁ ସେ କେବେ ଦେଖିନଥିଲା । କିନ୍ତୁ ତାଙ୍କୁ ସେ ମୁହୂର୍ତ୍ତକ ପାଇଁ ଛାଡୁନଥିଲା । ତାଙ୍କ ସହିତ ଯିବାପାଇଁ ପ୍ରସ୍ତୁତ ହୋଇଗଲା । ଆମ ମତାମତର ତା' ପାଇଁ କିଛି ଅର୍ଥ ନଥିଲା । ବରଂ ଯିବାବେଳେ କହିଗଲା "ଏ ଲ୍ୟାଣ୍ଡ ମୋର ନୁହେଁ; ମୁଁ ଏବେ ମୋର ପ୍ରକୃତ ଲ୍ୟାଣ୍ଡକୁ ଯାଉଛି ।"

ସେ ଯିବାବେଳେ ବି ତା' ମା'ଠାରୁ ବିଦାୟ ନେଲା ନାହିଁ କି ସେଇଠି ଛିଡ଼ା ହୋଇଥିବା ତାର ସାନଭଉଣୀକୁ ମଧ୍ୟ ଆଡ଼ ଆଖିରେ ଚାହିଁଲା ନାହିଁ । ମୁଁ ଓ ମୋର ବାପା ତା'ର ଆଚରଣରେ ଖୁବ୍ କଷ୍ଟ ପାଇଥିଲୁ । କିନ୍ତୁ ଅମ୍ବିକାମ୍ମା ପାଇଁ ଲୋରାର ଅବଜ୍ଞା ଘାତକ ପାଲଟିଗଲା । ସେ ମୁହଁରେ ଥରେ ବି ଲୋରା ପାଇଁ ବିରକ୍ତି ପ୍ରକାଶ ନକଲେ ବି ଭିତରେ ଭିତରେ ପୂରା ଭାଙ୍ଗି ପଡ଼ିଥିଲା । ତା' ସ୍ୱାସ୍ଥ୍ୟ ଧୀରେ ଧୀରେ ଖରାପ ହେବାକୁ ଲାଗିଲା । ଆଉ ଶେଷରେ...''

ଜ୍ୟାକେସ୍ ଅଙ୍କଲଙ୍କର ଆଖିପତା ଭାରି ଭାରି ଜଣାଗଲା । ସେ ସହଜ ହେବାଯାଏ ମୁଁ ନୀରବରେ ଅପେକ୍ଷା କରୁଥାଏ । ଫ୍ରେଞ୍ଚ ତାମିଲ ପରିବାର ବିଷୟରେ ଓ ସେମାନଙ୍କ କ୍ଷେତ୍ରରେ ସୃଷ୍ଟି ହେଉଥିବା ଏପ୍ରକାର ସମସ୍ୟା ବିଷୟରେ ମୋର ପୂର୍ବରୁ କୌଣସି ଧାରଣା ନଥିଲା । ତେଣୁ ହଠାତ୍ ଆସି ସେପରି ଏକ ପରିବାରରେ ପହଞ୍ଚିବା ଓ ଘରର ମୁଖ୍ୟ ମୋ ସହିତ ପ୍ରଥମ ପରିଚୟରେ ଏତେ ଆନ୍ତରିକ ହୋଇଉଠିବା ମତେ ବେଶ୍ ଭଲ ଲାଗୁଥିଲା । ମୁଁ ସେମାନଙ୍କ ବିଷୟରେ ଅଧିକା କିଛି ଜାଣିବା ପାଇଁ କୌତୂହଳୀ ହୋଇଉଠିଥିଲି । ତେଣୁ ମନେ ମନେ ଇଚ୍ଛା କରୁଥାଏ ଯେ ନିକିତା ଓ ମାରିଆ କିଚେନ୍‌ରୁ ଆସିବାକୁ ଆହୁରି ଡେରି କରନ୍ତୁ । ସେମାନେ ଆସିଗଲେ ଅଙ୍କଲଙ୍କର ମୁଡ୍ ବଦଳି ଯିବ । ସେ ଆଉ କିଛି ହୁଏତ କହିବେନି ।

ଏଥର ମୁଁ ଆଗତୁରା ପଚାରିଲି, "ଆଚ୍ଛା ଅଙ୍କଲ ଲୋରା କ'ଣ ଆପଣମାନଙ୍କ ସହିତ କିଛି ସମ୍ପର୍କ ରଖିନାହାନ୍ତି ?"

"ନାଁ, ତା' ବିଷୟରେ ମାମୁ ବଂଚିଥିବା ପର୍ଯ୍ୟନ୍ତ କିଛି କିଛି ଖବର ପାଉଥିଲି । ତେବେ ମାମୁ ପୂର୍ବରୁ ମତେ ଏତିକି କହିଥିଲେ ଯେ ଲୋରା ସେଠି ଖୁବ୍ ସ୍ୱାଧୀନ ଜୀବନ ବଂଚୁଛି । ଭିନ୍ନ ଭିନ୍ନ ବୟଫ୍ରେଣ୍ଡଙ୍କ ସହ ସମ୍ପର୍କ ରଖୁଛି । କିନ୍ତୁ ସେ କାହାରିକୁ ବିବାହ କରିବାକୁ ଚାହୁଁନି । ତାର ବଡ଼ ଆତଙ୍କ ହେଲା ତା'ର ସନ୍ତାନ ଯଦି ତାର ମା'ର ବର୍ଣ୍ଣ

ନେଇ ଜନ୍ମ ହେବ ତେବେ ତାକୁ ଖୁବ୍ କୁତ୍ସିତ ମନେ ହେଉଥିବା ତାର ଅତୀତ ଯାହାକୁ ସେ ଏଠି ଛାଡ଼ି ଦେଇଯାଇଛି ତାହା ପୁଣି ଜୀବିତ ହୋଇଉଠିବ । ତାର ଅତୀତକୁ ସେ ଆଉ ଗୋପନ ରଖିପାରିବନି, ଫରାସୀ ସଂଭ୍ରାନ୍ତ ମହଲରେ ତା'ର ମର୍ଯ୍ୟାଦା ବିପନ୍ନ ହୋଇଯିବ ।"

ଅଙ୍କଲ କିଛି ସମୟ ପାଇଁ ଚୁପ୍ ହୋଇଗଲେ । ପୁଣି ନିଜକୁ ସମ୍ଭାଳି ନେଇ କହିଲେ "ସତରେ ଝିଅ ମୋର ଲୋରା ପାଇଁ ବହୁତ ମନଖରାପ ହୁଏ । ବେଳେ ବେଳେ ତା'ର ମାନସିକ ଦୁଃସ୍ଥିତି ପାଇଁ ନିଜକୁ ଖୁବ୍ ଅପରାଧୀ ଲାଗେ । କିନ୍ତୁ ଅମ୍ବିକାମ୍ମା ପାଇଁ ମୋ ବାପାଙ୍କର ଓ ମୋ ଜୀବନ କିପରି ଧନ୍ୟ ହୋଇଛି ତା' ମୁଁ ଜାଣେ । ସେଥିପାଇଁ ମୁଁ ଗଡ୍‌ଙ୍କ ନିକଟରେ ଖୁବ୍ କୃତଜ୍ଞ । ତା'ସହିତ ମୁଁ ଗଡ୍‌ଙ୍କୁ ପ୍ରାର୍ଥନା କରୁଛି ଲୋରା ଭଲରେ ରହୁ । ବିଚରା ଝିଅଟା ତା ମା'ର ଉପର ଚମର ରଙ୍ଗ କେବଳ ଦେଖିଲା, ମା'ର ଅକୃତ୍ରିମ ସ୍ନେହ ମମତା ବୁଝି ପାରିଲାନି । ତା' ମା ପାଇଁ ତା' ବାପା ଓ ଜେଜଙ୍କର ଖୁସି ତା' ଆଖିରେ ପଡ଼ିଲାନି । ଘର ଓ ବାହାରର ସୁନ୍ଦର ପରିବେଶ ସୃଷ୍ଟି କରିବାରେ ତା' ମା ହାତର କାରୁକଳା ସେ ଲକ୍ଷ୍ୟ କରିପାରିଲାନି । କେବଳ ଦେଖିଲା ବର୍ଣ୍ଣ । କଳା ଗୋରାର ଭେଦ ଭିତରେ ନିଜକୁ ସୀମିତ କରିଦେଲା । ହତଭାଗୀଟାଏ ।"

"ଆଚ୍ଛା ମାରିଆ ଏପର୍ଯ୍ୟନ୍ତ ଯାଏ ବାହା ହୋଇନାହାନ୍ତି କାହିଁକି ?" ମୁଁ ଏପରି ଅଯଥା ପ୍ରଶ୍ନଟାଏ କାହିଁକି ପଚାରି ଦେଲି ଭାବି ମନେ ମନେ ସଂକୁଚିତ ହୋଇଗଲି ।

କିନ୍ତୁ ଜ୍ୟାକେସ୍ ଅଙ୍କଲ ଖୁବ୍ ସହଜ ଭାବରେ କହିଲେ, "ସିଏ ବି ଆଉ ଏକ ବିଷମ କଥା । ତା' ପାଇଁ ଆମର ଏଠି ଥିବା ଫ୍ରେଞ୍ଚ ଇଣ୍ଡିଆନ ଫ୍ୟାମିଲିରୁ କିଛି ପ୍ରସ୍ତାବ ଆସିଥିଲା । କିନ୍ତୁ ସେ ମତେ ଓ ତା' ଜେଜବାପାଙ୍କୁ ଛାଡ଼ି ଯିବାପାଇଁ ପ୍ରସ୍ତୁତ ନୁହେଁ । କଣ କରିବି ମୁଁ, ସେ ଝିଅର ଗୋଟେ ଜିଦ୍ ଏ ଝିଅର ଆଉ ଗୋଟେ ଜିଦ୍ । ମୁଁ ନାଚାର ।"

ତାଙ୍କ କଥାରୁ ଗୋଟାଏ କଥା ମତେ ଚକିତ କରିଦେଲା । ବାପାଙ୍କ ଯାଏ କଥାଟା ଠିକ୍, କିନ୍ତୁ ଜେଜେବାପା ? ସେ ତ କେବେଠାରୁ ମରିଗଲେଣି । ଇଏ କାହା କଥା କହୁଛନ୍ତି ! ମୁଁ କିଛି ପଚାରିବାକୁ ଯାଉଛି ନିକିତାର ପାଟି ଶୁଣାଗଲା । ଅଙ୍କଲ ମତେ ଇଙ୍ଗିତରେ ଜଣାଇଦେଲେ ଯେ ସେ ଏସବୁ କଥା ମତେ କହିଛନ୍ତି ବୋଲି ମାରିଆ ଯେପରି ନ ଜାଣେ ।

ନିକିତା ଚା ଓ ସ୍ନାକ୍‌ସର ଟ୍ରେ ଧରି ଭିତରକୁ ପଶିଲା । ତା' ପଛରେ ମାରିଆ ମଧ୍ୟ କିଛି ଜିନିଷ ଧରି ଆସୁଥିଲା । କିନ୍ତୁ ତା' ଗାଲ ଓ ହାତର କିଛି କିଛି ଜାଗାରେ

ହଳଦିଆ ରଙ୍ଗର ମଲମ ଲାଗିଥିବାରୁ ମୁଁ ଓ ଅଙ୍କଲ ଏକାସାଙ୍ଗରେ କହିଉଠିଲୁ "କଣ ହେଲା ?"

"ସେ କିଛି ନୁହେଁ' କହି ମାରିଆ ଗରମ ଚା' ପାଣି କେଟଲ୍‌ରୁ ଢ଼ାଳି ଅନ୍ୟାନ୍ୟ ଆନୁଷଙ୍ଗିକ ଜିନିଷ ମିଶାଇ ଚା ତିଆରିରେ ମନ ଦେଲା ।

ନିକିତାଠାରୁ ଜଣାପଡ଼ିଲା ଯେ ଫ୍ରାଇଙ୍ଗ୍ ପ୍ୟାନରେ ତେଲ ପକାଇ ଅଣ୍ଡା ପୋଚ କରିବାକୁ ମାରିଆ ଯାଉଥିଲା । କିନ୍ତୁ ତେଲଟା ଏତେ ଗରମ ହୋଇଯାଇଥିଲା ଯେ କଂଚା ଅଣ୍ଡାଟା ପଡୁ ପଡୁ ଫୁଟିଯାଇ ଗରମ ତେଲ ଛିଟିକି ପଡ଼ିଲା ମାରିଆ ଉପରେ । ସେଥିପାଇଁ କିଚେନ୍‌ରୁ ଆସିବାକୁ ଡେରିହେଲା ।

ମାରିଆ ସେହିକ୍ଷଣି ମୃଦୁ ପ୍ରତିବାଦ କରି କହିଲା, "ନାଁ ନାଁ ଦେ କିଛି ନୁହେଁ । ସେମିତି କ'ଣ ବେଳେ ବେଳେ ହୁଏନା ।"

ତା' ବାପା ହସିଦେଇ କହିଲେ, "ବେଳେ ବେଳେ କାହିଁକି ବହୁତ ବେଳରେ ହୁଏ ।"

ମାରିଆ ମିଛ ରୋଷ ପ୍ରକାଶ କଲା "ଡାଡି ଗେଷ୍ଟଙ୍କ ସାମନାରେ କହୁଛ !"

ଜ୍ୟାକେସ ଅଙ୍କଲ ଠିକ୍ ମୋ ବାପାଙ୍କ ପରି କହିଲେ, "କିଏ ଏଠି ଗେଷ୍ଟ ! ଆରେ ନିକି ପରି ରୀଟା ବି ମୋର ଆଉ ଗୋଟେ ଝିଅ ହୋଇସାରିଲାଣି ।"

ମାରିଆ ଓ ନିକିତା ଦୁହେଁ ହସିଲେ । ଚା ଓ ଜଳଖିଆର ପର୍ବ ସରିଲା । ସୂର୍ଯ୍ୟାସ୍ତର ଆଭା ତଥାପି ମଉଳି ନଥାଏ । ମୋର ମନେପଡିଲା ତାଙ୍କର ବାରିପଟରେ ଥିବା ବଗିଚା କଥା । ମୁଁ ଦେଖିବାକୁ ଆଗ୍ରହ ପ୍ରକାଶ କଲି ।

ନିକିତା ମୋ କଥା ଶୁଣି ମୁହଁ ବୁଲାଇ ନେଇ କହିଲା, "ମାରିଆ, ମୁଁ ଯାଉଛି ଅଙ୍କଲଙ୍କୁ କିଚେନ ସଫାରେ ସାହାଯ୍ୟ କରିବି । ତୁ ଖୁବ୍ ଅସନା କରିଆସିଛୁ । ତୁ ରୀତାକୁ ନେଇ ତୋ ବଗିଚା ଦେଖା । ସେସବୁ ଗଛଲଟା, କଣ୍ଟାବୁଦା, ସିଜୁ ଗଛ ମୁଁ ଆଉ ଦେଖିପାରିବିନି । ରୀତାର ତ ଏସବୁଥିରେ ବହୁତ ଆଗ୍ରହ ତାକୁ ନେଇଯା ।

ମାରିଆ ହସଉଠିଲା । ମୁଁ ତା' ସାଙ୍ଗରେ ଚାଲିଲି । ଘରର ପଛ ପାଖରୁ ହିଁ ଘରର ଆକୃତି ଜଣାପଡ଼ିଲା । ସାମନା ପଟରେ ବଡ଼ ବଡ଼ ଗଛର ଆଢୁଆଳ ଓ ହଂସ ଭୟରେ ମୁଁ ଘରର ବାହାରପଟ ଆଦୌ ଦେଖି ପାରିନଥିଲି । ଏବେ ଦେଖିଲି । ବହୁତ ପୁରୁଣା ନକ୍‌ସାର ଫ୍ରେଞ୍ଚ ଡିଜାଇନ ଘର । ବାହାର କାନ୍ଥରୁ ଠାଏ ଠାଏ ପଲସ୍ତରା ଖସିପଡ଼ିଛି । ରଂଗ ନାହିଁ କହିଲେ ଚଳେ । ବରଂ କାନ୍ଥରେ ଶିଉଳି ଢୋଇଯାଇ ବିବର୍ଣ୍ଣ ଦେଖାଯାଉଛି । ଭିତରଟା ଏତେ ସୁନ୍ଦର ସାଜସଜ୍ଜା ଅଥଚ ବାହାରକୁ କାହାରି ଦୃଷ୍ଟି ନାହିଁ ।

ମୁଁ କିନ୍ତୁ କୌଣସି ମନ୍ତବ୍ୟ ଦେଲିନାହିଁ । ଗତକାଲି ସନ୍ଧ୍ୟାରୁ ମାତ୍ର ପରିଚୟ ହୋଇଥିବା ଏ ଝିଅ ସହିତ ଜଗିରଖି କଥାହେବା ଉଚିତ ହେବ ବୋଲି ମନେକଲି । ଅଙ୍କଲଙ୍କ କଥା ଭିନ୍ନ । ସେ ବାପାଙ୍କ ପରି ମଣିଷ । ମୁଁ ତେଣିକି ସେ ଗଛଲତା ପ୍ରତି ଧ୍ୟାନ ଦେଲି । ସତକୁ ସତ ବହୁତ ପ୍ରକାର ଛୋଟବଡ଼ ଗଛ ଲାଗିଥିଲା । ମୋର ଜଣା ଗଛ ଥିଲେ ଖୁବ୍ କମ୍ ଅଜଣା ଥିଲେ ବେଶି । ମାରିଆ ସେ ବିଷୟରେ ଅନର୍ଗଳ ଗପି ଚାଲିଥାଏ । କୋଉ ଚାରା କୋଉଠୁ ସବୁ ଆଣିଥିଲା । ସୁଦୂର ଫ୍ରାନ୍ସ, ଲଣ୍ଡନ ଓ କାଲିଫର୍ଣିଆରୁ ଆସିଥିବା ଚାରାକୁ ସେ ଦକ୍ଷିଣ ଭାରତର ଜଳବାୟୁରେ କିପରି ସଫଳତାର ସହ ବଢ଼ାଇଛି ତାର ନମୁନା ଦେଖେଇ ଚାଲିଥାଏ ।

ମୁଁ ମୁଗ୍ଧ ହୋଇ ଶୁଣୁଥାଏ । ହଠାତ୍ ମୋ ଆଖି ପଡ଼ିଲା ପ୍ରାୟ ତିନି ଚାରି ଫୁଟ ଉଚ୍ଚର ଏକ ବୁଦା ଉପରେ । ହଳଦୀ ନୀଳରଙ୍ଗ ମିଶା ଏକ ଚମତ୍କାର ଫୁଲରେ ବୋଝେଇ ହୋଇଥାଏ ସେ ବୁଦା । ସେ ପ୍ରକାର ଗଛ ମୁଁ ପୂର୍ବରୁ କୋଉ ଛବି ବହିରେ ବି ଦେଖିନଥିଲି । ସେ କେଉଁ ଗଛ କିପରି ହୁଏ ପଚାରିଲି । ସେ ତାକୁ ବଢ଼ାଇବାର ଯେଉଁ ଜଟିଳ ବିବରଣୀ ଦେଲା ସେଥିରେ ମୋର କୌତୂହଳ ଆପେ ଶାନ୍ତ ହୋଇଗଲା ।

ତଥାପି ଲୋଭ ସମ୍ଭାଳି ନପାରି କହିଲି, ''ଏ ଫୁଲକୁ ପାଣିରେ ରଖିଲେ କେତେ ଦିନ ରହେ ?''

ମାରିଆ କହିଲା, "ପ୍ରାୟ ସାତଦିନ ଏମିତି ସତେଜ ରହିବ ।"

ମୁଁ ସେହିକ୍ଷଣି ଭାବିନେଲି ମୋର ଯେତିକି ଦିନ ରହଣି ପଣ୍ଡିଚୋରୀରେ ଅଛି, ଏ ଫୁଲ ସେତେଦିନ ରହିଯିବ । କିନ୍ତୁ ମୁହଁ ଖୋଲି ତାକୁ କିଛି ଫୁଲ ମାଗିବା ପୂର୍ବରୁ ମାରିଆ କହିଲା, "ନବାକୁ ଚାହୁଁଛକି ? ଯେତେ ଇଚ୍ଛା ନେଇପାର । ଇଏ ବହୁତ ଫୁଟେ । ନିଜେ ତୋଳି ନେଇପାର ।"

ମୁଁ ସେହିକ୍ଷଣି ଉଚ୍ଛ୍ୱସିତ ହୋଇ ବୁଦାଆଡ଼େ ହାତ ବଢ଼ାଇଛି ପୁଣି ସେଇ ଧମକ "କ୍ୱାର୍କ୍' । ମୁଁ ଚମକି ପଡ଼ି ପଛକୁ ଚାହିଁଲି, ସେଇ ହଂସ । ମୋ ଦେହ ଥରିଗଲା, ଯଦିବା ତା'ର ତାଗିଦା ଏଥର ଖୁବ୍ ମୃଦୁ ଥିଲା ।

ମୁଁ ହାତ ଫେରାଇ ଆଣି ପଚାରିଲି, "ଇଏ କେତେବେଳେ ଆସିଲା ?"

ମାରିଆ ହସି ହସି କହିଲା, "ତୁମେ ବୋଧେ ଗଛଲତା ଦେଖିବାରେ ବ୍ୟସ୍ତ ରହି ତାର ଉପସ୍ଥିତି ଜାଣିପାରିନ । ସେ ଆମ ପଛେ ପଛେ ପ୍ରଥମରୁ ହିଁ ଚାଲିଛି । ଏ ବଗିଚାର ସେ ନିଷ୍ଠାପର ଜଗୁଆଳି ।''

ମୁଁ ଆଉ ଫୁଲ ତୋଳିବାକୁ ସାହସ କଲିନି । ପାଖରେ ଥିବା ଏକ ସିମେଣ୍ଟ ବେଞ୍ଚରେ ମାରିଆ ଓ ମୁଁ ଦୁହେଁ ବସିଲୁ । ମୁଁ ଯିବାବେଳେ ସେ ନିଜେ ଫୁଲ ତୋଳି ଦେବ ବୋଲି କହିଲା ।

ଖୁବ୍ ମେଳାପୀ ଝିଅ ସେ । ମୋର ବହୁ ଦିନର ପୁରୁଣା ବନ୍ଧୁ ପରି ମୋ ସହିତ ଆଚରଣ କରୁଥାଏ । ମୋ ଘର, ପରିବାର, ଚାକିରି ସବୁକଥା ଗୋଟି ଗୋଟି କରି ପଚାରୁଥାଏ । ମୁଁ ତା' ବାପାଙ୍କଠାରୁ ସେମାନଙ୍କ ବିଷୟରେ କିଛି କଥା ଜାଣିଯାଇଥିବାରୁ ଅଧିକ କିଛି ପଚାରିବାକୁ ଚାହୁଁନଥାଏ । ଆମେ ବସିଥିବା ବେଞ୍ଚକୁ ଲାଗି ଡାଭିଡ୍ ଠିଆ ହୋଇଥାଏ । ତାର ଲମ୍ବା ବେକକୁ ଲମ୍ବାଇ ଦେଇଥାଏ ମାରିଆର କୋଳ ଆଡ଼କୁ । ସେ ତାକୁ ଛୋଟ ପିଲାକୁ ଆଦର କରିବା ପରି ଆଉଁଶି ଚାଲିଥାଏ ।

ଏବେ ମୋର ସବୁ ଆକର୍ଷଣର କେନ୍ଦ୍ର ପାଲଟିଥାଏ ସେଇ ହଂସ । ମୁଁ 'ନୈଷଧ କାବ୍ୟମ୍' ପଢ଼ିଥିବା ବେଳେ ରାଜା ନଳ ଓ ରାଜକନ୍ୟା ଦମୟନ୍ତୀଙ୍କର ପ୍ରେମଚିଟାଉ ଆଦାନ ପ୍ରଦାନ କରିବା ପାଇଁ ନୀଳ ଆକାଶରେ ସୁନା ରଙ୍ଗର ପକ୍ଷ ମେଲେଇ ଉଡ଼ି ଯାଉଥିବା ହଂସକଥା ଖୁବ୍ ରୋମାଣ୍ଟିକ ମନେ ହୋଇଥିଲା । ରାଜହଂସଟିଏ ଯେ ଏକ ସଚେତନ ପ୍ରେମଦୂତ ହୋଇପାରେ ସେଥିରେ ସଂଶୟ ମନକୁ ଆସିନଥିଲା । ପୁଣି ତା' ଚାଲି ସହିତ ସୁନ୍ଦରୀ ନାରୀର ଚାଲିକୁ ତୁଳନା କରି କାବ୍ୟକାରମାନେ କେତେ ନାୟିକାଙ୍କୁ ହଂସଗମନୀ ବୋଲି ସଂବୋଧନ କରି ଲେଖିଛନ୍ତି । ହଂସର ସେହି ରୋମାଣ୍ଟିକ ଭୂମିକା ସହିତ ମୁଁ କାବ୍ୟସୂତ୍ରରେ ପରିଚିତ ଥିଲି ; କିନ୍ତୁ ଏମିତି ଏକ ପହରାଦାର ହଂସ କଥାତ ମୋ କଳ୍ପନାରେ ନଥିଲା ।

ମୁଁ ମାରିଆ ବାପାଙ୍କ ମୁହଁରୁ ହଂସର ନାମ ଡାଭିଡ ଶୁଣି ସେ ଗୋଟେ ପୁରୁଷ ହଂସ ହୋଇଥିବା କଥା ଜାଣିସାରିଥିଲି । କିନ୍ତୁ ସେ ପକ୍ଷୀଟେ ହୋଇ ଏତେ ଆଲର୍ଟ ରହିପାରୁଛି କିପରି ! କୁକୁର କଥା ଭିନ୍ନ । କାରଣ ଜଗିବା କାମତ ତା'ର ସହଜାତ । ମୁଁ କଥା ମଝିରେ ମାରିଆକୁ ପଚାରିଲି ଆଚ୍ଛା "ତୁମର ଏ ହଂସ ତ ବଡ଼ ବିଚିତ୍ର । ମୋର ଧାରଣା ନଥିଲା ହଂସଟିଏ ବି ପ୍ରହରୀ ହୋଇପାରେ ! ଇଏ କ'ଣ ବିଶେଷ ପ୍ରଜାତିର କି ? କୋଉଠୁ ପାଇଲ ଆକୁ ?"

ମାରିଆ ହସି ହସି କହିଲା "ନାଁ ମ କିଛି ସ୍ୱତନ୍ତ୍ର ଶ୍ରେଣୀୟ ହଂସ ଇଏ ନୁହେଁ । ଏହି ରାଜହଂସମାନେ ସବୁଠି ଦେଖାଯାନ୍ତି । ପ୍ରାୟ କୋଡ଼ିଏ ବର୍ଷ ତଳେ ବୋଧେ କୋଉ ହଂସଚରାଳି ପଲେ ହଂସଙ୍କୁ ନେଇ ଆମ ଘର ସାମନା ରାସ୍ତାରେ ଯାଉଥିଲା । ଆମ ଫାଟକ ହୁଏତ ଖୋଲା ଥିଲା କି କଣ ଛୁଆ ହଂସଟେ ସେଇବାଟେ ଭିତରକୁ ପଶିଆସି ବୁଦା ଭିତରେ ରହିଯାଇଥିଲା । ପରଦିନ ସକାଳେ ଦେଖିଲୁ ଛୁଆ ହଂସଟି ବାହାରକୁ ଯିବ ବୋଲି ବଗିଚା ସାରା ବୁଲି ବୁଲି ବାଟ ଖୋଜୁଛି । ଆମେ ତାକୁ ଧରି କ୍ଷୀର ପିଆଇ ସାଷ୍ଟାମ

କଲୁ । ଆମ ବଗିଚାରେ କାମ କରିବା ଲୋକଙ୍କୁ ଜେଜେ ନିର୍ଦ୍ଦେଶ ଦେଇଥିଲେ ଯେ ହଂସଚରାଳିକୁ ଦେଖିବାମାତ୍ରେ ତାକୁ ଡାକି ଏ ହଂସଛୁଆକୁ ଦେଇଦେବା ପାଇଁ । କିନ୍ତୁ ସେ ଲୋକ ଆଉ କାହାରି ଆଖିରେ ପଡ଼ିଲା ନାହିଁ । ଏଣେ ଏ ଛୁଆ ପ୍ରତି ଆମର ମମତା ଲାଗିଗଲା । ସେ ଆମ ସହିତ ରହିଲା । ସ୍ୱଚ୍ଛନ୍ଦରେ ଘରବାହାର ହେଲା । ଚାହୁଁଚାହୁଁ ବଡ଼ ହୋଇଗଲା । କିନ୍ତୁ ତା ପାଇଁ ଆମେ ସାଥି ଯୋଗାଡ଼ କରିପାରିଲୁନି । କାରଣ ଏହି ଜାତୀୟ ହଂସମାନେ ତିରିଶ ଚାଳିଶ ବର୍ଷ ବଂଚନ୍ତି । ଆପେ ତାଙ୍କ ଦଳରୁ ପରସ୍ପରକୁ ମନୋନୀତ କରି ତାରି ସହିତ ସାରା ଜୀବନ ବିତାଇଥାନ୍ତି । ଆ' କ୍ଷେତ୍ରରେ ତାହା ତ ସମ୍ଭବ ନଥିଲା । ତା'ଛଡ଼ା ଡେଭିଡ ଜେଜେଙ୍କର ବହୁତ ଆଦର ପାଇ ତାଙ୍କରି ସହିତ ଛାଇ ପରି ଲାଗି ରହିଲା । ତାକୁ ଆଉ କିଏ କୁଆଡ଼େ ଛାଡ଼ିଥାନ୍ତା !''

ମାରିଆ ଯେଭଳି ଉଚ୍ଛ୍ୱସିତ ହୋଇ ହଂସ ଉପାଖ୍ୟାନ କହୁଥିଲା, ସେ ବୋଧେ ସେଇଥିରେ ରହିଥାନ୍ତା । ମୁଁ କଥା ବଦଳାଇବାକୁ ଚେଷ୍ଟା କଲି । ହଂସ ଛଡ଼ା ଆଉ ଗୋଟିଏ କଥା ବି ମତେ କେମିତି ଅଡୁଆ ଲାଗୁଥିଲା । ମାରିଆର ଏତେ ବଡ଼ କ୍ୟାମ୍ପସ, ଘର, ଅଥଚ ଅନ୍ୟ ଲୋକବାକ କେହି କୁଆଡ଼େ ଦିଶୁନାହାନ୍ତି । ଆସନ୍ନ ସନ୍ଧ୍ୟା । ସବୁଆଡ଼ ନିର୍ଜନ, ଶୂନଶାନ ।

ମୁଁ ତାକୁ ପଚାରିଲି, "ଆଚ୍ଛା ମାରିଆ ଏ ବିରାଟ ଘର ଓ ଜାଗାରେ କେବଳ କ'ଣ ତୁମେ, ଅଙ୍କଲ ଓ ଏ ହଂସ କେବଳ ରହୁଛ ? ତୁମର ଆଉଟ ହାଉସରେ ବି କେହି ଦିଶୁନାହାନ୍ତି ତ ! ତୁମକୁ ଡର ଲାଗୁନି ?"

ମାରିଆ କହିଲା, ''ଲୋକ ଅଛନ୍ତି । ଦୁଇଜଣ ଲୋକ ବାହାର ବଗିଚା କଥା ଓ ଦୁଇଜଣ ଭିତର ସଫାସଫି ଓ ରୋଷେଇବାସ ପାଇଁ ଅଛନ୍ତି । କାମସାରି ସନ୍ଧ୍ୟା ପୂର୍ବରୁ ଫେରିଯାନ୍ତି । ବାପା ଓ ମୁଁ ଚାହୁଁଥିଲୁ ଆଉଟ ହାଉସରେ ସ୍ଥାନୀୟ ଲୋକଙ୍କର ଦୁଇଟି ପରିବାରକୁ ରଖିବୁ । କିନ୍ତୁ ଜେଜବାପାଙ୍କର ବାହାର ଲୋକଙ୍କୁ ରଖିବା ପସନ୍ଦ ନୁହେଁ ।''

ମୁଁ ଜାଣି ସାରିଥିଲି ତାର ଜେଜେବାପାଙ୍କର ଦେହାନ୍ତ କେବେଠାରୁ ହେଲାଣି । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, "ତୁମ ଜେଜେବାପା ତ ନାହାନ୍ତି । ତାଙ୍କର ପୁଣି ପସନ୍ଦ ଅପସନ୍ଦ କଣ ?"

ମାରିଆ ଖୁବ୍ ସହଜ ଭାବରେ କହିଲା, "କିଏ କହିଲା ସେ ନାହାନ୍ତି ବୋଲି । ସେ ତ ଆମ ସାଙ୍ଗରେ ରହୁଛନ୍ତି । ସକାଳୁ ଉଠିବା ପରଠାରୁ ଆମେ ଏକାଠି ଚା' ପିଉ, ବ୍ରେକ୍‌ଫାଷ୍ଟ କରୁ । ତା'ପରେ ସେ ବିଶ୍ରାମ କରନ୍ତି । ଡରିବା କଥା ଯାହା କହିଲ ତା'ର

ତ ପ୍ରଶ୍ନ ଉଠୁନି । ଦିନରେ ଡାଭିଡ୍ ପୂରା କ୍ୟାମ୍ପସ ଓ କାମ କରୁଥିବା ଲୋକଙ୍କ ଉପରେ ନଜର ରଖେ ଓ ରାତି ଜଗିବା ଦାୟିତ୍ୱ ଜେଜେଙ୍କର । ଆମର ଏ ସ୍ଥାନୀୟ ଅଞ୍ଚଳରେ ସମସ୍ତେ ଏକଥା ଜାଣନ୍ତି । ଦୁଇଚାରି ଥର କ୍ୟାମ୍ପସରେ ପଶିବାକୁ ଚେଷ୍ଟା କରିଥିବା ଲୋକ ସକାଳ ପର୍ଯ୍ୟନ୍ତ ସେମିତି ଗୋଟେ କୋଣରେ ଜାକିଜୁକି ହୋଇ ବସିଥାନ୍ତି । ଆମେ ଉଠି ସେମାନଙ୍କୁ ଦେଖିବା ପରେ, ସେମାନେ ଭୁଲ୍ ମାଗିଥାନ୍ତି । ସେମାନଙ୍କ କଥାରୁ ଶୁଣିଛୁ ଯେ କେହି ଜଣେ ବୁଢ଼ା ସାହେବ ଲୋକ ବାଡ଼ିଧରି ତାଙ୍କୁ ସାରାରାତି ଓଗାଳି ରଖନ୍ତି । ତେଣୁ ଆମେ ବାପଝିଅ ପୂରା ନିଶ୍ଚିନ୍ତ ।

ମାରିଆର କଥା ବୁଝିପାରିଥିବାରୁ ମୋ ଭିତରଟା କେମିତି କଣ ହୋଇଯାଉଥାଏ, ପିଲାଦିନେ ବହୁତ ଭୂତପ୍ରେତ ଡାହାଣୀ ଚିରିଗୁଣୀଙ୍କ କଥା ଶୁଣିଛି । ସବୁ ଘଟଣା ଖୁବ୍ ଭୀତିପ୍ରଦ ମନେ ହୋଇଥିଲା । କାରଣ ଭୂତ କହିଲେ ହିଁ ଭୟକୁ ବୁଝାଇଥାଏ । ଗାଁରେ ନିଜ ଲୋକ ବି ମରିଯିବା ପରେ ତା' ଭୂତକୁ ଘରେ ନ ପଶିବା ପାଇଁ ପ୍ରଚଳିତ ବିଧି ବ୍ୟବସ୍ଥାରେ ବାରଣ କରାଯାଏ । ଏପରିକି କିଏ କଣ ଛାଇଟେ ଦିଶିବା ପରି କହିଦେଲେ ଗୁଣିଆ ଡାକି ଘରର ବିଭିନ୍ନ ଜାଗାରେ ମନ୍ତୁରା ଲୁହା କଣ୍ଟା ସବୁ ପିଟି ଦିଆଯାଏ । ଭୂତ ବିଷୟରେ କେହି କେବେ କିଛି ଶ୍ରଦ୍ଧା ପ୍ରକାଶ କରିବାର କଥା ମୁଁ ଜାଣିନଥିଲି । ଅଥଚ ମାରିଆ ତା' ଜେଜଙ୍କର ଭୂତ ବିଷୟରେ ଏତେ ସହଜ ସ୍ୱାଭାବିକ ଭାବରେ କହୁଛି ଯେ ମନେ ହେଉଛି ସେ ଯେମିତି ବଞ୍ଚିଛନ୍ତି । ଇଏ କ'ଣ ତା' ମନର ଭ୍ରମ ନା ତା' ଜେଜେଙ୍କ ପ୍ରତି ଥିବା ତା'ର ପ୍ରଗାଢ ଆସକ୍ତି ଜନିତ ପ୍ରତିକ୍ରିୟା । କିନ୍ତୁ ଅଙ୍କଲ ବି ତ କହୁଥିଲେ ନା ମାରିଆ ତାଙ୍କୁ ଓ ତା' ଜେଜଙ୍କୁ ଛାଡ଼ି ବାହାହୋଇ ଯିବାକୁ ଚାହୁଁନି ।

ମୁଁ ଆଉ ଭୂତର ଅସ୍ତିତ୍ୱକୁ ନେଇ ମନେ ମନେ ତର୍ଜମା ନକରି ସେ ସ୍ଥାନରୁ ଯଥାଶୀଘ୍ର ଚାଲିଆସିବା ପାଇଁ ଉଠିପଡ଼ିଲି । ଏକ ଅଦ୍ଭୁତ ଭୟ ମତେ କାବୁ କରି ନେଉଥିଲା ।

ପ୍ରଥମ ସନ୍ଧ୍ୟାର ଝାପ୍‌ସା ଅନ୍ଧାର ଛାଇଛାଇ ଆସିଥିଲା । ଆମେ କିଛିବାଟ ଘର ଆଡ଼େ ଆଗେଇ ଆସିଛୁ ମାରିଆର ସେ ବୁଦା ଗଛର ଫୁଲ କଥା ମନେ ପଡ଼ିଗଲା । ମତେ ସେଇଠି ଅପେକ୍ଷା କରିବାକୁ କହି ସେ ଶୀଘ୍ର ଶୀଘ୍ର ଫେରିଗଲା ସେଇ ଫୁଲଫୁଟା ବୁଦା ନିକଟକୁ । ଆମ ପଛେ ପଛେ ଆସୁଥିବା ହଂସଟା ମୋ ପାଖରେ ଠିଆ ହୋଇଥାଏ । ଏପର୍ଯ୍ୟନ୍ତ ଯାଏ ଯିଏ ମୋର ଭୟର କାରଣ ଥିଲା ଏବେ ମୋ ପାଖରେ ତା'ର ଉପସ୍ଥିତି ମତେ କେମିତି ଦମ୍ଭ ଦେଉଥିଲା ।

ମୁଁ ତା' ବାରିପଟର ସେଇ ସବୁଜ ପରିବେଶ ଉପରେ ଆଖି ବୁଲାଇ ନେଉଥାଏ । ହଠାତ୍ ମାରିଆର ସ୍ୱର ଶୁଣାଗଲା "ହାୟ ଗ୍ରାଣ୍ଡପା" । ମୁଁ ଚମକିପଡ଼ି ସେ ଦିଗରେ

ଚାହିଁଲି । ମାରିଆ ହାତରେ ଫୁଲ ପେନ୍ଥା ଧରି କାହା ସହିତ କଥାହେବା ପରି ମନେ ହେଉଥାଏ । କେବଳ ତା' ସ୍ୱର ମତେ ଶୁଣା ଯାଉଥାଏ । ସେ କଣ କହୁଛି ମୁଁ ବୁଝିପାରୁନଥାଏ । କିନ୍ତୁ ତାର ଉଚ୍ଚାରଣରୁ ବୁଝି ପାରିଲି ଯେ ସେ ଫ୍ରେଞ୍ଚ ଭାଷାରେ କଥାହେଉଛି ।

ହଠାତ୍ ଡେଭିଡ୍ ଅଧାଭଡା ଓ ଅଧା ଦଉଡା ଅବସ୍ଥାରେ ସେଇ ଦିଗରେ ଚାଲିଗଲା । ମାରିଆ କୋଳକୁ ତା' ବେକକୁ ବଢ଼ାଇ ଦେବା ପରି ଭଙ୍ଗୀରେ ସେ ଶୂନ୍ୟକୁ ତା'ର ଲମ୍ୱା ବେକକୁ ଆହୁରି ଲମ୍ୱାଇଦେଲା ।

ମୁଁ ସେଠି ଏକୁଟିଆ ସ୍ତବ୍ଧ ହୋଇ ଠିଆ ହୋଇଥାଏ । ଏପର୍ଯ୍ୟନ୍ତ ଯାଏ ଯାହା ମତେ ଭୂତଗପ ଶୁଣିବା ପରି ଲାଗୁଥିଲା ଏବେ ପ୍ରତ୍ୟକ୍ଷରେ ଦେଖୁଥିଲି ମାରିଆର ସେପରି ଏକ ସତ୍ତା ସହିତ କଥାହେବାର । ମୁଁ ନିଶ୍ଚିତ ହୋଇଯାଇଥିଲି ମାରିଆ ମତେ କହିଥିବା ତା' ମୃତ ଜେଜଙ୍କର ସେଠାରେ ଉପସ୍ଥିତି ବିଷୟରେ ।

କିନ୍ତୁ କ'ଣ ହେଲା କେଜାଣି ହଠାତ୍ ମୋ ମନରୁ ଭୟ ପୂରାପୂରି ପୋଛି ହୋଇଗଲା । ମୋ ଆଖି ଲୁହରେ ଛଳଛଳ ହୋଇଉଠିଲା । ସତେ ଯେପରି ମୋ ଆଗରେ ଦୃଶ୍ୟ ଓ ଅଦୃଶ୍ୟ ଜଗତ ଏକାକାର ହୋଇଉଠିଥିଲେ, ଅତୀତ ଓ ବର୍ତ୍ତମାନ ପରସ୍ପରର ହାତଧରି ଠିଆ ହୋଇଥିଲେ, ମୃତ ଓ ଜୀବିତ ଭିତରେ ସମ୍ପର୍କର ସେତୁଟି ଅତୁଟ ଥିଲା ।

ମୋ ମୃତ ବାପାଙ୍କର ମୁହଁଟି ମତେ ଦିଶିଗଲା । ମୁଁ ମନେମନେ ତାଙ୍କ ଉଦ୍ଦେଶ୍ୟରେ କହୁଥିଲି "ବାପା ତୁମ ମୃତ୍ୟୁବେଳେ ମୁଁ ତୁମ ପାଖରେ ନଥିଲି । ମୁଁ ପହଞ୍ଚିବା ବେଳକୁ ଜୁଇ ଜଳି ସାରିଥିଲା । 'ବାପା' ବୋଲି ଆଉ ଡାକିବାର ସୁଯୋଗ ପାଇଲିନି । ମାରିଆର ଜେଜଙ୍କ ପରି ମତେ ଥରୁଟିଏ ଦେଖା ଦିଅନ୍ତନି । ମୁଁ ଖାଲି ଟିକେ ଡାକନ୍ତି 'ବାପା', 'ବାପା' ।

ମାରିଆ ମତେ ହଲାଇଦେଇ କହିଲା "କ'ଣ ହେଲା ?"

ମୁଁ ତାକୁ କୁଣ୍ଢାଇ ପକାଇ ମୋ ନିଜ ଭିତରର କାହିଁ ଅତଳତଳରୁ ଉଠି ଆସୁଥିବା କୋହକୁ ଚାପି ରଖିବାକୁ ଚେଷ୍ଟା କରୁଥିଲି ।



# ଚିତ୍ରାଙ୍ଗଦା

ମୋ ପୁଅ ଝିଅ ଦୁହେଁ ରହୁଥିଲେ ଦିଲ୍ଲୀରେ । ପୁଅ ଚାକିରି କରୁଥିଲା ଗୋଟେ ମଲ୍‌ଟିନେଶନାଲ କମ୍ପାନୀରେ । ବୋହୂଟି ରହୁଥିଲା ଘରେ । ଘରର ସବୁ ଦାୟିତ୍ୱ ନେଇ ତା' ପୁଅ ଝିଅଙ୍କୁ ଖୁବ୍ ଭଲରେ ସମ୍ଭାଳୁଥିଲା । ଝିଅ ଜ୍ୱାଇଁ ଦୁହେଁ ଚାକିରି କରୁଥିଲେ । ସକାଳୁ ରାତିଯାଏ ବ୍ୟସ୍ତ । ତେଣୁ ବାହାଘରର ପାଞ୍ଚବର୍ଷ ବିତିଯାଇଥିଲେ ବି ପରିବାର ଆରମ୍ଭ କରିବେ କି ନାହିଁ ଚିନ୍ତା କରିପାରୁନଥିଲେ ।

ଆମେ ବାପା ମା ଦୁହେଁ ସେଥିପାଇଁ ବେଳେବେଳେ ବ୍ୟସ୍ତ ହେଲେ ବି ସେମାନଙ୍କୁ ସେ ବିଷୟରେ କିଛି କହିବା ଉଚିତ ମନେ କରୁନା । ପିଲାମାନେ ବଡ଼ହେବା ପରେ ସେମାନଙ୍କ ଉପରେ ନିଜର ମତାମତ ଚାପିଦେବାକୁ ମୁଁ କେବେ ବି ପସନ୍ଦ କରେନାହିଁ । ତା'ଛଡ଼ା ଘରେ ଆସି ଆମ ପାଖରେ କିଛିଦିନ ଲେଖାଏଁ କଟାଇବାକୁ ମଧ୍ୟ ପୁଅବୋହୂ ବା ଝିଅ ଜ୍ୱାଇଁଙ୍କୁ ଜୋର କରି କହିପାରେନି । କାଳେ ସେମାନଙ୍କର କିଛି ଅସୁବିଧା ହେବ ।

କିନ୍ତୁ ସେକଥା ସେମାନେ କେବେ ଭାବନ୍ତି ନାହିଁ । ପୁଅ ଝିଅଙ୍କର ଗୋଟାଏ କଥା ବାପା ମା ଭୁବନେଶ୍ୱର ଘରକୁ ଭଡ଼ା ଦେଇ ଦିଲ୍ଲୀରେ ଆସି ସେମାନଙ୍କ ପାଖରେ ରୁହନ୍ତୁ । କିନ୍ତୁ

ତାଙ୍କର ଏଇ କଥାରେ ଆମେ ଆଦୌ ରାଜି ହେଲୁନି । ଆମେ ଆମ ଚିହ୍ନାଜଣା, ବନ୍ଧୁବାନ୍ଧବ, ପରିଚିତ ପରିବେଶକୁ ଛାଡ଼ି ସେଠି ଯାଇ ବା କ'ଣ କରିବୁ !

ତା'ଛଡ଼ା ଇଏ ତାଙ୍କର ଅବସରଗ୍ରହଣ ପରେ ବି ନିଜର ଗବେଷଣା ଓ ତାଙ୍କ ପାଖରେ କାମ କରୁଥିବା ଛାତ୍ରଛାତ୍ରୀଙ୍କୁ ଛାଡ଼ି କୁଆଡ଼େ ବି ଘୁଞ୍ଚିବେ ନାହିଁ । ପିଲାମାନେ ଏକଥା ଭଲରେ ବୁଝି ଯାଇଥିଲେ । ବାକି ରହିଲି ମୁଁ । ମତେ ସେମାନେ ବସେଇଉଠେଇ ଦିଅନ୍ତି ନାହିଁ । ତେଣୁ ମତେ ହିଁ ସେମାନଙ୍କ ପାଖରେ ଯାଇ କିଛିକିଛି ଦିନ ରହିବାକୁ ହୁଏ । ପୁଅବୋହୂଙ୍କ ପାଖରେ ରହିବାକୁ ମତେ ବେଶି ଭଲ ଲାଗେ । କାରଣ ବୋହୂ ସବୁବେଳେ ଘରେ ରୁହେ । ମୋର ସବୁ ପ୍ରକାର ଯତ୍ନ ନିଏ । କିନ୍ତୁ ଝିଅ ଘରେ ଦିନବେଳେ କେହି ରୁହନ୍ତିନି । ଘରକୁ ଆସୁଆସୁ ସେମାନଙ୍କର ସନ୍ଧ୍ୟା ହୋଇଯାଏ । ଘରେ ସାରାଦିନ ଏକୁଟିଆ ରହିବାଟା ମତେ ଆଦୌ ଭଲ ଲାଗେନି । ଝିଅ ସେକଥା ବୁଝିଲେବି ମା'କୁ ପାଖରେ ରଖିବାକୁ ତାର ଭାରି ଇଚ୍ଛା । ଘରକୁ ଫେରି ଆସିବା ପରେ ତା'ର ଗପ ଆଉ ସରେନି ରାତି ଅଧଯାଏ ।

ସେଥର ତା'ପାଖରେ ରହିବା ସମୟରେ ସେ ବ୍ୟବସ୍ଥା କରିଦେଲା ଯେ ଦିନରେ ତା' ଗାଡ଼ି ଓ ଡ୍ରାଇଭର ରହିବେ ଘରେ । ତେଣିକି ମୁଁ ଦ୍ୱିପହରେ ଘରଟାରେ ଏକା ନରହି ଯୁଆଡ଼େ ଯିବାକୁ ଚାହିଁବି ଯାଇ ବୁଲାବୁଲି କରି ଆସିପାରିବି । ସେତକ ଦିନ ସେ ତା ଅଫିସକୁ ଯିବା ଆସିବାର ଅନ୍ୟ ବ୍ୟବସ୍ଥା କରିବ । ମୁଁ ବି ଭାବିଲି ଖାଲିଟାରେ ଘରେ ନ ବସି ବୁଲାବୁଲି କଲେ ବି ମତେ ଭଲ ଲାଗିବ । ଦିଲ୍ଲୀ ମୁଁ ବହୁବାର ଆସିଛି । ତେଣୁ ଏ ସହର ମୋର ବେଶ୍ ପରିଚିତ ।

ସେଦିନ ଖରାବେଳେ ମୁଁ ଯାଇ ପହଞ୍ଚିଲି ଦିଲ୍ଲୀ ହାଟରେ । ସେଠି ହାତ ତିଆରି ବହୁ ପ୍ରକାର ଘରସଜ୍ଜା ଜିନିଷ ମିଳେ । ବିଭିନ୍ନ ରାଜ୍ୟର ହସ୍ତତନ୍ତ ଶାଢ଼ିର ଷ୍ଟଲ ବି ସେଠି ଥାଏ । ସେଦିନ ତା' ଭିତରେ ବୁଲୁ ବୁଲୁ ମୋର ନଜର ପଡ଼ିଲା ଏକ ମଣିପୁର ଷ୍ଟଲରେ । ମଣିପୁରର କୁମ୍ଭ ଧଡ଼ିଥିବା ବିଭିନ୍ନ ରଙ୍ଗର ସୂତା ଶାଢ଼ି ଖୁବ୍ ସୁନ୍ଦର ଭାବରେ ସେଠାରେ ପ୍ରଦର୍ଶିତ ହୋଇଥିଲା । ମତେ ସେ ଶାଢ଼ି ଖୁବ୍ ଭଲ ଲାଗେ । ସେଥିରୁ ଦୁଇ ଖଣ୍ଡ କିଣି କ୍ୟାସ କାଉଣ୍ଟରରେ ଟଙ୍କା ଦେଇ ଠିଆ ହୋଇଥାଏ । ଦୋକାନୀ ଶାଢ଼ିକୁ ପ୍ୟାକେଟରେ ସଜାଡ଼ି ରଖୁଛି ମୋ ଆଖି ପଡ଼ିଲା ମୋ ସାମନାକୁ ଥିବା କାନ୍ଥରେ କାଚ ବନ୍ଧାଇ ଫଟୋଟିଏ ଗୋଟିଏ ଛୋଟ କାଠ ତିଆରି ଥାକ ଉପରେ ରହିଛି । ପାଖରେ ଜଳୁଛି ଇଲେକ୍‌ଟ୍ରିକ ଲ୍ୟାମ୍ପଟିଏ ।

ମୁଁ ଚାହିଁଦେଖିଲି ସେ ଫଟୋଟି ଥିଲା ଜଣେ ମଧ୍ୟବୟସ୍କା ମହିଳାଙ୍କର ମୁହଁର ଛବି । କପାଳରେ ଏକ ଲମ୍ବା ସିନ୍ଦୂର କଳି । ଖବରକାଗଜ ବା ଟି.ଭି.ରେ ପ୍ରାୟତଃ ଦିଶୁଥିବା କୌଣସି ବାବାମାତାଙ୍କର ଚିହ୍ନା ମୁହଁ ନୁହେଁ । ମୁଁ ଆଉ ଟିକେ ପାଖକୁ ଯାଇ ଫଟୋଟିକୁ ଦେଖିବାକୁ ଚେଷ୍ଟା କଲି । ହଠାତ୍ ମତେ ଲାଗିଲା ମୁଁ ଆଙ୍କୁ କୋଉଠି ଦେଖିଛି । କିନ୍ତୁ କୋଉଠି ! ମୁଁ ଯେତେ ମନେ ପକାଇବାକୁ ଚେଷ୍ଟା କଲେବି କିଛି ଜାଣିପାରୁନଥାଏ ।

ଏତେବେଳକୁ ଦୋକାନୀ ଶାଢ଼ି ଦୁଇଟିକୁ ପ୍ୟାକେଟରେ ପୂରାଇ ଟେବୁଲ ଉପରେ ରଖିସାରିଲାଣି । ମୁଁ ଏଥର ଆଉ ଅଯଥା ଚେଷ୍ଟା ନକରି ସେ ଲୋକକୁ ପଚାରିଲି, "ଆଚ୍ଛା ଏ ଫଟୋଟି କାହାର କି ?"

ଦୋକାନୀ ଜଣକ ସେହିକ୍ଷଣି ହାତଯୋଡ଼ି ମୁଣ୍ଡରେ ମାରି କହିଲା, "ୟେ ତସ୍‌ବୀର ଚିତ୍ରାଙ୍ଗଦା ମାତାଜୀ କୀ ହୈ ।"

ଏଇ ନାଁଟା ସେ ଉଚ୍ଚାରଣ କରିବା ମାତ୍ରେ ମୋ ଭିତରେ କେମିତି ଗୋଟେ ଶିହରଣ ଖେଳିଗଲା । ଏଇ ନାଁର ଅଦ୍ଭୁତ ଆକର୍ଷଣ ମତେ ସବୁବେଳେ ଘାରିରଖିଛି । ଦୀର୍ଘ ଚାଳିଶ ବର୍ଷ ଏ ଭିତରେ ବିତିଯାଇଥିଲେ ବି ସେ ସମୟରେ ମୋ ଜୀବନରେ ଘଟିଥିବା ସେ ଛୋଟିଆ ଘଟଣାଟି ମୁଁ ଭୁଲିପାରିନି । ମୋର ଏକାନ୍ତ ମୁହୂର୍ତ୍ତରେ ସେ କଥାଟି କେବେ ମନେ ପଡ଼ିଗଲେ ମୁଁ ନିଜ ଭିତରେ କୁଆଡ଼େ କିଛି ସମୟ ପାଇଁ ହଜିଯାଏ ।

ମୋର ଅନ୍ୟମନସ୍କତା ଲକ୍ଷ୍ୟକରି ଦୋକାନୀ ମତେ ଟିକେ କେମିତି ଆଶ୍ଚର୍ଯ୍ୟ ହୋଇ ଚାହୁଁଥିବାର ଦେଖି ମୁଁ ଆଉ କିଛି ନ କହି ଫେରିଆସି ଗାଡ଼ିରେ ବସିଲି । ସେ ଦିନର ଘଟଣାଟି ଚଳଚ୍ଚିତ୍ରର ଦୃଶ୍ୟପରି ମୋ ଆଖି ଆଗରେ ଖୋଲିଖୋଲି ଗଲା ।

ସେଇ ବର୍ଷ ମାଟ୍ରିକ ପାଶ୍ କରିଥିବା ଆମ ଗାର୍ଲସ୍ ସ୍କୁଲର ଅନେକ ଝିଅ ସ୍ଥାନୀୟ ଏକ ମହିଳା କଲେଜରେ ନାମ ଲେଖାଇଥାଉ । ତେଣୁ ନୂଆନୂଆ କଲେଜ ଜୀବନ ଆରମ୍ଭ ହୋଇଥାଏ ପୁରୁଣା ସାଙ୍ଗମାନଙ୍କୁ ନେଇ । ଗାର୍ଲସ୍ ସ୍କୁଲର କଡ଼ା କଟକଣା ଭିତରୁ ବାହାରି ଆସି କଲେଜରେ ମିଳିଥିବା ସ୍ୱାଧୀନତା ଟିକକ ଆମ ପାଇଁ ବେଶ୍ ମହାର୍ଘ ଥିଲା । ବାହାର ଜଗତର ଦୃଷ୍ଟି ଅନ୍ତରାଳରେ ନିଜ ଭିତରୁ ଟିକେ ମୁକୁଳି ଯିବାର ଆନନ୍ଦ କେତେ ଈପ୍‌ସିତ ଥିଲା !

ସେ କଲେଜର ଥିଲା ବିସ୍ତୃତ ପରିସର । କଲେଜର କୋଠାବାଡ଼ି ଥିଲା ଗୋଟିଏ ଭାଗରେ ଓ ଅନ୍ୟ ଖାଲି ଅଂଶଟି ଗଛବୃଛ ଲତା ଗୁଳ୍ମରେ ପରିପୂର୍ଣ୍ଣ ହୋଇ ରହିଥିଲା ।

ସେମିତି ଏକ ଗହଳି ବୁଦାସବୁ ଥିବା ଜାଗାରେ କୋଉକାଲୁ ସେଠି ପଡ଼ିଥିବା ଗୋଟେ ଭଙ୍ଗା ପଥର ବେଞ୍ଚରେ ମୁଁ ଓ ମୋ ସାଙ୍ଗ ନମିତା ଲିଜର ସମୟରେ ବସୁ ।

ସେଠାକୁ ସାପ ଭୟରେ କେହି ଆସନ୍ତିନି । ଆମର ସେସବୁ ଡରଭୟ ନଥାଏ । ତେଣୁ ଆମେ ଦୁହେଁ ବସି ମନଖୁସିରେ ଗପସପ କରୁକରୁ ବେଳେବେଳେ କ୍ଲାସ ବି ମିସ୍ କରିଯାଉ । ସେଦିନ ଆମେ ଦୁହେଁ ସେଠି ବସିବାକୁ ଯିବାବେଳେ ଦେଖିଲୁ ଆମ ପୂର୍ବରୁ କେହି ଜଣେ ଯାଇ ସେଠି ଏକା ବସିଛି । ସେ ପଛ କରି ବସିଥିବାରୁ ଦୂରରୁ ଜଣାପଡୁନଥାଏ ସେ କିଏ ।

ଆମେ ଦୁହେଁ ବେଶ୍ ଆଶ୍ଚର୍ଯ୍ୟ ହେଲୁ, ବିରକ୍ତ ମଧ୍ୟ ହେଲୁ । ସତେ ଯେମିତି ଆମର ଜାଗିରିଟା ଅନ୍ୟ ଜଣେ ହଠାତ୍ ଅକ୍ତିଆର କରିନେଇଛି । ଆମେ ଦୁହେଁ ତମ।ତମ ହୋଇ ସେ ଦିଗରେ ଚାଲିଲୁ । କିନ୍ତୁ ଦୂରତା କମିଯିବା ସାଙ୍ଗେ ପଛରୁ ମଧ୍ୟ ଆମେ ଜାଣିପାରିଲୁ ଯେ ଆମ କ୍ଲାସରେ ପଢୁଥିବା ସଲୋନୀ ସେଠି ବସିଛି । କାରଣ ତା' ବେଶ ପୋଷାକ ଖୁବ୍ ଦାମିକିଆ । ତା'ପରି ଆଉ ଦୁଇ ଚାରିଜଣ ମଧ୍ୟ ପିନ୍ଧନ୍ତି । କିନ୍ତୁ ତା'ର ପତଳା ଡେଙ୍ଗାଳିଆ ଗଢ଼ଣ, ସଫା ରଙ୍ଗ ଓ ସୁନ୍ଦର ଚେହେରା ପାଇଁ ସେ ସମସ୍ତଙ୍କ ଭିତରେ ବାରି ହୋଇପଡ଼େ । ତା' ଛଡ଼ା ବେଶି ଆଖିରେ ପଡ଼େ ତା'ର ବଡ଼ ବଡ଼ ଆଖିର ଉଦାସ ଚାହାଣୀ । ତା' ବାପା ଜଣେ ବଡ଼ ପୋଲିସ ଅଫିସର ଥିବାରୁ ସେ କାର ଚଢ଼ି କଲେଜ ଆସୁଥିଲା । ଯେଉଁଦିନ ସେ ଗାଡ଼ିରେ ନ ଆସି ରିକ୍ସାରେ ଆସେ ତା' ପଛେ ପଛେ ଜଣେ ନାଲିପଗଡ଼ିଆ ସାଇକେଲ ଚଢ଼ି ଆସୁଥିବାର ଦୃଶ୍ୟ ପ୍ରାୟ ଆମ ସମସ୍ତଙ୍କ ଆଖିରେ ପଡ଼େ ।

ସେ କେଉଁ ସ୍କୁଲରୁ ପାଶ୍ କରି ଆସିଥିଲା ଆମେ ଜାଣିନଥିଲୁ, କିନ୍ତୁ ସେ ଯେ ଆମ ସମସ୍ତଙ୍କଠାରୁ ଭିନ୍ନ ତା' ଆମେ ବୁଝିପାରିଥିଲୁ । ତା'ସହିତ ସାଙ୍ଗ ହେବାପାଇଁ କେବେ ବି ଚେଷ୍ଟା କରିନୁ । ମୁହଁରେ ଯାହା କହିଲେ ବି ମନରେ ଅନ୍ତତଃ ଜାଣିପାରିଥିଲୁ ଯେ ସେ ଆମଠାରୁ ନିଶ୍ଚୟ କିଛି ଅଧିକା । ତା' ବାପାଙ୍କର ପ୍ରତିଷ୍ଠା, କାର ବା ତା'ର ଦାମୀ ପୋଷାକ ବାହାରେ ବି ସେ ଅନ୍ୟ କିଛି ।

ତାକୁ ସେଠି ବସିଥିବାର ଦେଖି ଆମେ ଆଶ୍ଚର୍ଯ୍ୟ ହୋଇ ପରସ୍ପରର ମୁହଁକୁ ଚାହୁଁଥାଉ । ସେ ଆମର ଉପସ୍ଥିତି ଜାଣିପାରି ପଛକୁ ଫେରି ଚାହିଁଲା । ଆମେ ତା' ମୁହଁକୁ ଚାହିଁ ଦୁଇପାଦ ପଛକୁ ଘୁଞ୍ଚି ଆସିଲୁ । ତାର ଦୁଇ ଭୁରୁ ଭିତରୁ କପାଳର ଶେଷଯାଏ ଲମ୍ବ

ଯାଇଥିଲା ଟକଟକ ଲାଲ ରଙ୍ଗର ସିନ୍ଦୂରକଲି । ତା' ଆଖି ଦି'ଟା ଅଦ୍ଭୁତ ଭାବରେ ଉଜ୍ଜ୍ୱଳ ଦିଶୁଥିଲା ।

ଆମେ ତାକୁ ଆବାକାବା ହୋଇ ଚାହିଁଥିବାର ଦେଖି ସେ ଟିକେ ହସିଦେଇ ଆମକୁ ପାଖକୁ ଡାକିଲା ଓ ସେଇ ପାଖରେ ପଡ଼ିଥିବା ଦୁଇଖଣ୍ଡ ଭଙ୍ଗାପଥର ଉପରେ ବସିବାକୁ ଆମକୁ ଇସାରା କଲା । ମୋର ମନେ ଅଛି ଆମେ ଦୁହେଁ ମନ୍ତ୍ରଚାଳିତ ପରି ସେ ପଥରଖଣ୍ଡ ଦୁଇଟି ଉପରେ ବସିପଡ଼ିଥିଲୁ; କିନ୍ତୁ ତା' ସହିତ କ'ଣ କଥା କହିବୁ ବୁଝିପାରୁନଥିଲୁ ।

ସେ ଏଥର କହିବାକୁ ଆରମ୍ଭ କଲା, "ତୁମ ଦୁହିଁଙ୍କୁ ସବୁବେଳେ ଏଠି ବସିବାର ଦେଖିଛି । ଆଜି ମୋର ଇଚ୍ଛା ହେଲା ଏଠି ଆସି ବସିବାକୁ । ତୁମକୁ ଖରାପ ଲାଗୁଛି କି ?"

ନମିତା ହଠାତ୍ କହି ପକାଇଲା, "ନାଁ ନାଁ ତୁମେ ବସ, ଆମେ ଅନ୍ୟଆଡ଼େ ଯାଉଛୁ ।"

ସଲୋନୀ ଆମକୁ ଆଉ ଯିବାକୁ ଦେଲାନି । ଆମ ସହିତ ଗପସପ କରିବାକୁ ଚାହିଁଲା । ଆମେ ଦୁହେଁ କୃତକୃତ୍ୟ ହୋଇଗଲୁ । ନମିତା କ'ଣ ସବୁ ଗପି ଚାଲିଥାଏ । କ୍ଳାସର ଘଣ୍ଟା ବାଜିବା ସତ୍ତ୍ୱେ ଆମେ କେହି ଉଠିଲୁ ନାହିଁ ।

ମୁଁ ଲକ୍ଷ୍ୟ କରୁଥାଏ ଯେ ନମିତା ଏତେ କଥା କହିଲେ ବି ସେ ତା' ତରଫରୁ କିଛି କହୁନଥାଏ । ତାର ସେ ସିନ୍ଦୂରକଲି ମତେ କେମିତି ଆଚ୍ଛନ୍ନ କରି ରଖିଥାଏ । ମୁଁ ଶେଷରେ ଭରସି କରି ତାକୁ ପଚାରିଲି, "ଆଛା ସଲୋନୀ, ଏତେବଡ଼ ସିନ୍ଦୂରକଲି ମୁଣ୍ଡରେ ମାରିଛ ଯେ ! ଆଜି କ'ଣ ତୁମର କିଛି ପୂଜାପତ୍ର ଘରେ ହେଉଥିଲା କି ?"

ସେ ମତେ ସେମିତି ସ୍ଥିର ଦୃଷ୍ଟିରେ ଚାହିଁ କହିଲା, "ଗୁରୁଦେବ ମୋ ମଥାରେ ଏ ସିନ୍ଦୂରକଲି ମାରି ଦେଇଛନ୍ତି ଓ କହିଛନ୍ତି ମୁଁ ପ୍ରତିଦିନ ଗାଧୋଇ ସାରିବା ପରେ ସେ ମନ୍ତୁରାଇ ଦେଇଥିବା ଗୋଳା ସିନ୍ଦୂରରୁ ନେଇ ମୁଣ୍ଡରେ ମାରିବି ।"

ମୁଁ ଉତ୍ସୁକ ହୋଇ ପଚାରିଲି, "କାହିଁକି ଏପରି କରିବାକୁ କହିଛନ୍ତି ।"

ସେ କିଛି ଉତ୍ତର ଦେଲାନି । ଚୁପ୍ ରହିଲା ।

ମୁଁ ମଧ୍ୟ ଆଉ କୌଣସି କୌତୂହଳ ଦେଖାଇଲି ନାହିଁ । ମୋର କାହିଁକି ମନେହେଲା ଯେ ସେଥିରେ କିଛି ଗୋପନ କଥା ଅଛି ଯାହା ସେ ଆମକୁ କହିବାକୁ ଚାହୁଁନି । ତାକୁ

ବାଧ୍ୟ କରିବାର ପ୍ରଶ୍ନ ନଥିଲା । ଆମେ ଏକା କ୍ଲାସରେ ପଢୁଥିଲେ ବି ଏଇ ମାତ୍ର ତା' ସହିତ ଦୁଇ ଚାରିପଦ କଥା ହୋଇଛୁ । ଲକ୍ଷ୍ୟ କରିଛୁ ସେ କ୍ଲାସ ରୁମରେ ବସିଥିବା ବେଳେ ସେ ତା' ପାଖ ପିଲାଙ୍କ ସହିତ ମଧ୍ୟ କଥା ହୁଏନି । ତେଣୁ ତାକୁ ଲକ୍ଷ୍ୟ କରି ଆମେ ଆମ ଭିତରେ ବେଶ୍ କଟୁ ମନ୍ତବ୍ୟମାନ ଦେଇଥାଉ । ଅଥଚ ତା' ଉପରେ ଦୃଷ୍ଟି ବି ରଖିଥାଉ; ସେ ସେଦିନ କ'ଣ ପିନ୍ଧିଛି, କଲେଜକୁ ଗାଡ଼ିରେ ଆସିଥିଲା ନା ପୁଲିସ ଗାର୍ଡ ଧରି ରିକ୍ସାରେ ଆସିଥିଲା ପ୍ରଭୃତି ।

ଆଜି କିନ୍ତୁ ତା'ସହିତ କିଛି ସମୟ କଟାଇବା ପରେ ମତେ ଖୁବ୍ ସହଜ ଲାଗିଲା । ନମିତା ତ ତାଳୁରୁ ତଳିପା ଯାଏ ପୂରା ତରଳି ଯାଇଥିଲା । ସେଦିନ ସେତିକିରେ ସୀମିତ ରହିଲା ଆମର ପ୍ରଥମ ପରିଚୟର ପର୍ବ ।

ଏଥର ସେ ଆମକୁ ରାସ୍ତାଘାଟ ବା କ୍ଲାସ ରୁମରେ ଯେଉଁଠି ଦେଖେ ଖୁବ୍ ଆତ୍ମୀୟତାର ହସ ଟିକେ ତା' ଓଠରେ ଖେଳିଯାଏ । ତେବେ ସେଇ କଣ୍ଟାଝଣ୍ଟା ବୁଦା ଗହଳରେ ପଡ଼ିଥିବା ଭଙ୍ଗା ପଥର ବେଞ୍ଚ ଉପରେ ହିଁ ଆମେ ବେଳେ ବେଳେ ଏକାଠି ହେଉଥିଲୁ । ଏଣିକି ସଲୋନୀ ବିଷୟରେ କେହି କିଛି କହିଲେ ବା ତା' ମଥାରେ ଅଙ୍କା ହେଉଥିବା ସେ ସିନ୍ଦୂର କଳିକୁ ନେଇ କେହି ଫୁସଫାସ ହେଲେ ନମିତା ତାଙ୍କ ସହିତ ଅଣ୍ଟା ଭିଡ଼ି କଳି କରିବାକୁ ଆରମ୍ଭ କଲା ।

ଧୀରେ ଧୀରେ ଆମ୍ଭମାନଙ୍କ ଭିତରେ ଏକ ସହଜ ସମ୍ପର୍କ ଗଢ଼ି ଉଠିଥିଲା । କଲେଜର ଦ୍ୱିତୀୟ ବର୍ଷ ପ୍ରାୟ ସରିଆସିଥିଲା । ପରୀକ୍ଷା ପାଇଁ ପ୍ରସ୍ତୁତି ଚାଲିଥାଏ । ସେହି ସମୟରେ ଦିନେ ମୁଁ ଏକା ସେଇ ଜାଗାରେ ବସିଥାଏ । ସେଦିନ ନମିତା କଲେଜ ଆସିନଥିଲା । ସଲୋନୀ ଆସି ବସିଲା ମୋ ପାଖରେ । ମୋର କାହିଁକି କିଛିଦିନ ହେଲାଣି ମନେ ହେଉଥିଲା ସଲୋନୀ ମତେ କିଛି କହିବାକୁ ଚାହୁଁଛି । କିନ୍ତୁ ନମିତା ମୋ ସହିତ ସବୁବେଳେ ରହୁଥିବାରୁ ସେ ତା' ଉପସ୍ଥିତିରେ କିଛି କହିବାକୁ ହୁଏତ କୁଣ୍ଠିତ ହେଉଛି । କୁଣ୍ଠିତ ହେବା ମଧ୍ୟ ସ୍ୱାଭାବିକ । କାରଣ ନମିତା ଖୁବ୍ ତବଡବି । ସବୁବେଳେ ଇଆଡୁ ସିଆଡୁ କଥା ସବୁ କୋଉଠୁ ଗୋଟେଇ ଆଣି ସେଥିରେ ନିଜର କିଛି ଉଦ୍ଭଟ କଳ୍ପନା ମିଶାଇ ତାକୁ ପୂରା ସତକଥା ବୋଲି କହୁଥିବ । ତେଣୁ ତା'ଆଗରେ କେହି କିଛି ଗଭୀର କଥା କହିବାକୁ ଚାହିଁବନି ।

ସେଦିନ ସଲୋନୀ ମୋ ପାଖରେ କିଛି ସମୟ ନୀରବରେ ବସିବା ପରେ ହଠାତ୍ ମତେ କହିଲା, "ଅରୁଣା, ମୁଁ ଆଉ କାଲିଠାରୁ କଲେଜ ଆସିବିନି ।"

ମୁଁ ଚମକିପଡ଼ି ପଚାରିଲି "କାହିଁକି ? କ'ଣ ହେଲା ? ପରୀକ୍ଷା ତ ଆଉ ଅଳ୍ପଦିନ ରହିଲା; କିନ୍ତୁ କଲେଜରେ ଏବେ ବି ତ କ୍ଲାସ ହେଉଛି । ତୁମେ କ'ଣ ଘରେ ରହି ପ୍ରିପାୟର କରିବ କି ?"

"ନାଁ ମୁଁ ଆଉ ପାଠ ପଢ଼ିବିନି । ଆମ ଗୁରୁଦେବଙ୍କର ଆଶ୍ରମ ଅଛି ମଣିପୁରରେ । ମୁଁ ଯାଇ ସେଇଠି ରହିବି ।"

ସଲୋନୀ ଖୁବ୍ ସହଜ କଣ୍ଠରେ କହିଲା ।

ମୁଁ ତା' କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲି । ଭାବିଲି ଇଏ କି ଅଦ୍ଭୁତ କଥା କହୁଛି । ପାଠପଢ଼ା ଛାଡ଼ି କୋଉ ସୁଦୂର ମଣିପୁରରେ ଯାଇ ରହିବ । ପୁଣି ଆଶ୍ରମରେ ! ଏମାନଙ୍କର ଉଚ୍ଚଶିକ୍ଷିତ ପରିବାର, ଆଁ' ବାପା ପୁଣି ଜଣେ ଉଚ୍ଚ ପୋଲିସ ଅଫିସର ସେଥିରେ କେହି ତାକୁ କିପରି ବାରଣ କରୁନାହାନ୍ତି ?

ମୁଁ ଏଥର ମୁହଁ ଖୋଲିଲି, "ଆଚ୍ଛା ଏ ନିଷ୍ପତ୍ତି ତୁମର ନାଁ ତୁମ ଘର ଲୋକଙ୍କର ?"

- ଗୁରୁଦେବଙ୍କର ।

- ଘରେ କେହି କିଛି ମନା କରୁ ନାହାନ୍ତି ?

- ନାଁ । ଗୁରୁଦେବଙ୍କର ନିର୍ଦ୍ଦେଶକୁ କେହି ଅମାନ୍ୟ କରିପାରିବେ ନାହିଁ ।

"ତେବେ ତୁମର ଇଚ୍ଛା କ'ଣ ? ପାଠପଢ଼ା ଛାଡ଼ି ଘରଠାରୁ ଦୂରରେ କୋଉ ଅଜଣା ଜାଗାରେ ଯାଇ ରହିବ । ତୁମେ ନିଜେ ମନା କରୁନ କାହିଁକି ?" ମୋର ବିସ୍ମୟର ସୀମା ନଥିଲା ।

ଖୁବ୍ ଧୀର କଣ୍ଠରେ ସଲୋନୀ କହିଲା, "ମୁଁ ନିଜେ କିଏ, ମୋର ପରିଚୟ କ'ଣ ଓ ମୋ ଜୀବନର ଲକ୍ଷ୍ୟ କ'ଣ ଏସବୁ ଜାଣିଯିବା ପରେ ମୋର ନାହିଁ କରିବାର ପ୍ରଶ୍ନ କାହିଁକି ବା ଉଠିବ ।"

ତା' ସ୍ୱରରେ କ'ଣ ଥିଲା କେଜାଣି ମୁଁ ସତକୁ ସତ ଡରିଗଲି । ମୁଁ ପୁଣି ତାକୁ କିଛି ପଚାରିବା ପୂର୍ବରୁ ସେ ମତେ କେମିତି ଗୋଟେ ଦୃଷ୍ଟିରେ ଚାହିଁ କହିଲା, "ଆଚ୍ଛା ତୁମେ ଚିତ୍ରାଙ୍ଗଦାଙ୍କ ନାମ ଶୁଣିଛ ?"

"ଚିତ୍ରାଙ୍ଗଦା !! ସେ କିଏ ?" ମୁଁ କିଛି ନ ବୁଝିପାରି ଓଲଟା ପ୍ରଶ୍ନ କଲି ।

ସେ ହେଉଛନ୍ତି ମଣିପୁରର ରାଜକନ୍ୟା । ଅର୍ଜୁନଙ୍କୁ ବିବାହ କରିଥିଲେ । ମହାଭାରତରେ ତାଙ୍କ ପ୍ରସଙ୍ଗରେ କେତେ କଥା ଲେଖାଯାଇଛି, ତୁମେ ଜାଣିନ କିଛି ?" ସଲୋନୀ ମୋଠାରୁ ଉତ୍ତର ଆଶାକରି ଅପେକ୍ଷା କରୁଥିଲା ।

କିନ୍ତୁ ମତେ ପ୍ରକୃତରେ ଜଣାନଥିଲା କୋଉ ପ୍ରସଙ୍ଗ କଥା ସେ କହୁଛି । ଏମିତି ନାଁଟେ କେବେ ଶୁଣିବା ପରି ମୋର ମନେ ପଡୁନଥିଲା । ତଥାପି ନିଜର ଅଜ୍ଞତା ପ୍ରକାଶ ନକରି କହିଲି, "ହଁ ସେମିତି ଗୋଟେ କଥା କୋଉଠି ଅଛି ଯେ ଏବେ ହଠାତ୍ ମୋର ମନେପଡୁନି । ତେବେ ମହାଭାରତର ସେ ଚିତ୍ରାଙ୍ଗଦା ସହିତ ତୁମର ସମ୍ପର୍କ କ'ଣ ?"

"ମୁଁ ସେଇ ଚିତ୍ରାଙ୍ଗଦା । ଗୁରୁଦେବ କହିଲେ ଏବେ ମୁଁ ସେଇ ଆତ୍ମା ନେଇ ଜନ୍ମ ହୋଇଛି । ମୋର ଏ ଜନ୍ମରେ ବହୁତ କିଛି କରିବାକୁ ଅଛି । ତେଣୁ କଲେଜରେ ପାଠପଢ଼ା ନାଁରେ ଅଯଥା ସମୟ ନଷ୍ଟ ନକରି ନିଜର ଲକ୍ଷ୍ୟ ଦିଗରେ ଶୀଘ୍ର ଆଗେଇବା ଉଚିତ ।"

ସେ ତେଣିକି କ'ଣ ସବୁ କହୁଥାଏ ମୁଁ କିଛି ବୁଝିପାରୁନଥାଏ । ଆଁ କରି ତା' ମୁହଁକୁ ଚାହିଁଥାଏ । ସେ ଶେଷରେ ତା କଥା ବନ୍ଦ କରି କହିଲା, "ଅରୁଣା ତୁମକୁ ମୋର ଅନୁରୋଧ ଏକଥା କାହାକୁ କିଛି କହିବନି; ନମିତାକୁ ମଧ୍ୟ ନୁହେଁ । କାରଣ ମୁଁ ଭଲଭାବରେ ଜାଣେ ମୋ କଥାକୁ କେହି ବିଶ୍ୱାସ କରିବେ ନାହିଁ । ବରଂ ଥଟ୍ଟା ପରିହାସ କରିବାକୁ ସେମାନଙ୍କୁ ଖୋରାକ ମିଳିଯିବ । ଅବଶ୍ୟ ମୁଁ ତୁମକୁ ବି କିଛି କହିନଥାନ୍ତି । କିନ୍ତୁ କାହିଁକି କେଜାଣି ମୋ ଜୀବନର ଏହି ଗୁରୁତ୍ୱପୂର୍ଣ୍ଣ ଘଟଣା ସମ୍ପର୍କରେ ତୁମକୁ କହିବା ପାଇଁ ମୋ ଭିତରେ ଏକ ପ୍ରେରଣା ଅନୁଭବ କରୁଥିଲି । ଚାଲ, ଏଥର ଉଠିବା ।"

ମୁଁ ତାକୁ ଆଉ କିଛି ବି କହିପାରିଲିନି । ଦୁହେଁ ନୀରବରେ ସେଇ କଣ୍ଟାଝଣ୍ଟା ଆଡେଇ କଲେଜ ବାରଣ୍ଡାରେ ପହଞ୍ଚିଗଲୁ । ତାପରେ ସିଏ ସେଠୁ କୁଆଡ଼େ ଚାଲିଗଲା ମୁଁ ଜାଣିପାରିଲିନି । କିଛି ଗୋଟେ ଗୋପନୀୟତାର ଭାର ମୁଣ୍ଡରେ ଧରି ମୁଁ ଘରକୁ ଫେରିଗଲି ।

ସତକୁ ସତ ତା'ପରଠାରୁ ସେ ଆଉ କଲେଜ ଆସିଲା ନାହିଁ । ତା'ର ସେମିତି ଅନ୍ୟ କେହି ବନ୍ଧୁ ନଥିଲେ ତା' ବିଷୟରେ ଖୋଜାଲୋଡ଼ା କରିବା ପାଇଁ । ନମିତା ଦୁଇ ଚାରିଥର ତାର ନ ଆସିବା ସମ୍ପର୍କରେ ମତେ ପଚାରିଥିଲା । ମୋଠାରୁ କୌଣସି ଉତ୍ତର ନପାଇ ତା'ର ଆଗ୍ରହ ମଧ୍ୟ ଚାଲିଗଲା ।

ସଲୋନୀ ମୋର କୌଣସି ପ୍ରକାରେ ଘନିଷ୍ଠ ନଥିଲା । ତା' କଥା ରଖିବାର ଦାୟ ମଧ୍ୟ ମୋର ନଥିଲା । ତଥାପି କାହିଁକି କେଜାଣି ମୁଁ ସେଦିନର ଘଟଣାକୁ ମନରେ ଚାପି ରଖିଲି । ତାର ଅନୁପସ୍ଥିତିକୁ ନେଇ ପରେ କିଏ କେତେ କଥା କହୁଥିଲେ ବି ମୁଁ ସବୁକଥା ଜାଣିବି ପାଟି ଖୋଲି ନଥିଲି ।

ଏ ଭିତରେ ବିତିଗଲାଣି ପ୍ରାୟ ଚାଳିଶ ବର୍ଷ । ଜୀବନରେ କେତେ ଘାତପ୍ରତିଘାତ, କେତେକେତେ ସୁଖଦୁଃଖର ଘଟଣା ଘଟିଛି । କେତେ ମଣିଷ ଆସିଛନ୍ତି; ସେମାନଙ୍କୁ

ନେଇ କେତେ ପ୍ରକାରର ପରିସ୍ଥିତିମାନ ସୃଷ୍ଟି ହୋଇଛି । କାହାକୁ ଗୁରୁତ୍ୱ ଦେଇଛି ତ କାହାକୁ ଦେଇନି । କିଏ ଚନ୍ଦନପରି ଦେହରେ ମନରେ ଶୀତଳତାର ପ୍ରଲେପ ଦେଇଛି ତ କିଏ ଭରିଦେଇଛି ବିଷର ଜ୍ୱାଳା । ସବୁକୁ ଜୀବନଧାରାରେ ସାମିଲ କରିନେଇଛି । ଭିତରେ ବାହାରେ ଅନେକ କୋଳାହଳ । ନୀରବ ମୁହୂର୍ତ୍ତଟିଏ ସତେକି ଦୁର୍ଲଭ ।

କିନ୍ତୁ ସେସବୁ ଭିତରେ ବି କୋଉଠି ଗୋଟେ ଛୋଟ ଜାଗାଟିଏ ଅଛି, ଯେଉଁଠି ମୋର ଚିରାଚରିତ ସଂସାରର ଚଞ୍ଚଳତା ନାହିଁ, ବରଂ ଜିଜ୍ଞାସାଟିଏ ବଞ୍ଚିରହିଛି । ସତରେ କ'ଣ ସଲୋନୀ ସନ୍ନ୍ୟାସିନୀ ହୋଇ କୋଉଠି ଅଛି ! ସତରେ କ'ଣ ସେ ମହାଭାରତର ଚିତ୍ରାଙ୍ଗଦା ! ମାତ୍ର ଷୋଳ ସତର ବର୍ଷ ବୟସରେ ସଲୋନୀ ତା'ର କୋଉ ଗୁରୁଙ୍କ ନିର୍ଦ୍ଦେଶରେ ଘରଛାଡ଼ି ଅଜଣା ଜାଗାରେ ତପସ୍ୟା କରୁଛି ! ତା' ସହିତ ଚିତ୍ରାଙ୍ଗଦା ଚରିତ୍ରର କିପରି ବା ସଂଯୋଗ ଘଟିଲା !

ଏମିତି ଭାବନାରେ ବୁଡ଼ିରହି ମୁଁ ଘରେ କେତେବେଳେ ପହଞ୍ଚି ଯାଇଥିଲି । କେମିତି ଗୋଟେ ଛଟପଟ ଭାବ ମନରେ ଲାଗିରହିଲା । ଭାବିଲି ସେ ଫଟୋଟିକୁ ଆଉ ଥରେ ଭଲରେ ଦେଖିଥିଲେ ହୋଇଥାନ୍ତା । କିନ୍ତୁ ମୁଁ କ'ଣ ସତରେ ପନ୍ଦର ଷୋଳ ବର୍ଷ ବୟସର ଦାମୀ ପୋଷାକ ପିନ୍ଧିଥିବା ପତଳା ଡେଙ୍ଗା ଚେହେରାର ସେ ଝିଅଟିକୁ ସେ ବୟସ୍କା ମହିଳାର ଫଟୋଚିତ୍ରରେ ଚିହ୍ନି ପାରିଥାନ୍ତି ! ତା'ଛଡ଼ା ସଲୋନୀର ଚେହେରା ବି ମୋ ମନରେ କେବେଠାରୁ ଅସ୍ପଷ୍ଟ ହୋଇଗଲାଣି । କେବଳ କପାଳର ସିନ୍ଦୂର କଲି କ'ଣ ଜଣକୁ ନିର୍ଦ୍ଦିଷ୍ଟ ଭାବରେ ଚିହ୍ନାଇ ଦେଇପାରିଥାନ୍ତା ! କିନ୍ତୁ ମୁଁ ତ ସେ ଦୋକାନୀକୁ କିଛି ପଚାରି ପାରିଥାନ୍ତି । କିଏ ସେ ମାତାଜୀ, କ'ଣ ତାଙ୍କର ପରିଚୟ । କିଛିଟା ତ ଜାଣିପାରିଥାନ୍ତି । ଜାଣିଥିବା ଲୋକଙ୍କୁ କିଛି ନ ପଚାରି ସେ ନାମଟି ଶୁଣୁଶୁଣୁ ନିଜ ଭିତରେ ଉଚ୍ଚକିତ ହୋଇ ଫେରିଆସିଲି କାହିଁକି ?

ମୋ ମନ ଆଉ କୋଉଥିରେ ଲାଗୁନଥାଏ । ମୁଁ ଉଦ୍‌ବିଗ୍ନ ହୋଇ ପରଦିନ ସକାଳକୁ ଅପେକ୍ଷା କରୁଥାଏ । ଝିଅ ଜ୍ୱାଇଁ ତାଙ୍କ କାମରେ ଅଫିସ ବାହାରିଯିବା ପରେ ମୁଁ ପୁଣି ଗାଡ଼ି ନେଇ ବାହାରିଗଲି ଦିଲ୍ଲୀ ହାଟକୁ । ଏଥର ମୁଁ ସିଧା ଯାଇ ପହଞ୍ଚିଗଲି ମଣିପୁର ଷ୍ଟଲରେ । ଗତକାଲି ଦୁଇଟି ଶାଢ଼ି କିଣିଥିବା ମହିଳା ଜଣକ ପୁଣି ଆସି ପହଞ୍ଚିଥିବାରୁ ଦୋକାନୀ ଜଣକ ଖୁସିହୋଇ ମତେ ବୋଧେ କିଛି ପଚାରୁଥିଲା । ମୁଁ କିନ୍ତୁ ତା' କଥାକୁ ଆଦୌ ଧ୍ୟାନ ନଦେଇ ସେଇ ଫଟୋ ପାଖରେ ପହଞ୍ଚି ତାକୁ ନିରେଖି ଦେଖିବାକୁ ଲାଗିଲି ।

ଦୋକାନୀ ମୋର ଉତ୍ସୁକତା ବୋଧେ ଲକ୍ଷ୍ୟ କରୁଥିଲା । ମୁଁ କିଛି ପଚାରିବା ପୂର୍ବରୁ ସେ କହିଲା "ଇଏ ଆମର ଗୁରୁମାତା । ଆପଣ କ'ଣ ତାଙ୍କ ବିଷୟରେ କିଛି ଜାଣିବାକୁ ଚାହୁଁଛନ୍ତି ?"

ମୁଁ ନିଜକୁ ସମ୍ଭାଳି ନେଇ ପଚାରିଲି, "ଆଚ୍ଛା କୋଉଠି ରୁହନ୍ତି ସେ ?"

"ମାତାଜୀ ତାଙ୍କର ଭିନ୍ନ ଭିନ୍ନ ଆଶ୍ରମରେ ରହିଥାନ୍ତି । ଏବେ ଅଛନ୍ତି ଗୁରୁଗାଓଁରେ ଥିବା ତାଙ୍କର ମୁଖ୍ୟ ଆଶ୍ରମ 'ଆନନ୍ଦତୀର୍ଥ'ରେ ।"

ମୁଁ ଖୁବ୍ ଉତ୍କଣ୍ଠିତ ହୋଇ ପଚାରିଲି, "ଆଚ୍ଛା ସେ ଆଶ୍ରମକୁ ଗଲେ ତାଙ୍କ ସହିତ ଦେଖାହୋଇ ପାରିବ କି ?"

"କାହିଁକି ନୁହେଁ ! ନିଶ୍ଚୟ ଦେଖାହେବ । ମାତାଜୀ ଏବେ ସାଧାରଣଙ୍କୁ ଦର୍ଶନ ଦେଉଛନ୍ତି । ଆପଣ ଯଦି ସେଠାକୁ ଯିବାକୁ ଚାହିଁବେ ମୁଁ ଆପଣଙ୍କୁ ଠିକଣା ବତାଇଦେବି ।" ଏତିକି କହି ସେ ତା' ଡ୍ରୟାରରୁ ଗୋଟେ କାର୍ଡ ବାହାର କରି ମତେ ବଢ଼ାଇଦେଲା ।

ମୁଁ ତାକୁ ଧନ୍ୟବାଦ ଜଣାଇ ଘରକୁ ଫେରିବା ବେଳେ ସେଠାକୁ ଯିବାପାଇଁ ମନ ସ୍ଥିର କରିନେଲି । କିନ୍ତୁ ଝିଅକୁ କହିବାକୁ ପଡ଼ିବ ମୁଁ ହଠାତ୍ ଗୁରୁଗାଓଁ କାହିଁକି ଯିବାକୁ ଚାହୁଁଛି । କାରଣ ସେ ଭଲଭାବରେ ଜାଣେ ଆମର କେହି ଚିହ୍ନାଜଣା ସେଠି ନାହାନ୍ତି । ତେଣୁ ମୁଁ ବାଧ୍ୟହୋଇ ସେଇ ଆନନ୍ଦତୀର୍ଥ ଆଶ୍ରମ ଆଡ଼େ ଟିକେ ବୁଲିଯିବା କଥା କହିଲି ।

ଝିଅ ଟିକେ ଆଶ୍ଚର୍ଯ୍ୟ ହେଲା । କୋଉ ମଠ ମନ୍ଦିର ବା ଆଶ୍ରମ ଆଡ଼େ ଯିବାର ଆଗ୍ରହ ମୋଠାରେ ସେ କେବେ ଦେଖିନି । ହଠାତ୍ ମୋର ସେ ଆଶ୍ରମ ଯିବା ପ୍ରସ୍ତାବ ତାକୁ ଅଡୁଆ ଲାଗିଲେ ବି ସେ ଆଉ କିଛି ପଚାରିଲା ନାହିଁ । ବରଂ ଦୁଇଦିନ ପରେ ପଡୁଥିବା ରବିବାର ଦିନ ସେ ମଧ୍ୟ ମୋ ସହିତ ଯିବା କଥା ସ୍ଥିର ହେଲା ।

ମୁଁ ଯଦିବା ସେଠାକୁ ଏକା ଯିବାକୁ ଚାହୁଁଥିଲି ଝିଅକୁ ମୋ ସହିତ ଯିବାପାଇଁ ମନା କରିପାରିଲିନି । ମୁଁ ମନା କରିବା ମାନେ ସେମାନେ ଅଯଥା କୌତୂହଳୀ ହେବେ । ରବିବାର ସକାଳେ ଆମେ ଦୁହେଁ ବାହାରିବାକୁ ପ୍ରସ୍ତୁତ ହେଉଛୁ, ଝିଅ ଅଫିସରୁ ଫୋନ ଆସିଲା ଯେ ତା'ର ସେଠାରେ ଉପସ୍ଥିତି ଜରୁରୀ ଦରକାର । ସେ ବଡ଼ କୁଣ୍ଠିତ ହୋଇ ମତେ ସେ କଥା କହିଲା । ମୁଁ ତ ମନେ ମନେ ତାହା ହିଁ ଖୋଜୁଥିଲି । ତେବେ ମୁଁ କିଛି କହିବା ପୂର୍ବରୁ ଝିଅ କହିଲା, "ମା' ତୁ ଏକା ଯା । ଆମର ତ ପୁରୁଣା ଡ୍ରାଇଭର ସେ ତତେ ଠିକ୍ଠାକ୍ ନେଇ ପହଞ୍ଚାଇ ଦେବ । ତୁ ବୁଲାବୁଲି କରି ଫେରି ଆସିବୁ ।"

ଝିଅ ବାହାରିଗଲା ତା' ଅଫିସକୁ । ଆମ ଦୁହିଁଙ୍କର ଗୁରୁଗାଓଁ ଯିବା କଥା ଥିବାରୁ ଜ୍ୱାଇଁ ତାଙ୍କର ସକାଳୁ ତାଙ୍କ କାମରେ କୁଆଡ଼େ ବାହାରି ଯାଇଥିଲେ ।

ମୁଁ ଶୀଘ୍ର ବାହାରି ଗରୁଗାଓଁରେ ଯାଇ ପହଞ୍ଚିଗଲି । ସେଠି 'ଆନନ୍ଦତୀର୍ଥ' ଆଶ୍ରମ ଖୋଜି ପାଇବାରେ କୌଣସି ଅସୁବିଧା ହେଲାନି । ବଡ଼ବଡ଼ ଗଛବୃଛରେ ପରିପୂର୍ଣ୍ଣ ବେଶ୍

ପ୍ରଶସ୍ତ ପରିବେଶ । ଭିତରେ ଭିତରେ ଆଧୁନିକ ଶୈଳୀରେ ନିର୍ମିତ ବିଭିନ୍ନ ଉଚ୍ଚତାର ଅଟ୍ଟାଳିକାମାନ ରହିଥିଲା । ଗୋଟିଏ କଡ଼ରେ ଫୁଲଭର୍ତ୍ତି ଉଦ୍ୟାନ । ତା' ମଝିରେ କୃତ୍ରିମ ଝରଣାର ଉପସ୍ଥିତି ଖୁବ୍ ମନୋରମ ଥିଲା । ମୁଁ ସେସବୁଥିରୁ ଶୀଘ୍ର ଦୃଷ୍ଟି ଫେରାଇ ନେଇ କିପରି ଭାବରେ ମାତାଜୀଙ୍କ ଦର୍ଶନ ପାଇପାରିବି ସେକଥା ଚିନ୍ତା କରୁଥାଏ ।

ତାଙ୍କର ସେଠି ଥିବା ରିସେପ୍ସନରେ ଯାଇ ମାତାଜୀଙ୍କୁ ସାକ୍ଷାତ କରିବାର ଇଚ୍ଛା ବ୍ୟକ୍ତ କଲି । ସେମାନେ ମତେ ଅନ୍ୟ ଏକ କୋଠରିକୁ ଯିବାକୁ ନିର୍ଦ୍ଦେଶ ଦେଲେ । ସେଠି ଦେଖିଲି ଲୋକେ ଲାଇନରେ ଠିଆହୋଇ ନିଜ ନିଜର ନାମ ଓ ପୂର୍ଣ୍ଣ ଠିକଣା ପଞ୍ଜୀକରଣ କରୁଛନ୍ତି ଏବଂ ଫଟୋ ମଧ୍ୟ ଉଠାଯାଉଛି । ସେମାନଙ୍କୁ ପଚାରି ବୁଝିଲି ଯେ ଏସବୁ ବ୍ୟବସ୍ଥା ଆଜିଠାରୁ ଆରମ୍ଭ ହୋଇଛି । କାରଣ ଭିଜିଟରଙ୍କ ସଂଖ୍ୟାକୁ ନିୟନ୍ତ୍ରଣ କରିବା ପାଇଁ ଏହାହିଁ ସବୁଠାରୁ ଭଲ ଶୃଙ୍ଖଳିତ ଉପାୟ । ଯେଉଁମାନଙ୍କୁ ଭିତରୁ ଡକରା ଆସିବ ସେଇ କେତେଜଣ ମାତ୍ର ଆଶ୍ରମର ଗଭୀର ଅଭ୍ୟନ୍ତରରେ ଥିବା ମାତାଜୀଙ୍କ କୋଠରି ଭିତରକୁ ଯାଇ ତାଙ୍କୁ ଦର୍ଶନ କରିବାର ସୁଯୋଗ ପାଇବେ ।

ଯେଉଁ ଜାଗାରେ ଲୋକେ ନିଜ ଭାଗ୍ୟ ପରୀକ୍ଷା କରିବାକୁ ଅପେକ୍ଷା କରୁଥାନ୍ତି ମୁଁ ସେଇଠି ସେମାନଙ୍କ ମେଳରେ ଗୋଟେ କଣିକିଆ ହୋଇ ବେଞ୍ଚ ଉପରେ ବସିଥାଏ । ଲୋକଙ୍କର ଉତ୍କଣ୍ଠା ଓ ଆଗ୍ରହକୁ ଲକ୍ଷ୍ୟ କରି ଭାବୁଥାଏ ମୋର ତ କୌଣସି ଭକ୍ତିଭାବନା ନାହିଁ; କେବଳ ଅଛି ଏକ ଅଦ୍ଭୁତ କୌତୂହଳ । ତଥାପି ଆଜି ଯଦି ମତେ ମାତାଜୀଙ୍କୁ ସାକ୍ଷାତ କରିବାର ସୁଯୋଗ ନମିଳେ ତେବେ ମୋ କୌତୂହଳ ସବୁଦିନ ପାଇଁ ମୋରି ଭିତରେ ରହିଯିବ । ମୁହଁ ଖୋଲିବାର ଆଉ ପ୍ରଶ୍ନ ଉଠିବ ନାହିଁ ।

ଦେଖିଲି ଜଣେ ମଧ୍ୟବୟସ୍କା ମହିଳା ମୋ ପାଖରେ ଆସି ବସିଲେ । ସେ ଖୁବ୍ ବିଚଳିତ ଜଣାପଡୁଥାନ୍ତି ଓ ବାରମ୍ବାର ଆଖିରୁ ଲୁହ ପୋଛୁଥାନ୍ତି । ମୁଁ ସେମିତି ଚୁପ୍ ହୋଇ ବସିଥାଏ । କିଛି ସମୟ ପରେ ସେ ମହିଳା ଜଣକ ବୋଧହୁଏ ମୋର କୌଣସି ଭାବାନ୍ତର ହେଉନଥିବା ଲକ୍ଷ୍ୟକରି ମତେ ହିନ୍ଦୀରେ ପଚାରିଲେ, "ଆଚ୍ଛା ଆପଣ କ'ଣ ମାତାଜୀଙ୍କର ଶିଷ୍ୟା ?"

ମୁଁ ମୁଣ୍ଡ ହଲାଇ ନାହିଁ କଲି ।

ସେ ପୁଣି ପଚାରିଲେ "ଆପଣ କ'ଣ ଏଠାକୁ ପ୍ରଥମ କରି ବୁଲି ଆସିଛନ୍ତି ?"

ମୁଁ 'ହଁ' କହିବାରୁ ସେ ଏଥର ମୁଁ ଆଶ୍ରମ ଓ ମାତାଜୀଙ୍କ ସମ୍ପର୍କରେ କିଛି ଜାଣିଛି କି ନାହିଁ ବୋଲି ପଚାରିଲେ ।

ଏଥର ତାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ହେଲା । ମୁଁ କହିଲି "ଦେଖନ୍ତୁ ମୁଁ ଏଠାକୁ କେବଳ ଜଣେ ଭିଜିଟର ଭାବରେ ଆସିଛି । ମୁଁ ଏ ଆଶ୍ରମ ବା ଏହାର ମୁଖ୍ୟା ଚିତ୍ରାଙ୍ଗଦା ମାତାଜୀଙ୍କ ବିଷୟରେ କିଛି ଜାଣିନି । ସେ କେଉଁ ଅଞ୍ଚଳର, କ'ଣ ତାଙ୍କର ଜାତି, କେଉଁ ସାଧନା ପଦ୍ଧତିକୁ ସେ ଗ୍ରହଣ କରିଛନ୍ତି ଓ ଦୀକ୍ଷା ଦିଅନ୍ତି କି ନାହିଁ ପ୍ରଭୃତି ବିଷୟରେ ମୋର କୌଣସି ଧାରଣା ନାହିଁ । ଆପଣ ମତେ କିଛି କହିବେ କି ?"

ମୋ କଥା ଶୁଣି ମହିଳା ଜଣକ ଉତ୍‌ଫୁଲ୍ଲ ଜଣାପଡ଼ିଲେ । ଅନ୍ତତଃ ଜଣେ ଜିଜ୍ଞାସୁକୁ ପାଇଯିବାର ଆନନ୍ଦ ତାଙ୍କ ମୁହଁରେ ବାରିହୋଇ ପଡ଼ିଲା । ସେ ଖୁବ୍ ଆଗ୍ରହରେ ମତେ କହିଲେ, "ମାତାଜୀ ହେଉଛନ୍ତି ଜଣେ ସିଦ୍ଧସାଧିକା । ସେ କୋଉ ଅଞ୍ଚଳର କ'ଣ ତାଙ୍କର ଜାତି କେହି କିଛି ଜାଣନ୍ତିନି । ସେ ଖୁବ୍ ଅଳ୍ପ ବୟସରେ ମଣିପୁରର କୋଉ ଏକ ପାହାଡ଼ ଗୁମ୍ଫାରେ ଅନେକ ବର୍ଷ କଠୋର ତପସ୍ୟା କରି ସିଦ୍ଧି ପାଇଛନ୍ତି । ସେ ଟିକେ ଛୁଇଁଦେଲେ କେତେ ଅସାଧ୍ୟ ରୋଗ ଭଲ ହୋଇଯାଏ । ତାଙ୍କୁ ଟିକେ ଦର୍ଶନ କରି ଦେଲେ ବି ଜଣକର ମାନସିକ ପୂରଣ ହୋଇଥାଏ । କିନ୍ତୁ ଭାଗ୍ୟରେ ଥିଲେ ସିନା ଦର୍ଶନର ସୌଭାଗ୍ୟ ମିଳିବ ।"

"ଏଠି ବି ଦର୍ଶନ କରିବାରେ କ'ଣ ବଡ଼ସାନର ବିଚାର ଅଛିକି ?"

ମୁଁ ପଚାରିଲି ।

ସେ ମତେ ତାଗିଦା କରି କହିଲେ, "ସେସବୁ ଏଠି ଚଳେନା । ମାତାଜୀ ସବୁବେଳେ କୁହନ୍ତି ତାଙ୍କୁ ଦର୍ଶନ କରିବାର ସୁଯୋଗ ପାଉଥିବା ଲୋକେ କେବଳ ନିଜକୁ ଭାଗ୍ୟବାନ ଭାବିବା ଠିକ୍ ନୁହେଁ । ସେ ସର୍ବଦା ସମସ୍ତଙ୍କ ପାଖରେ ଅଛନ୍ତି । ତାଙ୍କର ସାହାଯ୍ୟ ଲୋଡ଼ୁଥିବା ବ୍ୟକ୍ତିକୁ ସେ କେବେ ବି ନିରାଶ କରନ୍ତି ନାହିଁ । କିନ୍ତୁ ଏଇ ଚର୍ମଚକ୍ଷୁରେ ଦେବୀଙ୍କୁ ଦର୍ଶନ କରିବାକୁ କିଏ ବା ବ୍ୟାକୁଳ ନହେବ ?"

ଏତିକି ବେଳେ ପ୍ରତୀକ୍ଷା ଗୃହକୁ ହାତରେ ଗୋଟେ କାଗଜ ଧରି ଆଶ୍ରମର ଜଣେ ସାଧକ ଭିତରକୁ ଆସିଲେ । ସେ ଖୁବ୍ ଧୀର ଓ ଶାନ୍ତ ଭାବରେ ଜଣଜଣ କରି ନାଁ ଡାକିଲେ । ସେ ଯାହା ନାଁ ଉଚ୍ଚାରଣ କରୁଥାନ୍ତି ସେ ଦଳରୁ ବାହାରି ଏକୁଟିଆ ଯାଇ ଲାଇନରେ ଠିଆ ହୋଇ ଯାଉଥାଏ । ହଠାତ୍ ମୋ ନାମ ଡକାଯିବାର ଶୁଣି ମୁଁ ପ୍ରଥମେ ହଡବଡେଇ ଯାଇ ଠିଆ ହୋଇଥିବା ଲୋକଙ୍କ ପଛରେ ଠିଆ ହୋଇଗଲି । ମୋ ପାଖରେ ବସିଥିବା ମହିଳାଙ୍କ ପାଇଁ ସୁଯୋଗ ଆସିଲାକି ନାହିଁ ଜାଣିବା ମୋ ପକ୍ଷରେ ସମ୍ଭବ ନଥିଲା ।

ଏଥର ସେ ସାଧକ ଜଣକ ହାତଯୋଡ଼ି କହିଲେ ଯେ ମାତାଜୀ ଆଜି ନିର୍ଦ୍ଦିଷ୍ଟ ସଂଖ୍ୟକ ଲୋକଙ୍କୁ ଦର୍ଶନ ଦେବା ପାଇଁ ଚାହୁଁଥିବାରୁ ଏ ପ୍ରକାର ବ୍ୟବସ୍ଥା କରାଯାଇଛି । ଆସନ୍ତାକାଲି ନିର୍ଦ୍ଦିଷ୍ଟ ସମୟ ଭିତରେ ଯେଉଁମାନେ ଆସିବେ ସମସ୍ତେ ଦର୍ଶନ ପାଇପାରିବେ ।

ଲୋକଙ୍କର ଲାଇନ ଏଥର ଆଗକୁ ବଢ଼ିଲା । କେତୋଟି ରୁମ୍ ଓ କରିଡ଼ର ବାଟ ଦେଇ ଆଗେଇବା ପରେ ଶେଷରେ ସେଇ ଆକାଂକ୍ଷିତ ବଖରାଟି ଆସିଗଲା । ଭିତରୁ ଝୁଣା ଓ ସୁଗନ୍ଧିତ ଧୂପର ବାସ୍ନା ଭାସିଆସୁଥାଏ । ମୋ ଆଗର କିଛି ଲୋକ ସେ ବଖରା ଭିତରକୁ ପଶି ସାରିଥାନ୍ତି । ଆଉ ମାତ୍ର କେତୋଟି ମୁହୂର୍ତ୍ତ ପରେ ମୁଁ ଭିତରକୁ ଯିବି । କାହାକୁ ଦେଖିବି ସେଠି !! ଗୋଟେ ଅଦ୍ଭୁତ ଉତ୍ତେଜନାରେ ମୋ ଗୋଡ଼ ହାତ ଥରିବାକୁ ଆରମ୍ଭ କରିଥାଏ । ଛାତି ଭିତରେ ହୃତ୍‌କମ୍ପନ ବଢ଼ିଯାଇଥାଏ । ମୁଁ ଆଉ ସ୍ୱଚ୍ଛନ୍ଦରେ ପାଦ ଆଗକୁ ବଢ଼ାଇ ପାରୁନଥାଏ । ଛନ୍ଦିହୋଇ ପଡୁଥାଏ । ମୋର ଚିନ୍ତାଶକ୍ତି ଆଉ କିଛି କାର୍ଯ୍ୟ କରୁନଥାଏ । ଗୋଟାଏ ତୀବ୍ର ଉଦ୍‌ବେଗ ମୋର ତାଳୁରୁ ତଳିପାଯାଏ ସଂଚରି ଯାଉଥାଏ । ମୁଁ ସେଇ ଅବସ୍ଥାରେ ଭିତରକୁ କେମିତି ଠେଲିହୋଇ ଚାଲିଗଲି ।

ବଖରାଟିର ମଧ୍ୟଭାଗରେ ପଡ଼ିଥିବା ଏକ ଆସ୍ଥାନ ଉପରେ ଶୁଭ୍ରବସ୍ତ୍ର ପରିଧାନ କରି ବସିଥିଲେ ଜଣେ ମହିଳା । ତାଙ୍କର ଥିଲା ଉଜ୍ଜ୍ୱଳ ଗୌରବର୍ଣ୍ଣ । ମସ୍ତକରେ ଘନ ଗହଳ ଶୁଭ୍ରକେଶ । କେଶରେ ବୟସର ଛାପ ଅଥଚ ଚର୍ମର ମସୃଣତାରୁ ତାଙ୍କର ବୟସ ବାରିବା ସହଜ ନଥିଲା । ତେବେ ଯେଉଁ କାରଣରୁ ମୋ ଭିତରର ଆଲୋଡ଼ନ ଅଧିକ ବଢ଼ିଯାଇଥିଲା ତାହା ଥିଲା ତାଙ୍କ କପାଳର ଦୀର୍ଘ ସିନ୍ଦୂରକଲି ।

ମୋ ଆଗରେ ଆଉ ଦୁଇ ତିନିଜଣ ଲୋକ ବୋଧହୁଏ ଥାନ୍ତି । ଏଥର ତାଙ୍କୁ ପ୍ରଣାମ କରି ଆଗକୁ ଆଗେଇବାର ପାଳି ମୋ ପାଇଁ ଆସିଗଲା । ମୁଁ ତାଙ୍କୁ ନିବିଷ୍ଟ ଭାବରେ ଚାହିଁଲି । ସ୍ମିତହାସର ସୁକୋମଳ ଧାରଟିଏ ତାଙ୍କ ଓଠଧାରରେ ଲାଗି ରହିଥାଏ । କିନ୍ତୁ ତାଙ୍କର ସେ ଅନ୍ତର୍ଭେଦୀ ଉଜ୍ଜ୍ୱଳ ଦୃଷ୍ଟି ଆଗରେ ମୋ ଆଖି ନତ ହୋଇଗଲା । ମୁଁ ପ୍ରଣାମ କରି ଆଗକୁ ଆଗେଇଯାଇ ସେ ବଖରାର ବାହାରକୁ ଚାଲିଆସିଲି । କେତୋଟି ବଖରା ଦେଇ ପୂରା ବାହାରକୁ ଯିବାବେଳେ ଲକ୍ଷ୍ୟକଲି କାନ୍ଥସାରା ଶିବ ଓ କୃଷ୍ଣଙ୍କର ଲୀଳା ଉପରେ ଆଧାରିତ ଚିତ୍ରମାନ ଅଙ୍କାଯାଇଛି । ପରିବେଶ ସମ୍ପୂର୍ଣ୍ଣ ନୀରବ ।

ଆମେ କେତେଜଣ ପୂରା ବାହାରକୁ ବାହାରିଆସିବା ପରେ ଚେଣିକି କିଏ କୋଉ ଦିଗରେ ଚାଲିଯିବାକୁ ଲାଗିଲେ ।

ମୋ ମନରେ ଏତେ ସମୟ ଧରି ରହିଥିବା ସଂଶୟଟିର କୌଣସି ସମାଧାନ ଆସିନଥାଏ । କଲେଜ ଜୀବନର ପ୍ରଥମରେ ସାଧାରଣ ପରିଚୟ ଟିକେ ହୋଇଥିବା

ସଲୋନୀକୁ ମୁଁ ମାତାଜୀଙ୍କ ଭିତରେ ଖୋଜି ପାଉଥିବା ଏକ ଅସମ୍ଭବ କଳ୍ପନା ଯାହା କରୁଥିଲି । ମୋର କଳ୍ପନା ଓ ବାସ୍ତବତା ଭିତରେ କୌଣସି ତାଳମେଳ ଥିବା ପରି ମୋର ଆଉ ମନେ ହେଲାନି ।

ନିଜକୁ ଆତ୍ମସ୍ଥ କରିବା ପାଇଁ ଆଶ୍ରମ ଛାଡ଼ିବା ପୂର୍ବରୁ ସେଠି ଗୋଟେ ବିରାଟ ଗଛ ଚାରିକଡ଼େ ଘେରିଥିବା ଏକ ସିମେଣ୍ଟ ବେଢ଼ା ଉପରେ କିଛି ସମୟ ପାଇଁ ବସିଗଲି । ଏହି ତିନି ଦିନ ମୋର ଏକ ଅଦ୍ଭୁତ ଆବେଶ ଭିତରେ କଟିଛି । ସେଥିରୁ ନିଜକୁ ମୁକ୍ତ କରିବାକୁ ଇଚ୍ଛା କରୁଥିଲି ।

ମୁଁ ସେଠାରୁ ଉଠିବାକୁ ଯାଉଛି ଆଶ୍ରମର ଜଣେ ସାଧକ କାଗଜ ଖଣ୍ଡେ ଧରି କାହାକୁ ଖୋଜିବା ପରି ହୋଇ ଆସିଲେ । ମତେ ଦେଖିପକାଇ ସେ ସ୍ଥିର ହୋଇ ଠିଆ ହୋଇଗଲେ ଓ ମୋ ନିକଟକୁ ଆସି ମତେ ହିନ୍ଦୀରେ ପଚାରିଲେ, "ଆପଣ ନିଶ୍ଚୟ ଅରୁଣା ରାୟ, ଓଡ଼ିଶାରୁ ଆସିଛନ୍ତି ।"

ମୁଁ ଆବାକାବା ହୋଇ ଚାହିଁ ଖାଲି ମୁଣ୍ଡ ହଲାଇ ହଁ କଲି । ତା'ପରେ ସେ ମତେ ଖୁବ୍ ନମ୍ର ଭାବରେ କହିଲେ "ଆପଣଙ୍କୁ ମାତାଜୀ ଭିତରକୁ ଆସିବା ପାଇଁ ଚାହୁଁଛନ୍ତି ।"

ମୁଁ ସତେକି ଆକାଶରୁ ଖସିଲି । ମାତାଜୀ ମତେ ଡାକୁଛନ୍ତି । ମୁଁ ତ ତାଙ୍କର ଶିଷ୍ୟା ନୁହେଁ କି କେହି ସାଧିକା ବି ନୁହେଁ । ମତେ ସେ କାହିଁକି ଡାକୁଛନ୍ତି । ପରମୁହୂର୍ତ୍ତରେ ବିଜୁଳି ପରି କଥାଟାଏ ମନରେ ଚମକି ଗଲା । ଏଇ ଯେ ମାତାଜୀ ଯାହାଙ୍କୁ କିଛି ସମୟ ତଳେ ଦର୍ଶନ କରି ଆସିଛି ସେ ସଲୋନୀ ନୁହେଁତ । ମତେ କ'ଣ ସେ ଚିହ୍ନିପାରିଛି !!

ମୁଁ ଆଉ ଆଗକୁ କିଛି ଭାବି ପାରିଲି ନାହିଁ । ସେ ବ୍ୟକ୍ତିଙ୍କର ପଛେ ପଛେ ସମ୍ମୋହିତ ହେବା ପରି ଯିବାକୁ ଲାଗିଲି । ପୁଣି ଅଳିନ୍ଦ ପରେ ଅଳିନ୍ଦ ଅତିକ୍ରମ କରି ମୁଁ ସେଇ ଆକାଂକ୍ଷିତ ସ୍ଥାନରେ ଆସି ପହଞ୍ଚିଗଲି । ମୋ ଆଗରେ ପୂର୍ବର ସେଇ ଉଜ୍ଜ୍ୱଳ ଶୁଭ୍ରମୂର୍ତ୍ତି । ହସ ହସ ପ୍ରସନ୍ନ ମୁଖମୁଦ୍ରା ।

ମୁଁ ଯୋଡ଼ହାତ ହୋଇ କୌଣସି ପ୍ରକାରେ ନିଜକୁ ସମ୍ଭାଳି ଠିଆ ହୋଇଗଲି । ଏଥର ସେ ସ୍ପଷ୍ଟ ଓଡ଼ିଆ ଭାଷାରେ କହିଲେ, "ଅରୁଣା, ମତେ ହିଁ ଦେଖିବାକୁ ଏତେ ବ୍ୟସ୍ତ ହୋଇ ଆସିଛ । ଅଥଚ ଦେଖିବା ପରେ ଚିହ୍ନିପାରୁନ ?"

ଏପର୍ଯ୍ୟନ୍ତ ଯାଏ ସଲୋନୀ ଓ ସନ୍ନ୍ୟାସିନୀଙ୍କୁ ନେଇ ସଂଶୟର ଘନକୁହେଳିରେ ଆଛନ୍ନ ହୋଇ ରହିଥିବା ମୋର ମନ ହଠାତ୍ ମେଘମୁକ୍ତ ଜହ୍ନ ପରି ଝଲସି ଉଠିଲା । ମୁଁ ଉଲ୍ଲସିତ ହୋଇ କହିଲି "ସଲୋନୀ ତୁମେ ! ମୁଁ ତେବେ ଠିକ୍ ହିଁ ଭାବୁଥିଲି ଯେ ତୁମେ ହିଁ ଚିତ୍ରାଙ୍ଗଦା ମାତାଜୀ ହୋଇଥିବ ।"

ସେ ମୃଦୁହସି ତାଙ୍କ ପାଖରେ ବସିବା ପାଇଁ ମତେ ଇସାରା କଲେ । କିନ୍ତୁ ମୋର ଉଚ୍ଛ୍ୱାସ ସେତେବେଳକୁ ମୋ ଆୟତ୍ତରେ ନାହିଁ । ମୁଁ ଗଦଗଦ ହୋଇ କହିବାକୁ ଲାଗିଲି "ସଲୋନୀ ତୁମର ହୁଏତ ମନେ ନଥିବ; କିନ୍ତୁ ତୁମର କଲେଜ ଛାଡ଼ିବାର ଶେଷଦିନ ତୁମେ ଏଇ ନାମଟି ଉଚ୍ଚାରଣ କରି କହିଥିଲ ଯେ ତୁମର ଗୁରୁଦେବ ତୁମକୁ ଏହି ନାମରେ ସମ୍ବୋଧନ କରିଛନ୍ତି । ତୁମେ ମଣିପୁରର ସେହି ରାଜକନ୍ୟା ଚିତ୍ରାଙ୍ଗଦା ।"

ଚିତ୍ରାଙ୍ଗଦା ମାତାଜୀ ସେମିତି ମୃଦୁ ହସି କହିଲେ, "ଆଚ୍ଛା, ତୁମେ ସେଦିନର ସେଇ ପଦଟିଏ କଥା ଏତେ ବର୍ଷ ପରେ ବି ମନେ ରଖିଛ ?"

"ମୁଁ ତ ସେ ପଦଟି କଥା କେବେ ବି ଭୁଲିନି । ବରଂ ତୁମକୁ ଥରେ ଭେଟିବା ପାଇଁ ନିଜ ଭିତରେ ବେଳେବେଳେ ଏକ ପ୍ରକାର ତୀବ୍ର ବ୍ୟାକୁଳତା ଅନୁଭବ କରିଛି । କିନ୍ତୁ ତୁମେ ସନ୍ନ୍ୟାସିନୀ ଭାବରେ ଏତେ ଉଚ୍ଚସ୍ତରରେ ପହଞ୍ଚି ମତେ ମନେ ରଖିଛ ଜାଣି ମୁଁ ନିଜକୁ ବିଶ୍ୱାସ କରିପାରୁନି ।"

ମୁଁ ଏକଥା ପଦକ କହିଦେବା ପରେ ମୋର ସତେକି ବାକ୍‌ରୁଦ୍ଧ ହୋଇଗଲା । ମୁଁ ଆବିଷ୍ଟ ହୋଇ ତାଙ୍କ ମୁହଁକୁ ଚାହିଁରହିଲି ।

"ଅରୁଣା, ମୋ ଜୀବନର ସେଇ ବିଶେଷ ଆଧ୍ୟାତ୍ମିକ ଅନୁଭୂତି ପ୍ରଥମେ ତୁମରି ନିକଟରେ ଖୁବ୍ ସହଜ ଭାବରେ ବ୍ୟକ୍ତ ହୋଇଥିଲା । ଅଜାଣତରେ ଆମେ ସେଇ ମୁହୂର୍ତ୍ତରେ କେଉଁ ଏକ ସୂକ୍ଷ୍ମ ସୂତ୍ରରେ ଯୋଡ଼ି ହୋଇ ଯାଇଥିଲେ । ତେଣୁ ତୁମେ ବି ମୋ ସ୍ମୃତିରେ ସେହିପରି ରହିଛ ।"

ତାଙ୍କ କଥା ଶୁଣି ମୋର ମନେ ହେଉଥାଏ ମୋ ଛାତି ଭିତରେ ନିଃଶ୍ୱାସ ଟିକକ କୋଉଠି ଅଟକି ଯାଇଛି । ଗୋଟିଏ ଟ୍ରେରେ କିଛି ଫଳରସର ଗ୍ଲାସ ଧରି ମୋ ଆଡ଼କୁ ତାଙ୍କର ପରିଚାରିକା ବଢ଼ାଇଦେଲେ । କୋଉ ଯୁଗର ତୃଷାର୍ତ୍ତ ପରି ମୁଁ ତାକୁ ଦୁଇଢୋକରେ ପିଇଦେଲି ।

ତେଣିକି କେବଳ ନୀରବତାର ରାଜତ୍ୱ । ମୋ ଭିତରେ ଅପୂର୍ବ କିଛି ଆବିଷ୍କାର କରିପାରିବାର ଉତ୍ତେଜନା ଧୀରେଧୀରେ ପ୍ରଶମିତ ହୋଇଯାଉଥାଏ । ମୁଁ ସତରେ କୋଉଠି ଅଛି କାହା ସହିତ କଥା ହେଉଛି ବୁଝି ନପାରି ଭିତରେଭିତରେ ଶିହରି ଉଠୁଥାଏ । ମୋ ଆଗରେ ସିଦ୍ଧିପ୍ରାପ୍ତା ଜଣେ ମହାନ୍ ସନ୍ନ୍ୟାସିନୀ । ବିରାଟ ଆଶ୍ରମର ମୁଖ୍ୟା । ଅଗଣିତ ତାଙ୍କର ଶିଷ୍ୟଶିଷ୍ୟା । ସେ ପୁଣି ମତେ ସ୍ମରଣରେ ରଖିଛନ୍ତି । ଏଣେ ମୋ ସ୍ମୃତିପଟ୍ଟରେ ଏକ ଉଜ୍ଜ୍ୱଳ ଉଦାସପଣ ନେଇ କଲେଜରେ ଆତଯାତ ହେଉଥିବା ଷୋଳ ସତର ବର୍ଷର

କିଶୋରୀର ଅସ୍ପଷ୍ଟ ରୂପ । ମୁଁ ସେ ଦୁହିଁଙ୍କୁ ଯୋଡ଼ି ପାରୁନଥାଏ କି ଭିନ୍ନ ମଧ୍ୟ କରିପାରୁନଥାଏ । ସଲୋନୀ ନା ଯୋଗିନୀ କାହାର ସ୍ୱର ମୋର ସେ ଆଚ୍ଛନ୍ନ ଅବସ୍ଥା ଭିତରେ ଧ୍ୱନିତ ହେଉଥିଲା ମୁଁ ବୁଝିପାରୁନଥିଲି ।

ମତେ କେହି ଅରୁଣା ବୋଲି ହିଁ ସଂବୋଧନ କରି କିଛି କଥା କହୁଥିଲେ । ମୁଁ ଶୁଣି ପାରୁଥିଲି କିନ୍ତୁ ବୁଝି ପାରୁନଥିଲି ।

ଯେମିତି ଗୁଡାଏ ପକ୍ଷୀ କଳରୋଳ କରି ଏ ଦିଗରୁ ସେ ଦିଗକୁ ଉଡ଼ି ଯାଉଥିଲେ । ସବୁଆଡ଼େ ପ୍ରସ୍ଫୁଟିତ ପୁଷ୍ପର ବର୍ଣ୍ଣମୟ ଉତ୍ସବ । ସୂର୍ଯ୍ୟାଲୋକରେ ଝଲମଲ କରୁଥିଲା ଦିଗନ୍ତବ୍ୟାପୀ ଶ୍ୟାମଳ ଉପତ୍ୟକା ।

ମୁଁ ଆତ୍ମସ୍ଥ ହେଲି । ମୋ ସମ୍ମୁଖରେ ସେମିତି ସ୍ଥିର ଭାବରେ ରହିଛି ଜ୍ୟୋତି ରୂପଟିଏ । ସେ ମତେ ଚାହିଁ ହସୁଥିଲେ । ଆଉ ସେ ନିଃଶବ୍ଦ ହସ ଢ଼େଉ ପରି ମୋ ସତ୍ତାକୁ ଛୁଇଁ ଯାଉଥିଲା ।

ମତେ ଏଥର ଉଠିବା ପାଇଁ ସେଠି ଉପସ୍ଥିତ ଥିବା କେହି ଜଣେ ଇସାରା କଲେ । ମୁଁ ସେହି ଅଭିଭୂତ ଅବସ୍ଥାରେ ବାହାରକୁ ଆସିଲି । ମତେ ଛାଡ଼ିବାକୁ ଆସିଥିବା ବ୍ୟକ୍ତିଜଣକ କହିଲେ "ଆଜି ଗୋଟିଏ ଦିନ ପାଇଁ ହିଁ ଯେଉଁ ଫଟୋ ଓ ପରିଚୟପତ୍ରର ବ୍ୟବସ୍ଥା ହୋଇଥିଲା ତାହା ନିଶ୍ଚୟ ଥିଲା ଆପଣଙ୍କ ପାଇଁ ।"

ମୁଁ ତାଙ୍କୁ କୌଣସି ଉତ୍ତର ନଦେଇ ଆଶ୍ରମ ବାହାରକୁ ଆସି ମୋ ଗାଡ଼ିରେ ବସିଲି । ଗାଡ଼ି ଚାଲିବାକୁ ଆରମ୍ଭ କଲା । କିଛି ସମୟ ପରେ ମନ ଭିତରୁ କେହି ଯେମିତି ଖେଞ୍ଚି ଦେବାପରି କହିଲା "ଯିଏ ସିଦ୍ଧ ଯୋଗିନୀ ସେ କ'ଣ ସେମିତି ଚିହ୍ନିପାରି ନଥାନ୍ତେ ଯେ ଫଟୋ ଓ ପରିଚୟପତ୍ରର ସହାୟତା ନେଉଥିଲେ !"

ମୁଁ ଚମକି ପଡୁପଡୁ ଏକ ଅପୂର୍ବ ପ୍ରତ୍ୟୟରେ ଝଲମଲ ସ୍ୱରଟିଏ ପୂର୍ବସ୍ୱରକୁ ପୂରା ଚୁପ୍ କରାଇଦେଇ କହିଲା, "ଚିତ୍ରାଙ୍ଗଦା ମାତାଜୀ ତାଙ୍କ ପରିଚାରକକୁ ଜନଗହଳି ଭିତରୁ ତତେ ଚିହ୍ନି ଭିତରକୁ ଡାକିଥାନ୍ତେ କିପରି ! ସେଥିପାଇଁ ତ ଆଜି ଦିନକ ଲାଗି ଫଟୋ ଉଠାଇବାର ବ୍ୟବସ୍ଥା କରିଥିଲେ । ଆଉ ଗୋଟେ କଥା ମଧ୍ୟ ମନେରଖ ତୁ ତାଙ୍କୁ ସ୍ମରଣ ରଖିବାଟା ସ୍ୱାଭାବିକ । କାରଣ ତୋ ଜୀବନରେ ତାଙ୍କ ପରି ଅସାଧାରଣ ମଣିଷଟିଏ ତୁ ଆଉ ଦେଖିନୁ; କିନ୍ତୁ ତୋ'ପରି ଅସଂଖ୍ୟ ସାଧାରଣ ମଣିଷକୁ ସେ ଦେଖୁଛନ୍ତି । କେତେକେତେ ସମସ୍ୟା ନେଇ ବା କେବଳ ଶ୍ରଦ୍ଧାବଶରୁ ଲୋକଙ୍କର ଧାଡ଼ି ତାଙ୍କ ପାଖକୁ ଛୁଟି ଆସୁଛି । ତା'ସତ୍ତ୍ୱେ ତତେ ଥରେ କିଶୋରୀ ବୟସରେ ଶ୍ରଦ୍ଧା କରିଥିଲେ ବୋଲି ଆଜି ସିଦ୍ଧ ସାଧିକା

ହେବା ପରେ ବି ତତେ ସ୍ମରଣ ରଖିଛନ୍ତି । ଏ ଭାଗ୍ୟ କାହାର ବା ଥାଏ !"

ସେ ସ୍ୱରଟି ନୀରବ ହୋଇଗଲା ।

ଏ ଭିତରେ ଘଟିଯାଇଥିବା ସମସ୍ତ ଘଟଣା ମତେ ସ୍ୱପ୍ନ ଦେଖିବା ପରି ଲାଗୁଥିଲା । ମୁଁ, ସଲୋନୀ, ଚିତ୍ରାଙ୍ଗଦା ସନ୍ନ୍ୟାସିନୀ, କଲେଜର ଗଛବୁଦାଘେରା ପଥର ଖଣ୍ଡ, ଗୁରୁଗାଓଁର ସେ ବିରାଟ ଆଶ୍ରମ ଓ ଆମ ଭିତରେ ଘଟିଥିବା କଥୋପକଥନର ତାତ୍ପର୍ଯ୍ୟ କଥା ଚିନ୍ତା କରୁ କରୁ ଭାବିଲି ତାଙ୍କ ସାଙ୍ଗରେ ତ ଅଧିକ ଦୁଇପଦ କଥା ହୋଇପାରିଥାନ୍ତି । ଏତେବର୍ଷ ଭିତରେ ସେଇ କିଶୋରୀ ଦିନର ଘଟଣାଟିକୁ ନେଇ କେତେ ଘାଣ୍ଟି ନ ହୋଇଛି, ଅଥଚ ସେଇ ଆକାଂକ୍ଷିତ ମୁହୂର୍ତ୍ତଟି ଆସିଯିବା ପରେ ଗୋଟେ ଉଚ୍ଛ୍ୱାସରେ କ'ଣ ଦୁଇପଦ କଥା କହିଦେଇ ମୂକ ହୋଇଗଲି କେମିତି ? ସେ ବି ଯାହା କହୁଥିଲେ ମୁଁ ତାକୁ ଶୁଣିପାରିଲିନି କାହିଁକି ?

ଏଥର ପୁଣି ସେଇ ସ୍ୱରଟି ଖୁବ୍ ସ୍ପଷ୍ଟଭାବରେ କହିଲା, "ତୁ କ'ଣ ଭାବୁଛୁ ଏକ ମହାର୍ଘ ମୁହୂର୍ତ୍ତରେ ସମସ୍ତେ କହିବା ଓ ଶୁଣିବା ପାଇଁ ସମର୍ଥ ହୋଇପାରନ୍ତି । ନୀରବତା ହିଁ ସେ ମହୂର୍ତ୍ତକୁ ସାର୍ଥକ କରେ । ଅଯଥା ପ୍ରଶ୍ନରେ ଗୁଡାଇ ତୁଡାଇ ନହୋଇ ବରଂ ଭାଗ୍ୟବଶରୁ ପାଇଥିବା ଅନୁଭୂତିଟିକକୁ ଭିତରେ ବଞ୍ଚାଇ ରଖିବାର ଚେଷ୍ଟା କର ।"

ମୁଁ ଏଥର ଚମକିଉଠି ସଳଖି ହୋଇ ବସିଗଲି । ବାହାରକୁ ଚାହିଁଲି । ଭିଡ଼ କଟାଇ ମୋ ଗାଡ଼ି ତୀରବେଗରେ ଆଗକୁ ଆଗକୁ ଚାଲିଛି ।



# ଆକାଶ ଗମନ

ମୋର ପ୍ରିୟ ବାନ୍ଧବୀ ବିଥି ଆସି ପହଞ୍ଚିଥିଲା ଆମେରିକାରୁ ମାତ୍ର ପନ୍ଦର ଦିନ ପାଇଁ । ସେ ସେଠି ରହିଲାଣି ପଚିଶ ବର୍ଷ ହେବ । କିନ୍ତୁ ସେ ଯେବେ ଓଡ଼ିଶା ଆସେ ଆମେ ଦୁହେଁ ସାଙ୍ଗ ହୋଇ ପୁରୀ ଯାଉ ଜଗନ୍ନାଥଙ୍କୁ ଦର୍ଶନ କରିଆସୁ । ବିନା ବ୍ୟତିକ୍ରମରେ ଆମର ଏଇ ବ୍ୟବସ୍ଥା ଚାଲିଆସିଛି ।

କିନ୍ତୁ ଏଥର ବିଥି ତାର ଶ୍ୱଶୁରଘର ଜଞ୍ଜାଳରେ ଏପରି ବ୍ୟସ୍ତ ରହିଲା ଯେ ମୋ ପାଖରେ ଆସି କିଛି ସମୟ କଟାଇବାକୁ ସମୟ ପାଇଲା ନାହିଁ । ଏପଟେ ମୋର ମଧ୍ୟ କଲେଜରେ ପରୀକ୍ଷା ସମୟ ଚାଲିଥିବାରୁ ମୁଁ ବି ସମୟ କରିପାରୁନଥାଏ ।

ତାର ଆମେରିକା ଫେରିଯିବାକୁ ଆଉ ମାତ୍ର ଥାଏ ଦୁଇଦିନ । ମୁଁ ଭାବିଲି ଏଥର ବୋଧେ ଠାକୁରଙ୍କୁ ଏକାସାଙ୍ଗେ ଯାଇ ଦର୍ଶନ କରିହେବନି ।

କିନ୍ତୁ ବିଥି ତା' ଯିବା ପୂର୍ବଦିନ ପ୍ରାୟ ସନ୍ଧ୍ୟା ହୋଇ ଆସୁଥିବାବେଳେ ମୋ ଘରେ ଆସି ପହଞ୍ଚିଗଲା । ସେହିକ୍ଷଣି ପୁରୀ ବାହାରିବା ପାଇଁ ମତେ କହିଲା । ମୁଁ କଲେଜରୁ ଅଳ୍ପ ସମୟ ପୂର୍ବରୁ ଆସି ଘରେ ପହଞ୍ଚିଥିଲି । ତେଣୁ ମତେ ଟିକେ ଥତମତ ହେଉଥିବାର ଦେଖି ବିଥି କହିଲା, "ବୁଝିଲ ମାଷ୍ଟ୍ରାଣୀ, ତୁମେ ତ ଏଇଠି ରହୁଛ । ମନ କଲେ ପୁରୀ ତୁମ ପାଇଁ ଦୁଇ

ଘଣ୍ଟାର ବି ରାସ୍ତା ନୁହେଁ । ମୁଁ କୋଉଠି ରହୁଛି ଜାଣିଛ ତ ! ତା'ଛଡ଼ା ସବୁଥର ସାଙ୍ଗ ହୋଇ ଯାଇଚେ, ଏଥର ମଧ୍ୟ ଯିବା । ଆର ଥରକୁ କଥା ରଖିଲେ କିଏ ଜାଣେ ଆରଥର ଆଉ ଆସିବ କି ନାହିଁ ।"

ମୁଁ ତା' କଥା ଶୁଣି କହିଲି, "ଠିକ୍ ଅଛି ଆଉ ଅଧିକ ଦାର୍ଶନିକତା ଦେଖାନାହିଁ ମତେ କିଛି ସମୟ ଦେ ବାହାରିବାକୁ ।'' ମୁଁ ଯେତେ ଶୀଘ୍ର ସମ୍ଭବ ପ୍ରସ୍ତୁତ ହୋଇଗଲି ।

ଦୁହେଁ ବାହାରି ପଡ଼ିଲୁ ତା ଗାଡ଼ିରେ । ପୁରୀରେ ପହଞ୍ଚିବା ବେଳକୁ ସନ୍ଧ୍ୟା ସାତଟା ହେବ । ଶୀତ ଦିନ । ରାତି ଅଧିକା ହେବା ପରି ଲାଗୁଥାଏ । ଆମର କେବଳ ଠାକୁର ଦର୍ଶନ କରି ଫେରିଯିବା କଥା । ତେଣୁ ସମୟ ପାଇଁ ବ୍ୟସ୍ତ ହେବାର କିଛି ନଥିଲା ।

ଗାଡ଼ି ଅଟକିଗଲା ମନ୍ଦିରଠାରୁ ବେଶ୍ କିଛି ଦୂରରେ । ସେଇଠୁ ରିକ୍ସାଟିଏ କରି ଦୁହେଁ ମନ୍ଦିର ନିକଟରେ ପହଞ୍ଚି ଗୋଡ଼ହାତ ଧୋଇ ଚାଲିଲୁ ଭିତରକୁ । ବାଇଶି ପାହାଚରେ କେତୋଟି ମାତ୍ର ପାହାଚ ଚଢ଼ିବା ପରେ ପ୍ରଥମେ ବାମପଟରେ ଥିବା କାଶୀ ବିଶ୍ୱନାଥଙ୍କୁ ଦର୍ଶନ କରିସାରି ଉପରକୁ ଯିବା ପାଇଁ ଆଉ ମାତ୍ର ଚାରି ପାଞ୍ଚଟି ପାହାଚ ଚଢ଼ିଛୁ କି ନାହିଁ ହଠାତ୍ ମୋର ବାଁ ପଟ ଆଣ୍ଠୁଟା ଲକ୍ ହୋଇଗଲା । ଏମିତି ବେଳେ ବେଳେ ହୁଏ । କିଛି ସମୟ ପାଇଁ ସେଇ ଆଣ୍ଠୁଟା ଅଚଳ ହୋଇଯାଏ । ଆଉ ପାଦେ ବି ଘୁଞ୍ଚି ପାରେନି ।

ମୋର ଏ ଅବସ୍ଥା ବିଷୟରେ ବିଥିକୁ କିଛି ଜଣାନଥିଲା । କଥା କହୁକହୁ ସେ ଆଗକୁ ଆଉ ଦୁଇ ପାହାଚ ଚଢ଼ି ଯାଇଥିଲା । ମତେ ସାଙ୍ଗରେ ନ ଦେଖି ପଛକୁ ଫେରି ଚାହିଁଲାବେଳକୁ ମୁଁ ସେଇ ତଳ ପାହାଚରେ ସେମିତି ଛିଡ଼ା ହୋଇ ରହିଛି । ମୋର କ'ଣ ହେଲା ବୋଲି ସେ ତଳକୁ ଓହ୍ଲାଇ ଆସିଲା । ଏମିତି ଦୁର୍ଦ୍ଦଶା ମୋର କ୍ୱଚିତ ହୁଏ । କିନ୍ତୁ ହଠାତ୍ ଏମିତି ମନ୍ଦିର ଭିତରେ ଆଣ୍ଠୁଟା ଅଚଳ ହୋଇଯିବ ଏକଥା ମୁଁ କଳ୍ପନା କରିନଥିଲି । ମୁଁ ଜାଣେ ଆଣ୍ଠୁଟା କିଛି ସମୟ ମାଲିସ କରିଦେଲେ ସେ ଠିକ୍ ହୋଇଯାଏ । କିନ୍ତୁ କେତେ ସମୟ ଲାଗିବ ତାର ଠିକ୍ ନାହିଁ । ସେଥିରେ ପୁଣି ପାହାଚ ଚଢ଼ି ଭିତରକୁ ଯିବା ପୂରା ଅସମ୍ଭବ । ବରଂ ତଳକୁ ଓହ୍ଲାଇ କିପରି ଗାଡ଼ି ପାଖରେ ପହଞ୍ଚିବି ତାହା ହିଁ ଥିଲା ମୋ ପାଇଁ ଚିନ୍ତାର କାରଣ ।

ବିଥି ମୋର ଏପରି ସମସ୍ୟା ବିଷୟରେ କିଛି ଜାଣିନଥିଲା । ହଠାତ୍ ଏପରି ଘଟଣାରେ ସେ ବ୍ୟସ୍ତ ହୋଇପଡ଼ିଲା । ଯେଉଁଠି ଠିଆ ହୋଇଥିଲି ତା ସାହାଯ୍ୟରେ କୌଣସି ପ୍ରକାରେ ସେଇ ପାହାଚ ଉପରେ ଗୋଡ଼ ଲମ୍ବେଇ ବସିପଡ଼ିଲି ।

ମୋ ପାଖରେ ସେ ବସିପଡ଼ି ମତେ ଆଉଁଶି ପକାଉଥାଏ । ମୁଁ ତାକୁ ବୁଝାଇଦେଲି ଏମିତି ଅବସ୍ଥା ସାମୟିକ ଭାବରେ ଘଟିଥାଏ । କିନ୍ତୁ ଆଉ ଏବେ ପାହାଚ ଚଢ଼ି ଉପରକୁ ଯିବା ସମ୍ଭବ ନୁହେଁ । ତେଣୁ ସେ ଭିତରକୁ ଯାଇ ଠାକୁରଙ୍କୁ ଦର୍ଶନ କରିଆସୁ । ମୋର ଆଉ ଏ ବସିବା ଜାଗାରୁ ହଲିବାର ନାହିଁ। ତା'ଛଡ଼ା ମୁଁ ଏଇଠି ରହୁଥିବାରୁ ଅନ୍ୟ କେତେବେଳେ ମନ୍ଦିରକୁ ଆସିପାରିବି ।

ମତେ ସାଙ୍ଗରେ ନେଇ ଯେ ସେ ଆଉ ଭିତରକୁ ଯାଇପାରିବନି ସେକଥା ସେ ବୁଝିଗଲା । ଖୁବ୍ ମନ ଖରାପ କଲା । କିନ୍ତୁ ଅନ୍ୟ କିଛି ଉପାୟ ନଥିବାରୁ ସେ ବାଧ୍ୟହୋଇ ଭିତରକୁ ଚାଲିଗଲା ।

ମୁଁ ସେଇଠି ବସି ବ୍ୟାଗରେ ସବୁବେଳେ ରଖୁଥିବା ମଲମଟି ବାହାରକରି ଆଣ୍ଠୁରେ ମାଲିସ କରିବାକୁ ଲାଗିଲି । ଠାକୁରଙ୍କୁ ଦର୍ଶନ ନ କରିପାରିବାର ଦୁଃଖ ଅପେକ୍ଷା ତଳକୁ କିପରି ଓହ୍ଲାଇ ଯାଇପାରିବି ସେଇ ଚିନ୍ତାରେ ମୁଁ ଅଧିକ ବିବ୍ରତବୋଧ କରୁଥାଏ ।

ବାଇଶି ପାହାଚର ବିଭିନ୍ନ ସ୍ଥାନରେ କିଛିକିଛି ଲୋକ ବସିଥାନ୍ତି । କେହି ଦଳରେ ତ କେହି ଏକୁଟିଆ । ଏହି ସମୟରେ ଦୁଇଜଣ ବୟସ୍କ ଭଦ୍ରଲୋକ ଆସି ମୋର ଆଗ ପାହାଚରେ ବସିଲେ । ସେମାନଙ୍କ ମଧ୍ୟରୁ ଅପେକ୍ଷାକୃତ ଟିକେ କମ୍ ବୟସର ବ୍ୟକ୍ତି ଜଣକ ଅନ୍ୟ ଜଣକ ଉଦ୍ଦେଶ୍ୟରେ କହିଲେ, "ଆଚ୍ଛା ଅଶୋକଦା, ଆପ୍‌ନି ସବ୍ ସମୟେ ଏଇଖାନେ କ୍ୟାନୋ ବସେନ୍ ? ଆର୍ କୋନ୍ ଜାୟେଗା ନେଇ ନା କି ?"

ଅନ୍ୟ ଜଣକ ଉତ୍ତର ଦେଲେ, "ଆରେ ତରୁନ୍, ତୁମି ଜାନନା ଏଇଖାନେ ବସେ ଆମି କି ଅଭିଜ୍ଞତା ପେୟେଛିଲାମ ।"

ମୁଁ ବଂଗଳା ଭାଷା ପ୍ରାଂଜଳ ଭାବରେ ବୁଝିପାରେ । ସେ ଦୁହିଁଙ୍କର ଏଇ ଦୁଇପଦ କଥା ଶୁଣି ମୁଁ ବେଶ୍ ଉତ୍ସୁକ ହୋଇପଡ଼ିଲି । କାନପାତି ଶୁଣିବାକୁ ଚେଷ୍ଟା କଲି ସେ ବଂଗାଳି ଭଦ୍ରଲୋକ କେଉଁ ଅଭିଜ୍ଞତାର କଥା କହିବେ । ମୁଁ ଅନୁମାନ କରିନେଲି ଯେ ସେ ନିଶ୍ଚୟ କିଛି ଭିନ୍ନ କଥା କହିବେ ଏବଂ ତା' ମଧ୍ୟ ଆମର ଏଇ ସାଧାରଣ ପାର୍ଥିବ ସ୍ତରର ହୋଇନଥିବ ।

ଦର୍ଶନ ଶାସ୍ତ୍ରର ଅଧ୍ୟାପିକା ଭାବରେ ମୁଁ ବହୁ ତତ୍ତ୍ୱ ଜାଣିଛି କିନ୍ତୁ ପୋଥିଗତ ବିଦ୍ୟା ଅପେକ୍ଷା ସେପରି କିଛି ପ୍ରତ୍ୟକ୍ଷ ଅଭିଜ୍ଞତା ଥିବା ବ୍ୟକ୍ତି ସମ୍ପର୍କରେ କିଛି ଜାଣିବା ସବୁ ଜ୍ଞାନ ଅପେକ୍ଷା ଅଧିକ ନିଶ୍ଚୟ । ମୁଁ ତାଙ୍କ କଥାକୁ ଧ୍ୟାନ ଦେଲି ।

ଅଶୋକ ବାବୁ ଯାହା କହିଲେ ତା' ଥିଲା ସେ କଲିକତାରୁ ପୁରୀ ବର୍ଷରେ ଚାରିପାଞ୍ଚ ଥର ଆସିଥାନ୍ତି । ତାଙ୍କର ଏପରି ବାରମ୍ବାର ଯିବା ଆସିବା ଭିତରେ ଏଠାକାର କିଛି

ଲୋକଙ୍କ ସହ ତାଙ୍କର ପରିଚୟ ହୋଇଯାଇଥିଲା । ସେମାନଙ୍କ ମଧ୍ୟରୁ ଘନଶ୍ୟାମ ପଣ୍ଡା ନାମକ ଜଣେ ଭଦ୍ର ବ୍ୟକ୍ତିଙ୍କ ସହିତ ତାଙ୍କର ବେଶ୍ ଆତ୍ମୀୟତା ଗଢ଼ି ଉଠିଥିଲା । ଦୁହେଁ ପରସ୍ପରର ବନ୍ଧୁ ହୋଇଯାଇଥିଲେ ।

ଘନଶ୍ୟାମ ବାବୁଙ୍କ ସହିତ ସେ ପୁରୀର ବିଭିନ୍ନ ମନ୍ଦିର ଓ ମଠ ପ୍ରଭୃତି ବୁଲାବୁଲି କରି ସେସବୁ ସମ୍ପର୍କରେ ଅନେକ କଥା ଜାଣିବାର ସୁଯୋଗ ପାଇଛନ୍ତି । ସେମାନେ ବଙ୍ଗଳା ଭାଷାରେ ଯାହା କଥାବାର୍ତ୍ତା କରୁଥିଲେ, ତାକୁ ମୁଁ ଓଡ଼ିଆରେ ଭାଷାନ୍ତର କରି କହିପାରେ ।

ତାଙ୍କ କଥା ମଝିରେ ତରୁନ ପଚାରିଲେ, "ଆଚ୍ଛା ଦାଦା, ତୁମେ ତ ଓଡ଼ିଆ ଭାଷା ଜାଣିନ । ତାଙ୍କ ସହିତ ଏତେ କଥାବାର୍ତ୍ତା କେମିତି କରୁଥିଲ ?"

ଅଶୋକ ବାବୁ ଖୁବ୍ ଗୋଟେ ଖୋଲା ହସ ହସି କହିଲେ, "ଆରେ ସେଇତ ବିଚିତ୍ର କଥା । ପୁରୀର ଲୋକେ ସବୁ ଭାଷା ବୁଝନ୍ତି ଓ କହିପାରନ୍ତି ମଧ୍ୟ । ମୁଁ ନ କହି ପାରିଲେ ବି ଓଡ଼ିଆ ଭାଷା ବୁଝିବାରେ ମୋର କିଛି ଅସୁବିଧା ହୁଏନା । ତା'ଛଡ଼ା ଘନଶ୍ୟାମ ତ ଆମ ଅପେକ୍ଷା ବେଶି ଭଲ ବଙ୍ଗଳା କହିପାରନ୍ତି ।"

ସେ ମୂଳ କଥାରୁ ବାହାରିଯାଇଛନ୍ତି ବୋଲି ବୋଧେ ତରୁନ୍ ଅନୁଭବ କରିପାରିଲେ । ସେ ଏଥର ଖୁବ୍ ବ୍ୟଗ୍ର ହୋଇ କହିଲେ "ଦାଦା କୁହନ୍ତୁ ତ ଅଭିଜ୍ଞତାଟା କି ପ୍ରକାର ଥିଲା ?"

"ହଁ ଶୁଣ୍ । ଘନଶ୍ୟାମ ବାବୁ ମୁଁ ଭିତରେ ଯାଇ ତିନି ଠାକୁରଙ୍କ ଆଳତି ଦେଖିସାରି ଫେରିବା ବେଳେ ସେ ଏଇଠି କିଛି ସମୟ ବସିବାକୁ କୁହନ୍ତି । ଆମେ ବେଶ କିଛି ସମୟ ବସୁ । ତାପରେ ଯିଏ ଯାହା ବାଟରେ ଯାଉ । ମୁଁ ମଧ୍ୟ ଦିନେ କୌତୂହଳୀ ହୋଇ ତାଙ୍କୁ ଏଇ କଥା ପଚାରି ଥିଲି ଯେ ସିଏ କାହିଁକି ଏଇ ନିର୍ଦ୍ଦିଷ୍ଟ ଜାଗାରେ ସବୁବେଳେ ବସିବାକୁ ଚାହାନ୍ତି ।

ସେ ମୋ ଆଡ଼େ ନଚାହିଁ ସାମନାକୁ ହାତ ବଢ଼ାଇ କହିଲେ, "ଏଇଠୁ ଅନାନ୍ତୁ, ସାମନାରେ କାଶୀ ବିଶ୍ୱନାଥଙ୍କ ମନ୍ଦିର ଦିଶୁଛି । ସେଠି ଭକ୍ତମାନେ ଠିଆହୋଇ ଦୀପ ଜାଳୁଛନ୍ତି । ସେଇଠିକୁ ସେ ବେଳେବେଳେ ଆସେ । ମୁଁ ତାକୁ ଥରେ ଦି ଥର ଦେଖିଛି ଏଇ ବୃଷଭ ପଛରେ ବହୁତ ବେଳଯାଏ ଧ୍ୟାନସ୍ଥ ହୋଇ ଠିଆ ହେବାର । ତାପରେ ସେ ବିଜୁଳି ବେଗରେ ତଳକୁ ଓହ୍ଲାଇ ଯାଇ ଜନଗହଳିରେ କୁଆଡ଼େ ହଜିଯାଏ ।"

ଅଶୋକ ବାବୁ ଟିକେ ନୀରବ ରହି କହିଲେ "ସେ କାହା କଥା କହୁଛନ୍ତି ବୁଝିବା ମୋ ପକ୍ଷରେ ସମ୍ଭବ ନଥିଲା । ଏଣେ ସେତିକି ବେଳକୁ ତାଙ୍କର ଚିହ୍ନା ଲୋକ କେତେଜଣ

ପହଞ୍ଚି ପୁଣି ତାଙ୍କୁ ମନ୍ଦିର ଭିତରକୁ ଯିବା ପାଇଁ ଏକପ୍ରକାର ବାଧ୍ୟ କରିନେଇଗଲେ । ମୁଁ କଥାଟା କ'ଣ ଜାଣିପାରିଲିନି । ମୁଁ ଏ ମନ୍ଦିର ବିଷୟରେ କିଛି କିଛି ରହସ୍ୟଭରା କଥା ଶୁଣିଛି । ତାହା ପୂରା ବିଶ୍ୱାସ କରେ ବା ନକରେ ସେସବୁ କଥା ନେଇ ଅଯଥା ସଂଶୟ ପ୍ରକାଶ କରେନି । ମୁଁ ତ ଏଠାକୁ କଳାଠାକୁରଙ୍କ ଆକର୍ଷଣରେ ଆସିଥାଏ । ତେଣୁ ଅନ୍ୟକଥା ଉପରେ ସେମିତି ଗୁରୁତ୍ୱ ନଥାଏ । କିନ୍ତୁ ଘନଶ୍ୟାମ ବାବୁଙ୍କ କଥାଟା ମତେ କେମିତି ଘାରିଲା ପରି ଲାଗୁଥାଏ । ସେ ଯେ କୌଣସି ଅଲୌକିକ ସତ୍ତା ବିଷୟରେ କହୁନଥିଲେ ତା ମୁଁ ବୁଝି ପାରିଥିଲି । କାରଣ ସେ ତାକୁ ମନ୍ଦିରରେ ଧ୍ୟାନ କରିବା ପୁଣି ପାହାଚ ଓହ୍ଲାଇ ଯିବା ଅବସ୍ଥାରେ ଦେଖିଛନ୍ତି । ତେଣୁ ସେ ଆମ ପରି ଜଣେ କିଏ ହୋଇପାରେ !

ସେତେବେଳକୁ ବହୁତ ଡେରି ହେଇଯାଇଥିଲା । ଘନଶ୍ୟାମ ବାବୁ ଭିତରୁ ଫେରିନଥାନ୍ତି । ତାଙ୍କୁ ଅପେକ୍ଷା ନକରି ମୁଁ ସମୁଦ୍ର କୂଳରେ ରହୁଥିବା ଗେଷ୍ଟ ହାଉସକୁ ଫେରିଆସିଲି ।

ସେ କଣ କହୁଥିଲେ କଥାଟା କିଛି ନ ବୁଝି ସେ ବିଷୟରେ କଳ୍ପନା ଜଳ୍ପନା କରିବା ଠିକ୍ ନୁହେଁ ଭାବି ମନକୁ ବୁଝାଇ ଦେଲି ।

ପରଦିନ ସନ୍ଧ୍ୟାରେ ମୁଁ ମନ୍ଦିରକୁ ପଶିବାବେଳେ ମୋର ଆଖି ପଡ଼ିଲା ସେଇ ଜାଗାରେ । ଘନଶ୍ୟାମ ବାବୁ ବୋଧେ କେତେବେଳୁ ଆସି ସେଇଠି ବସିଛନ୍ତି । ମୁଁ ଆଉ ପାହାଚ ନଚଢ଼ି ତାଙ୍କ ପାଖରେ ଯାଇ ବସିପଡ଼ିଲି ।

ମୁଁ କିଛି କହିବା ପୂର୍ବରୁ ସେ କହିଲେ "ବନ୍ଧୁ ମୁଁ ଯେଉଁ କଥା କାଲି କହିବାକୁ ଯାଉଥିଲି ଠିକ୍ ଆରମ୍ଭ ପୂର୍ବରୁ ହିଁ ବନ୍ଦ ହୋଇଗଲା । ଆଜି ଚିତାଲାଗି ଅମାବାସ୍ୟା । ଠାକୁରଙ୍କଠାରେ ଚିତା ଲାଗି ହେବ । ଆଜି ଗୋଟେ ବିଶେଷ ଦିନ । ହୁଏତ ସେ ଆସିପାରେ ।"

ଏଥର ମୁଁ ଆଉ ମୋର କୌତୂହଳକୁ ଚାପି ନ ପାରି କହିଲି "ଆପଣ କାହା କଥା କହୁଛନ୍ତି ମୁଁ ତାର ବିନ୍ଦୁ ବିସର୍ଗ ଜାଣିପାରୁନି । ବ୍ୟାପାର ଟା କି ?'

ସେ ମତେ ହଠାତ୍ ହାତର ଇସାରାରେ ନିରବ ରହିବାକୁ କହିଲେ ଓ ଧୀରେ ଧୀରେ ଉଠି କାଶୀ ବିଶ୍ୱନାଥଙ୍କ ବୃଷଭ ପାଖକୁ ଗଲେ । ମୁଁ ମଧ୍ୟ ତାଙ୍କ ପଛେ ପଛେ ଉଠିଗଲି । ସେଠି କେତେଜଣ ଦୀପ ଜାଳୁଥାନ୍ତି, କେହି କେହି ସେଇ କ୍ଷୁଦ୍ର ମନ୍ଦିରର ଗର୍ଭଗୃହ ବାହାର ପିଣ୍ଡିରେ ମୁଣ୍ଡ ରଖି ପ୍ରଣାମ କରୁଥାନ୍ତି । ଘନଶ୍ୟାମ ବାବୁ ମତେ ଟିକେ ଠାରିଦେଲେ । ମୁଁ ଦେଖିଲି ଠିକ୍ ବୃଷଭ ପଛକୁ ଜଣେ ଯୁବକ ହାତଯୋଡ଼ି ଆଖି ବନ୍ଦ କରି ଠିଆ

ହୋଇଛି । ମୁଁ ସେ ଯୁବକକୁ ଦେଖୁଥାଏ । ଭାବୁଥାଏ ଯେ ଇଏତ ବେଶ୍ ସାଧାରଣ ମଣିଷଟିଏ ପରି ଲାଗୁଛି । ଅଥଚ ଘନଶ୍ୟାମ ବାବୁ ତାକୁ ଏମିତି ତନ୍ମୟ ହୋଇ କାହିଁକି ଚାହିଁଛନ୍ତି !!

କିଛି ସମୟ ପରେ ସେ ଯୁବକ ଜଣକ ପ୍ରଣାମ କରି ସେଇଠୁ ତଳକୁ ଓହ୍ଲାଇ ଚାଲିଗଲା । ଘନଶ୍ୟାମ ମଧ୍ୟ ପାହାଚ ଓହ୍ଲାଇବା ଆରମ୍ଭ କଲେ । ମୁଁ ସେ ପର୍ଯ୍ୟନ୍ତ ଯାଏ ମନ୍ଦିର ଭିତରକୁ ଯାଇ ଦିଅଁଙ୍କୁ ଦର୍ଶନ କରିନଥାଏ । କିନ୍ତୁ ଏଣେ ଘନଶ୍ୟାମ ବାବୁଙ୍କୁ ଛାଡ଼ିବାକୁ ମଧ୍ୟ ପ୍ରସ୍ତୁତ ନଥାଏ । ସେଇ ଗୁମୁଟି ଘରେ ପତିତପାବନଙ୍କୁ ମୁଣ୍ଡିଆଟିଏ ମାରି ମୁଁ ତାଙ୍କ ସାଙ୍ଗେ ସାଙ୍ଗେ ଚାଲିଲି ।

ବାଟରେ କିଛି କଥାବାର୍ତ୍ତା ନାହିଁ । ଦୁହେଁ ଯାଇ ପହଞ୍ଚିଲୁ ସମୁଦ୍ର କୂଳରେ । ଟିକେ ନିକାଂଚନ ଜାଗା ଦେଖି ବାଲିରେ ଯାଇ ବସିଗଲୁ ।

ଏଥର ମୋର କିଛି ପଚାରିବା ଦରକାର ହେଲାନାହିଁ । ଘନଶ୍ୟାମ ବାବୁ ଆପେ ଆପେ କହିଲେ, "ବୁଝିଲେ ଅଶୋକବାବୁ ଏଇ କିଛି ସମୟ ପୂର୍ବରୁ ଆପଣ ଯେଉଁ ଯୁବକକୁ ଦେଖିଲେ ସେ ଜଣେ ଅସାଧାରଣ ମଣିଷ । ସେ ଆକାଶ ଗମନ କରିପାରେ ।"

"ଆକାଶଗମନ ? ଇଏ ପୁଣି କି କଥା ?" ମୋର ବିସ୍ମୟର ସୀମା ରହିଲାନି । କାରଣ ଏମିତି ଶବ୍ଦଟିଏ ମୁଁ ପୂର୍ବରୁ କେବେ ଶୁଣିନଥିଲି ।

ଘନଶ୍ୟାମ ବାବୁଙ୍କ ପାଇଁ ମୋର ଆଶ୍ଚର୍ଯ୍ୟ ହେବାଟା ସ୍ୱାଭାବିକ ଥିଲା । ତେଣୁ ସେ ମତେ କଥାଟା ବୁଝାଇବାକୁ ଯାଇ କହିଲେ, "ସେ ଯୁବକ ଜଣକ ତା'ର ସ୍ଥୁଳ ଶରୀରକୁ ଛାଡ଼ି ସୂକ୍ଷ୍ମ ଶରୀରରେ ଆକାଶର ବିଭିନ୍ନ ସ୍ତରରେ ବିଚରଣ କରିପାରେ, ଭିନ୍ନ ଭିନ୍ନ ଲୋକକୁ ଯାଇପାରେ ଓ ସେଠାକାର ଘଟଣା ସମ୍ପର୍କରେ ପୂରା ବିବରଣୀ ମଧ୍ୟ ଦେଇପାରେ ।"

ମୁଁ ତାଙ୍କ କଥା ଶୁଣି ପରିହାସରେ କହିଲି "ଏ କି ଅସମ୍ଭବ କଥାହୋ ଘନଶ୍ୟାମ ବାବୁ ! ଆଜି କ'ଣ ପୁରିଆଙ୍କର ପ୍ରସିଦ୍ଧ ଭାଙ୍ଗବଟାରୁ ଟେଳାଟାଏ ପକାଇ ଦେଇଛନ୍ତି କି ?"

ସେ ସେମିତି ଗମ୍ଭୀର ହୋଇ କହିଲେ "ମୁଁ ମଧ୍ୟ ଯେବେ ଏପରି କଥା ଶୁଣିଥିଲି ମତେ ବି କଥାଟା ଗାଲୁଗଛ ପରି ମନେ ହୋଇଥିଲା । କାରଣ କଥାଟା ସତ୍ୟ ବୋଲି ବିଶ୍ୱାସ କରିବା ଆଦୌ ସହଜ ନଥିଲା । କିନ୍ତୁ କଥାଟା ଜାଣିବା ପରେ ବିଶ୍ୱାସ ହୋଇଗଲା ।"

"ଆଚ୍ଛା ତେବେ ସେ ଯୁବକଟି କିଏ ? କ'ଣ ତାର ପରିଚୟ ? ଏମିତି କି କଥା ତା' ସହିତ ଜଡ଼ିତ ଅଛି ଯେ ଆପଣ ତାକୁ ଏତେ ଗୁରୁତ୍ୱ ଦେଉଛନ୍ତି ?"

"ସେ ଯୁବକର ନାଁ ଚନ୍ଦନ । ସାଧାରଣ ବଢ଼େଇ ଘରର ପିଲା ସେ । ସାତ ଆଠ ବର୍ଷ ବୟସରୁ ସେ ବାପ ସାଙ୍ଗରେ ରାତି ପାହିଲେ କାଠକାମର ସରଞ୍ଜାମ ଧରି କାହା ନା କାହା ଘରେ କି ଦୋକାନରେ କାମ କରିବାକୁ ଯାଏ । ବାପ ସାଙ୍ଗେ କାଠରେ ରନ୍ଦା ମାରିବାଠାରୁ ଆରମ୍ଭ କରି ଶେଷରେ କାଠରୁ ବାହାରିଥିବା ଛେଲିକୁ ଅଖାରେ ପୂରାଇ ରଖିବା ପର୍ଯ୍ୟନ୍ତ କାମ କରୁଥାଏ । ପାଠ ପଢ଼ିବାର ସୁଯୋଗ ପାଇଲା ନାହିଁ । ବୟସ ବଢ଼ିବା ସାଙ୍ଗରେ ତା'ର ଦାୟିତ୍ୱ ବଢ଼ିଲା । ବାପ ସାଙ୍ଗରେ ନଯାଇ ସେ ନିଜେ କାମ କଲା । ବାପ ପୁଅ ଦୁଇଜଣଙ୍କ ମଜୁରିରେ ତାର ସାନ ଦୁଇ ଭାଇଭଉଣୀ ସ୍କୁଲରେ ପାଠ ପଢ଼ିଲେ । ଘର ବି ଭଲରେ ଚଳିଲା ।

ଚନ୍ଦନର ଜୀବନ ଗଡ଼ିଚାଲିଥିଲା ସେଇ ଗୋଟିଏ ଧାରାରେ । ତାର ସେଥିପାଇଁ କୌଣସି ଅସନ୍ତୋଷ ନଥିଲା । ତା ବୟସର ଥିଲାବାଲା ଘରର ପିଲାମାନଙ୍କର ଚାଲିଚଳଣ ସେ ଦେଖୁଥିଲା ସତ କିନ୍ତୁ ସେସବୁର ପ୍ରଭାବ ତା ଉପରେ କିଛି ନଥିଲା । ସନ୍ଧ୍ୟାରେ ଘରକୁ ଫେରି ଭାଇ ଭଉଣୀଙ୍କ ସାଙ୍ଗରେ ଟିକେ ଗପସପ ଖେଳାଖେଳି କରି ସେ ଶୀଘ୍ର ଖାଇ ଶୋଇପଡ଼େ ।

ତାଙ୍କର ଦୁଇବଖରା ଥିବା ଘରେ ସେ ଗୋଟିଏ ବଖରାରେ ଏକା ଶୋଉଥିଲା । ସାନ ଭାଇଟାକୁ ପାଖକୁ ଯେତେ ଡାକିଲେ ବି ସେ ରାତିରେ ମା' ପାଖ ଛାଡ଼ି ଆସେନି । ଚନ୍ଦନର ଅଭ୍ୟାସ ଥିଲା ଖୁବ୍ ସକାଳୁ ଉଠିବା । କାରଣ ସମୁଦ୍ର କୂଳରେ ସକାଳେ କିଛି ସମୟ ବୁଲିବା ଥିଲା ତାର ଏକମାତ୍ର ସଉକ ।

ସେଦିନ ସେ ସକାଳୁ ଉଠି ବାହାରକୁ ଗଲାନି । ଖଟଟି ଉପରେ ପଡ଼ିପଡ଼ି ଗତ ରାତିରେ ଦେଖିଥିବା ସେଇ ଅଦ୍ଭୁତ ସ୍ୱପ୍ନ କଥା ଭାବୁଥିଲା । କିଛି ମନେ ପଡୁଥିଲା କିଛି ପୂରା ଅସ୍ପଷ୍ଟ ହୋଇଯାଇଥିଲା । କିନ୍ତୁ ପୁଣି ପରଦିନ ରାତିରେ ସେଇ ସ୍ୱପ୍ନଟିର ପୁନରାବୃତ୍ତି ହେବାରୁ ସ୍ୱପ୍ନଦୃଷ୍ଟ କଥାଟି ତାର ପୂରା ମନେ ରହିଗଲା ।

ସେ ସେମିତି ଖଟଉପରେ ଶୋଇରହି ଦେଖିଥିବା ସ୍ୱପ୍ନ କଥା ଭାବୁଥାଏ । ତାର ସ୍ପଷ୍ଟ ମନେ ପଡ଼ିଗଲା ହଠାତ୍ କେମିତି ତାର ଅନ୍ଧକାର କୋଠରି ଭିତରେ ଜ୍ୟୋତି ବିନ୍ଦୁଟିଏ ପ୍ରକଟ ହେଲା । ଚାହୁଁ ଚାହୁଁ ସେ ବିନ୍ଦୁଟି ଗୋଟିଏ ଜ୍ୟୋତିର୍ମୟ ରୂପ ପରିଗ୍ରହ କଲା । ସେ ରୂପକୁ ଚିହ୍ନିବାରେ ତାର କୌଣସି ସଂଶୟ ନଥିଲା । ସେ ଥିଲା ଦେବଦେବ ମହାଦେବଙ୍କର ରୂପ । ଧ୍ୟାନସ୍ଥ ମୁଦ୍ରାରେ ଉପବେଶନ କରିଛନ୍ତି ଏକ ପ୍ରସ୍ତର ଖଣ୍ଡ ଉପରେ । ଦୁଇ ମୁଦ୍ରିତ ଚକ୍ଷୁ, ଅର୍ଦ୍ଧନିମୀଳିତ ତୃତୀୟ ନେତ୍ର । ଚତୁର୍ପାର୍ଶ୍ୱରେ ତୁଷାରାବୃତ ଗିରିଶୃଙ୍ଗ । ଜଳପ୍ରପାତଟିଏ ସେ ପାହାଡ଼ମାଳାର କୋଉ ନିଭୃତ ଖୋଲରୁ ନିଃଶବ୍ଦରେ ତଳକୁ ଲମ୍ଫ ଦେଇପଡୁଛି; ବହିଯାଉଛି ନଦୀଟିଏ ହୋଇ ।

କେତୋଟି ମୁହୂର୍ତ୍ତ ପରେ ସେ ଜ୍ୟୋତିରୂପ ବିଲୀନ ହୋଇଗଲା । କିନ୍ତୁ ତା ସହିତ ଥିବା ପରିବେଶ, ସେ ତୁଷାରାବୃତ ଗିରିମାଳା, ଝରଣା, ନଦୀ ସବୁ ମିଳେଇ ଯାଉଥିଲା ତାର ଖୋଲି ଯାଇଥିବା ଆଖି ଆଗରେ । ହାବୁକା ହାବୁକା ଥଣ୍ଡା ପବନରେ ଦେହ ତାର ଶିହରି ଉଠିଥିଲା ।

କିନ୍ତୁ ସେ ପୂରା ସଚେତନ ହୋଇଉଠିବା ବେଳେ ଦେଖିଲା ଅନ୍ଧକାରରେ ବୁଡ଼ିଥିବା ତା' ଘରର ସେ ଛୋଟିଆ କୋଠରିଟି ଭିତରେ ପଡ଼ିଥିବା ଖଟରେ ସେ ଶୋଇଛି ।

ତାକୁ ବେଶି ଆଚ୍ଛନ୍ନ କଲା ଯେଉଁ କଥାଟି ତା' ହେଲା ତା'ର ସେ କ୍ଷୁଦ୍ର କୋଠରିଟି କିପରି ହିମାଳୟର ସେସବୁ ବିଶାଳ ଗିରିମାଳାକୁ କାହିଁ ଉପରୁ ପଡୁଥିବା ଜଳପ୍ରପାତ ଓ ତଳେ କ୍ଷିପ୍ର ବେଗରେ ବହିଯାଉଥିବା ନଈକୁ ଧାରଣ କରିପାରିଲା !

ପରଦିନ ରାତିରେ ପୁଣି ସେଇ ସମାନ ସ୍ୱପ୍ନ, ସେଇ ସମାନ ଅଭିଜ୍ଞତା ।

ଏଥର ଆଉ ଚନ୍ଦନର କୋଉଥିରେ ମନ ଲାଗିଲା ନାହିଁ । ସକାଳୁ ଉଠି ସମୁଦ୍ର କୂଳରେ ଯାଇ ବୁଲିବା ବା କାଠ କାମକୁ ଠିକ୍ ସମୟରେ ବାହାରିବା ପାଇଁ ତାର ଆଉ ଇଚ୍ଛା ହେଲାନି । ବରଂ ସକାଳେ ଆଖି ଖୋଲିଯିବା ପରେ ସେ ସେମିତି ପଡ଼ିରହି ସେ ହିମାଳୟ ନଦୀ ଓ ପ୍ରପାତର ଅବସ୍ଥିତିକୁ କଳ୍ପନା କରିବାକୁ ଲାଗିଲା । ସ୍ୱପ୍ନଦୃଷ୍ଟ ଜ୍ୟୋତିରୂପ ତା'ର ସ୍ଥୁଳ ଚକ୍ଷୁ ଆଗରେ ହଠାତ୍ ପ୍ରକଟ ହୋଇଯିବାର ଆଶାରେ ଅପେକ୍ଷା କରୁଥିଲା ।

ବାଧ୍ୟବାଧକତାରେ କାମକୁ ଗଲେ ବି କାମରେ ଏକାଗ୍ରତା ରଖିପାରିଲା ନାହିଁ । କାଠ ଉପରେ ରନ୍ଦା ମାରୁଥିବା ବେଳେ ହାତ ଅଟକିଅଟକି ଗଲା । ଓଳିକର କାମ ଦୁଇଦିନ ଲଗେଇବାରୁ ମାଲିକଠାରୁ ଗାଳି ଶୁଣିବା ସହ ପୂରା ମଜୁରି ମଧ୍ୟ ପାଇଲା ନାହିଁ । ବାପା ମା ବ୍ୟସ୍ତ ହେଲେ । ତାର ମାନସିକ ଅବସ୍ଥା ଲକ୍ଷ୍ୟକରି ସେମାନେ ନାନା ଆଶଙ୍କା କରିବାକୁ ଲାଗିଲେ ।

ଚନ୍ଦନ ମଧ୍ୟ ମହା ଚିନ୍ତାରେ ପଡ଼ିଗଲା । ସେ ଦେଖିଥିବା ସ୍ୱପ୍ନକୁ ସ୍ୱପ୍ନ ବୋଲି ଭାବି କାହିଁକି ଭୁଲିଯାଉନି ବୋଲି ବ୍ୟସ୍ତ ହେଲା । ଖଟି ଖାଉଥିବା ଲୋକ ପାଇଁ ସ୍ୱପ୍ନକୁ ନେଇ ଚିନ୍ତା କରିବାର ଅବସର ବା କାହିଁ !

ଏ ଭିତରେ ବିତିଯାଇଥିଲା ଦୁଇମାସ । ଚନ୍ଦନ ଅନେକଟା ପ୍ରକୃତିସ୍ଥ ହୋଇଆସିଲା । ଜୀବନ ପୁଣି ଚାଲିଲା ଯଥାରୀତି ।

ସେଦିନ ସେ ମାଧବାନନ୍ଦ ମଠରେ କିଛି କାଠକାମ କରି ସନ୍ଧ୍ୟାରେ ଫେରୁଥାଏ । ପାଖରେ ଶ୍ରୀମନ୍ଦିର । ଠାକୁରଙ୍କୁ ଟିକେ ଦର୍ଶନ କରିଯିବାକୁ ତାର ଇଚ୍ଛା ହେଲା । ତାର ବ୍ୟାଗରେ ପୂରାଇ ଧରିଥିବା ବଟାଳି, ଭଅଁର କରତ ପ୍ରଭୃତି କାଠ କାମର ସରଂଜାମକୁ ପାଖ ଦୋକାନରେ ରଖି ଗୋଡ଼ ହାତ ଧୋଇ ମନ୍ଦିର ଭିତରକୁ ପଶିଲା ।

ବାମ ପଟରେ କାଶୀ ବିଶ୍ୱନାଥଙ୍କର ଛୋଟ ମନ୍ଦିରଟି । ସେ ବୃଷଭ ପଛରେ ହାତଯୋଡ ଠିଆ ହୋଇ କିଛି ସମୟ ପ୍ରାର୍ଥନା କରି ବୁଲିପଡ଼ିବା ବେଳକୁ ଦେଖିଲା ତାର ଅତି ନିକଟରେ ଜଣେ ସନ୍ନ୍ୟାସୀ ଠିଆ ହୋଇଛନ୍ତି । ସାଧାରଣ ଉଚ୍ଚତା, ଶରୀରରେ ଗାଢ଼ ରକ୍ତବର୍ଣ୍ଣର ଢ଼ିଲା ଆଲଖାଲା, ଗଳାରେ ରୁଦ୍ରାକ୍ଷର ମାଳା, ମୁଣ୍ଡରୁ ଓହଳି ଥିଲା ଦୀର୍ଘ ଜଟା । ତେଜପୂର୍ଣ୍ଣ ଚେହେରା କିନ୍ତୁ ଆଖି ଦୁଇଟି ଖୁବ୍ ପ୍ରଶାନ୍ତ କୋମଳ ମନେ ହେଉଥିଲା ବୃଷଭ ପାଖରେ ଜଳୁଥିବା ଦୀପସମୂହର ଆଲୋକ ତାଙ୍କୁ ଆହୁରି ପ୍ରଭାବନ୍ତ କରୁଥିଲା ।

ଅବଶ୍ୟ ଚନ୍ଦନର ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । କାରଣ ମନ୍ଦିର ପରିସରରେ ଏପରି ସନ୍ନ୍ୟାସୀ ମାନଙ୍କର ଆତଯାତ ଥିଲା ଏକ ସାଧାରଣ ଦୃଶ୍ୟ ।

କିନ୍ତୁ ସେ ସାଧାରଣ ଦୃଶ୍ୟଟି ଯେ ତା' ପାଇଁ ଏପରି ଅସାଧାରଣ ହୋଇଉଠିବ ସେଦିନ ସେ କଳ୍ପନା .କରିପାରିନଥିଲା ।

ସେଦିନ ରାତି ପାହାନ୍ତା ବେଳେ ସେ ଦେଖୁଛି ତାର ସେ ଛୋଟିଆ ଘରର ଚାରିପାଖରେ ଘେରା ଯାଇଥିବା ଝାଟିଲଟାର ଘେରା ବାଡ଼ ଭିତରେ ଗୋଟେ କଡ଼କୁ ଥିବା ଛୋଟ ଗୋଟେ ବାଲିଗଦା ଉପରେ ଠିଆ ହୋଇଛନ୍ତି ସେ ସନ୍ନ୍ୟାସୀ ଜଣକ । ହାତରେ ଧରିଥିବା ତ୍ରିଶୂଳଟିକୁ ବାଲିରେ ଉପର ମୁହଁ କରି ପୋତି ଦେଇଛନ୍ତି । ସ୍ୱପ୍ନରେ ବି ଚନ୍ଦନ ଭଲରେ ଚିହ୍ନି ପାରିଥିଲା ମନ୍ଦିରରେ ସନ୍ଧ୍ୟାବେଳେ ଦେଖିଥିବା ସନ୍ନ୍ୟାସୀଙ୍କୁ ।

ନିଦ ତାର ଭାଙ୍ଗିଯାଇଥିଲା । ସ୍ୱପ୍ନଦୃଷ୍ଟ ସନ୍ନ୍ୟାସୀଙ୍କ କଥା ଭାବୁ ଭାବୁ ପୁଣି ସେ କେତେବେଳେ ଶୋଇପଡ଼ିଥିଲା । କିନ୍ତୁ ସକାଳେ ନିଦରୁ ଉଠିବା ପରେ ତାର ରାତିରେ ଦେଖିଥିବା ସ୍ୱପ୍ନ କଥା ମନେ ପଡ଼ିଯାଇଥିଲା। ସେ ଧାଇଁ ଯାଇଥିଲା ବାହାରେ ଗଦା ହୋଇଥିବା ସେ ବାଲିକୁଦ ପାଖକୁ ।

କିନ୍ତୁ ଏ କ'ଣ ସେ ଦେଖୁଛି ! ଗତକାଲି ସୁଦ୍ଧା ସେଠି କିଛି ନଥିବାବେଳେ ଆଜି ଆଶ୍ଚର୍ଯ୍ୟଜନକ ଭାବରେ ସେଇ ଜାଗାରେ ମୁଣ୍ଡ ଟେକି ବେଶ୍ କିଛି ପତ୍ରଥିବା ବେଲଗଛଟିଏ ଠିଆହୋଇଛି । ସେ ପାଟିକରି ଡାକ ପକାଇଥିଲା ତା ବାପା ମାଙ୍କୁ । ସେମାନେ ମଧ୍ୟ ପୂର୍ବରୁ ଗଛଟିକୁ ସେଠି ଦେଖିନଥିଲେ । ତେବେ ହଠାତ୍ ଗଛକୁ ଦେଖି ଆଶ୍ଚର୍ଯ୍ୟ ହେବା ଅପେକ୍ଷା ସେମାନେ ବେଶି ଆଶଙ୍କା ପ୍ରକାଶ କଲେ ଯେ ଗଛଟା ବୁଲା ଗାଈ ଗୋରୁ ଛେଳିଙ୍କ ପାଟିରେ ନିଶ୍ଚୟ ଚାଲିଯିବ । ତେବେ ଗଛଟିର ରକ୍ଷଣାବେକ୍ଷଣ ନେଇ ସେମାନେ ମୁଣ୍ଡ ଖେଳାଇଲେ ନାହିଁ । ନିଜ କାମରେ ଚାଲିଗଲେ ।

କିନ୍ତୁ ଚନ୍ଦନ ତାକୁ ଖାଲି ବେଲ ଗଛଟିଏ ବୋଲି ଭାବୁନଥିଲା । ତାର ସ୍ୱପ୍ନଦୃଷ୍ଟ ତ୍ରିଶୂଳ ଓ ସନ୍ନ୍ୟାସୀଙ୍କ ରୂପ ତା' ଆଖି ଆଗରେ ସ୍ଥିର ହୋଇ ରହିଥିଲା । କିନ୍ତୁ ଗଛକୁ ବାଡ଼ ଦେଇ

ସୁରକ୍ଷିତ କରିବାର କିଛି ବ୍ୟବସ୍ଥା ସେ କରିପାରିଲା ନାହିଁ । ଶେଷରେ ସେ ଭାବିଲା ଠିକ୍ ଅଛି ଯେଉଁ ସନ୍ନ୍ୟାସୀ ଏଠି ତାକୁ ପୋତିଛନ୍ତି ତାଙ୍କ ଦାୟିତ୍ୱ ତାକୁ ରକ୍ଷା କରିବା ।

ପୁଣି ଏମିତିରେ ବିତିଗଲା ବେଶ୍ କିଛିଦିନ । ସେ ଆଉ ସ୍ୱପ୍ନ ଦେଖୁନଥିଲା କିମ୍ବା ଘରର ବାଡ଼ ପାଖରେ ଖୁବ୍ ବେଗରେ ଅକ୍ଷତ ଅବସ୍ଥାରେ ବଢୁଥିବା ବେଲ ଗଛକୁ ଦେଖି ଅନ୍ୟମନସ୍କ ହେଉନଥିଲା । ସବୁ ପୁଣି ସ୍ୱାଭାବିକ ହୋଇଗଲା, ସବୁ ପୁଣି ସାଧାରଣ ମନେହେଲା ।

ତଥାପି ତାର ପିଲାଦିନରୁ ଅଭ୍ୟାସ ସମୟ ପାଇଲେ ସେ ଯାଇ କିଛିକିଛି ସମୟ ସମୁଦ୍ର କୂଳର ଅପେକ୍ଷାକୃତ କମ୍ କୋଳାହଳ ଥିବା ସ୍ଥାନରେ ବସିଥାଏ । ସେଦିନ ସନ୍ଧ୍ୟାବେଳେ ସେ ସମୁଦ୍ରକୁ ଚାହିଁ ବସିଥାଏ । ଆଖପାଖରେ କିଛି ଚଳପ୍ରଚଳ କରୁଥିବା ଲୋକେ ଚାଲିଗଲେଣି ।

ଏଥର ସେ ମଧ୍ୟ ଯିବା ପାଇଁ ଉଠୁଛି, କାହା ସହିତ ଧକ୍କା ଖାଇ ଚମକି ପଡ଼ିଲା । କିନ୍ତୁ ଯାହାଙ୍କ ସାଙ୍ଗରେ ସେ ଧକ୍କା ଖାଇଲା ସେ ଅନ୍ୟ କେହି ନଥିଲେ, ଥିଲେ ସେହି ସନ୍ନ୍ୟାସୀ । ଥରେ ମନ୍ଦିରର ବାଇଶି ପାହାଚରେ ଓ ଥରେ ସ୍ୱପ୍ନରେ ଭେଟି ସାରିଥିବା ସନ୍ନ୍ୟାସୀଙ୍କୁ ଚିହ୍ନିବାରେ ତା'ର କୌଣସି ଅସୁବିଧା ହେଲାନି ।

ଚନ୍ଦନ ତାଙ୍କୁ ଆଶ୍ଚର୍ଯ୍ୟ ହୋଇ ଚାହୁଁଥିବା ବେଳେ ସେ ତାକୁ ଚାହିଁ ଏକ ରହସ୍ୟଭରା ହସ ହସି ଖୁବ୍ ମାନ୍ୟରେ କହିଲେ, "କଣ ଆପଣ ସବୁ ଭୁଲିଯାଇଛନ୍ତି । ସ୍ୱପ୍ନରେ ସ୍ୱୟଂ ଶିବଙ୍କୁ ତିନି ତିନି ଥର ଦର୍ଶନ କଲେ, ମୋ ସହିତ ପୁଣି ଦୁଇଥର ଦେଖାହେଲାଣି ତଥାପି କିଛି ମନେ ପକାଇ ପାରୁନାହାନ୍ତି ?"

ଚନ୍ଦନ ତାଙ୍କୁ ଆବାକାବା ହୋଇ ଦେଖୁଥାଏ । ତାଙ୍କ କଥାର ରହସ୍ୟ କଣ ସେ ଆଦୌ ବୁଝିପାରୁନଥାଏ । ଜଣେ ସନ୍ନ୍ୟାସୀ ତା'ପରି ଗୋଟେ ସାଧାରଣ ଯୁବକକୁ ଏପରି ମାନ୍ୟରେ ସଂବୋଧନ କରି କହୁଥିବା ତା' କାନକୁ ଅଡୁଆ ଶୁଣାଯାଉଥିଲା । ସେ ଅଦ୍ଭୁତ ବ୍ୟକ୍ତିଙ୍କର ଉପସ୍ଥିତି ତା ମୁଣ୍ଡକୁ କେମିତି ଭାରି କରିଦେବା ପରି ଲାଗୁଥାଏ । ଦେହଟା ବି ରହି ରହି ଥରି ଉଠୁଥାଏ । ପୁଣି ସେ ଜାଗା ଛାଡ଼ି କୁଆଡ଼େ ପଳାଇଯିବାର ସାମର୍ଥ୍ୟ ବି ସେ ହରାଇ ବସିଥିଲା । ପାଦ ଦିଟା ଯେମିତି ଆପେ ଆପେ ବାଲିରେ ଗାଡ଼ ଖୋଳିଖୋଳି ଭିତରକୁ ପଶିପଶି ଯାଉଥାନ୍ତି । ସେ ପାଟି ଖୋଲି କିଛି କହିବାର ଚେଷ୍ଟା କରୁଥାଏ, ଶବ୍ଦଟିଏ ଏଣେ ବାହାରି ପାରୁନଥାଏ ।

ସନ୍ନ୍ୟାସୀ ଜଣକ ତାକୁ ଏଥର ଆଦେଶ ଦେବାପରି କହିଲେ "ନିର୍ମଳାନନ୍ଦଜୀ ଆପଣ ଯୋଗମାର୍ଗରେ ଏତେ ଅଗ୍ରସର ହୋଇଥିଲେ, ଅଥଚ ଏତେ ଅଚେତନ ଭାବରେ ଏ

ସଂସାରରେ ବଞ୍ଚୁଛନ୍ତି କିପରି ? ଦେଖୁଛି ଆପଣଙ୍କର ସବୁକିଛି ବିସ୍ମରଣ ଘଟିଛି । ଆପଣଙ୍କୁ ଜଣାଇବାକୁ ପଡ଼ିବ ।"

ଚନ୍ଦନ ହଠାତ୍ କହିପକାଇଲା, "ଆଜ୍ଞା ମହାରାଜ ଆପଣ ନିଶ୍ଚୟ ଭୁଲରେ ଆଉ କାହା କଥା କହୁଛନ୍ତି । ମୁଁ ଗୋଟେ ସାଧାରଣ ଗରିବ ବଢ଼େଇ ପିଲା । ସକାଳୁ ଉଠିଲେ କରତ ବଟାଳି ଧରି କାଠ କାମକୁ ଯାଏ । ଯେଉଁ ଦୁଇ ପଇସା ଆଣେ ମା'କୁ ଦିଏ ଘର ଚଳାଇବା ପାଇଁ । ମୋ ଘର ସେଇ ଯେ ଦେଖାଯାଉଛି ସମୁଦ୍ରକୂଳ ପାଖ ଅରଖସାହିରେ ।"

ଏଥର ଖୁବ୍ ଗମ୍ଭୀର ସ୍ୱରରେ ସନ୍ନ୍ୟାସୀ କହିଲେ, "ମୁଁ ଜାଣେ । ଆପଣଙ୍କ ଘର ବାଡ଼ ପାଖରେ ବଢୁଥିବା ସେ ବେଲଗଛକୁ ଦେଖିବି ଆପଣ ସଚେତନ ହେଉନାହାନ୍ତି !"

କିଛି ସମୟ ନୀରବ ରହି ସେ ଆକାଶ ଆଡ଼େ ଚାହିଁ କହିଲେ, "ବଡ଼ ଆଶ୍ଚର୍ଯ୍ୟ ଲୀଳା ପ୍ରଭୁ ଆପଣଙ୍କର । ଯୋଗ ଜୀବନରୁ ସାମୟିକ ଭାବରେ ଓହରି ଯାଇଥିଲେ ବି ଏତେ ବଡ଼ ସନ୍ନ୍ୟାସୀ ଜଣେ, ସଂସାରରେ ଜନ୍ମ ହୋଇ ଏପରି ଅଜ୍ଞାନ ହେବ କିପରି ! ଏ ମାଟିର ମାୟା କଣ ଏତେ ଟାଣ ଯେ ସ୍ୱର୍ଗର ଆକାଂକ୍ଷା ଉପରେ ପରଦା ଢ଼ାଙ୍କି ଦେଇପାରିବ ! ନିର୍ମଳାନନ୍ଦଙ୍କର ଏପରି ଅଜ୍ଞାନତା ଦେଖିବାବେଳେ ମତେ ତ ଭୟ ଲାଗୁଛି । ଏ ମାଟିର ମନ୍ତ୍ରଗୁଣ ବହୁତ ଶକ୍ତିଶାଳୀ ନିଶ୍ଚୟ, ଯାହାକି ଖୁବ୍ ସହଜରେ ଜଣେ ମୁକ୍ତ ପୁରୁଷର ହାତଗୋଡ଼ରେ ବେଡି ଛନ୍ଦିଦେଇ ପାରେ । ପୁଣି ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା ବନ୍ଧନରେ ପଡ଼ିଥିବା ବ୍ୟକ୍ତି ଜଣକ ମଧ୍ୟ ତା ହାତଗୋଡ଼ରେ ପଡ଼ିଥିବା ବେଡ଼ିକୁ ଫୁଲମାଳ ବୋଲି ଭାବୁଥାଏ ।

ବେଳେବେଳେ ହୁଏତ ସେ କିଛିଟା ଅସ୍ଥିରତା ଅନୁଭବ କରୁଥାଇପାରେ, ତାପରେ ପୁଣି ସେଇ ଜୀବନ ତାକୁ ବେଶ୍ ସୁଖକର ମନେହୁଏ । ତା' ନହେଲେ କ'ଣ ଯୋଗୀ ନିର୍ମଳାନନ୍ଦ ଜଣେ ବଢ଼େଇର ବଟାଳି, କରତ ଓ ଭଅଁର ଉପରେ ଏମିତି ଏକାଗ୍ର ହୋଇ ରହିଥାନ୍ତେ ! ବାରମ୍ବାର ତାଙ୍କୁ କିଛି ପ୍ରତ୍ୟକ୍ଷ ଅଭିଜ୍ଞତା ଦେବାପରେ ବି ତାଙ୍କର କିଛି କଥା ସ୍ମରଣରେ ଆସୁନି ।"

ସନ୍ନ୍ୟାସୀଙ୍କ କଥା ଚନ୍ଦନକୁ ପ୍ରଳାପ ପରି ମନେ ହେଉଥାଏ । କିନ୍ତୁ ତା' ନିଜ ଭିତରୁ କୋଉଠୁ ଗୋଟେ ବାହାରୁଥିବା ଚିକ୍ରାର ତାର ପାଟିଦେଇ ବାହାରି ନପାରି ତାକୁ ଆକ୍ରାମାକ୍ରା କରିପକାଉଥାଏ । ସେ କହିବାକୁ ଚାହୁଁଥାଏ "ମୁଁ ଚନ୍ଦନ । ମୁକୁନ୍ଦା ବଢ଼େଇର ପୁଅ । କାମ କରି ପେଟ ପୋଷେ । ଘର ଚଳାଏ । ମୁଁ ଆଉ କିଛି ଜାଣିନି ମହାରାଜ । ମତେ ଆପଣ ଭୁଲ ଭାବୁଛନ୍ତି ।"

ଏଥର ସନ୍ନ୍ୟାସୀ ଚନ୍ଦନର କଥା ଶୁଣିପାରିବା ପରି କହିଲେ "ମୁଁ ବୁଝୁଛି ଆପଣଙ୍କର ସମସ୍ୟା । ଆପଣ ଏଇଠି ଏବେ ଚକାସନରେ ବସନ୍ତୁ ।"

ଚନ୍ଦନ ସମ୍ମୋହିତ ହେବାପରି ବାଲିରେ ସେ ଠିଆ ହୋଇଥିବା ଜାଗାରେ ହିଁ ଚକାସନରେ ବସିପଡ଼ିଲା । ତାପରେ ସେ ସନ୍ନ୍ୟାସୀ ନଇଁପଡ଼ି ଚନ୍ଦନର ଦୁଇ ଭ୍ରୂର ମଧ୍ୟସ୍ଥ ସ୍ଥାନକୁ ତାଙ୍କର ଡାହାଣ ହାତର ବୃଦ୍ଧାଙ୍ଗୁଳିରେ କିଛି ସମୟ ଚାପି ଧରିଲେ ।

କିଛି ମୁହୂର୍ତ୍ତ ପରେ ଚନ୍ଦନର ମନେହେଲା ସେ ଉପରକୁ ଉଠି ଉଠି ଯାଉଛି । ତଳକୁ ଚାହିଁବା ବେଳେ ସେ ସ୍ପଷ୍ଟ ରୂପେ ଦେଖିପାରୁଥିଲା ବେଳାଭୂମିର ସେଇ ବାଲୁକା ପିଣ୍ଡ ଉପରେ ତାର ଶରୀର ଚକାସନରେ ସେମିତି ସ୍ଥିର ହୋଇ ରହିଛି ।

ଏଥର ସେ ତଳୁ ମୁହଁ ଫେରାଇ ନେଲା । ସ୍ୱଚ୍ଛନ୍ଦରେ ଗତି କରି ଚାଲିଲା ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ।

ଏଥର ସେ ଯେଉଁ ସ୍ଥାନରେ ପହଞ୍ଚିଲା, ସେ ସ୍ଥାନଟି ହିମାଳୟର କେଉଁ ଏକ ଗଭୀରତମ ଅଞ୍ଚଳ ପରି ତାର ମନେ ହେଲା । ଧୀରେ ଧୀରେ ସେଠାରେ ଗୋଟିଏ ସୁନ୍ଦର ମନ୍ଦିର ତାର ଦୃଷ୍ଟିଗୋଚର ହେଲା । ଚାରି ଦିଗରୁ ନାନା ବର୍ଣ୍ଣର ପୁଷ୍ପଭାରରେ ବିରାଟ ବିରାଟ ବନସ୍ପତି ମନ୍ଦିର ଉପରକୁ ଅବନତ ହୋଇ ଆସିଥିଲେ । ପାଖରେ ବହି ଯାଉଥିଲା ଏକ ନଦୀ । ପରିବେଶ ଶାନ୍ତ, ନିର୍ଜନ ।

ସେ ଦୃଶ୍ୟ ଦେଖିବା ପରେ ଚନ୍ଦନର ମନେ ହୋଇଥିଲା ଯେ କେବେ ଦିନେ ସେ ଏଠି ଥିଲା । ସେ ଦେଖୁଥିବା ନଦୀ ପାହାଡ଼ ବୃକ୍ଷଲତା ସବୁ ତାକୁ ଚିହ୍ନା ଚିହ୍ନା ଲାଗୁଥିଲା । ସେଠି ସେ ଦେଖିଲା ପୂର୍ବରୁ ଦେଖିଥିବା ସେଇ ସନ୍ନ୍ୟାସୀଙ୍କୁ । ସେ ନଦୀ ଜଳରୁ ବାହାରି ମନ୍ଦିର ଦିଗରେ ଯାଉଥିଲେ ।

ଚନ୍ଦନ ତାଙ୍କ ପଛେ ପଛେ ଯାଇ ମନ୍ଦିର ଭିତରେ ପ୍ରବେଶ କଲା । ସେଠି ଦେଖିଲା ଏକ ଅଦ୍ଭୁତ ଦୃଶ୍ୟ । ସେ ବାରବାର ସ୍ୱପ୍ନରେ ଦେଖିଥିବା ମହାଦେବଙ୍କୁ ସେଠି ଧ୍ୟାନମୁଦ୍ରାରେ ଉପବେଶନ କରିଥିବାର ଦେଖିଲା । ସେଇ ମୁଦ୍ରିତ ନେତ୍ର, ଅର୍ଦ୍ଧନିମୀଳିତ ତୃତୀୟ ଚକ୍ଷୁ । ସନ୍ନ୍ୟାସୀ ଜଣକ ସେଇ ଧ୍ୟାନମୂର୍ତ୍ତି ସମ୍ମୁଖରେ ହାତଯୋଡ଼ି ଠିଆହେଲେ କିଛି ସମୟ । ତାପରେ ନିଜର ଦୁଇ ହାତକୁ ମୃଦୁ ଘର୍ଷଣ କଲେ । ହଠାତ୍ ତା' ଭିତରେ ଜଳିଉଠିଲା ସହସ୍ର ଦୀପାଳି । ତାର ମନେହୋଇଥିଲା କେତେକ ଦେବପୁରୁଷ ଓ ନାରୀ ଆରତି କରିବା ପରି ହାତରେ ବୁଲାଉଛନ୍ତି ସେ ଦୀପ ।

ଅପୂର୍ବ ସୁଗନ୍ଧିରେ ଭରିଯାଇଛି ସେ ପରିବେଶ । ସ୍ତମ୍ଭୀଭୂତ ହୋଇ ବୃଷଭ ପଛରେ ଠିଆହୋଇଥିଲା ଚନ୍ଦନ ।

ତା'ର ସେ ଅଭିଭୂତ ଅବସ୍ଥା କଟିଯିବା ପରେ ଚନ୍ଦନ କେତେବେଳେ ପୁଣି ଫେର ଆସିଥିଲା ତାର ଶରୀର ଭିତରକୁ । ବାଲିଶଯ୍ୟାରୁ ଉଠିପଡ଼ି ସେ ଏଥର ଚାଲିଲା ତା' ଘର ଦିଗରେ । ଘରେ ପହଞ୍ଚି ଧୂଆଧୋଇ ହୋଇ ଭୋଜନ କଲା । ବାପା ମା ଭାଇ ଭଉଣୀଙ୍କ ସାଙ୍ଗରେ ଗପସପ କରି ଶୋଇବାକୁ ଗଲା । ପରଦିନ ପୁଣି ଯଥାରୀତି ତାର ସରଂଜାମ ଧରି କାମକୁ ଗଲା ।

କିନ୍ତୁ ପୂର୍ବ ଦିନର ଚନ୍ଦନ ଓ ଆଜିର ଚନ୍ଦନ ଭିତରେ ଆସିଯାଇଥିଲା ବିପୁଳ ପରିବର୍ତ୍ତନ । ଏକ ଅବର୍ଣ୍ଣନୀୟ ଆନନ୍ଦ ତାର ସମଗ୍ର ସତ୍ତା ମଧ୍ୟରେ ସଂଚାରିତ ହୋଇଯାଇଥିଲା । 'ମୁଁ' 'ମୁଁ' ବୋଲି ବାରମ୍ବାର କହି ନିଜର ଅସ୍ତିତ୍ୱକୁ ଜାହିର କରୁଥିବା ସତ୍ତାଟି ପୂରା ନୀରବ ହୋଇଯାଇଥିଲା ।

ଏବେ ସେ ତାର ଚତୁପାର୍ଶ୍ୱରେ ଦେଖୁଥିବା ମଣିଷ ବୃକ୍ଷଲତା, ପଶୁପକ୍ଷୀ, କୀଟପତଙ୍ଗ ସହିତ ଏକାତ୍ମ ହୋଇଯିବାର ଅନୁଭବ ପାଉଥିଲା । ବସ୍ତୁସକଳ ଭିତରେ ନିଜକୁ ପୁଣି ନିଜ ଭିତରେ ସବୁକିଛିକୁ ଆବିଷ୍କାର କରିପାରିବାର ଉଲ୍ଲାସରେ ସେ ତଲ୍ଲୀନ ହୋଇ ଯାଉଥିଲା ।

ଏଥର ସେ ସ୍ୱଚ୍ଛନ୍ଦରେ, ସନ୍ନ୍ୟାସୀଙ୍କର ବିନା ସହାୟତାରେ ନିଜ ଶରୀରରୁ ବାହାରି ଆକାଶର ବିବିଧ ସ୍ତରରେ ଭ୍ରମଣ କରିପାରିଲା । ପୁରାଣ ବର୍ଣ୍ଣିତ ଗନ୍ଧର୍ବ, କିନ୍ନର, ଯକ୍ଷ ଓ ନାଗଲୋକ ପ୍ରଭୃତିରେ ସହଜରେ ପ୍ରବେଶ, ବିଚରଣ ଓ ସେଠୁ ପ୍ରସ୍ଥାନ କରିପାରିଲା । ତାହା ଏତେ ନିଃଶବ୍ଦରେ ଘଟୁଥିଲା ଯେ ତା' ପରିବାରର ଲୋକେ ସେଇଠି ଥାଇ ବି କିଛି ଟେର ପାଉନଥିଲେ ।"

ଅଶୋକ ବାବୁ ଏତେ କଥା ଏକା ନିଃଶ୍ୱାସରେ କହିପକାଇଥିବାରୁ ଟିକେ ବିରାମ ନେଲେ । କିନ୍ତୁ ଏପର୍ଯ୍ୟନ୍ତ ତଟସ୍ଥ ଅବସ୍ଥାରେ ଥିବା ତରୁନ ମୁଖର ହୋଇଉଠି କହିଲେ, "ଅଶୋକ'ଦା ଏବେ ତ ସେ ଚନ୍ଦନ ଜଣେ ବଡ଼ ଯୋଗୀ ହୋଇଥିବେ । ଦୀର୍ଘକାଳ ଧରି ପ୍ରତ୍ୟହ ଯୋଗାଭ୍ୟାସ କରୁଥିବେ, ଧ୍ୟାନ ପ୍ରାର୍ଥନା କରୁଥିବେ ! ଏସବୁ ନକଲେ କଣ ଜଣେ ଏସବୁ ଅଭିଜ୍ଞତାକୁ ଧରି ରଖିପାରିବ !"

"ନାଁ ଗୋ ନାଁ । ସେ କିଛି ଯୋଗାଭ୍ୟାସ, ଧ୍ୟାନ ପ୍ରାଣାୟାମ କରେନାହିଁ । ଦିନେ ସେ ସନ୍ନ୍ୟାସୀ ପୁଣି ଦେଖାଦେଇ ଚନ୍ଦନକୁ କହିଲେ, ଆପଣ, ବିଗତ କେତେଜନ୍ମ ଧରି ବହୁ କଠିନ ଯୋଗସାଧନା କରିଛନ୍ତି । ପ୍ରଭୁ ଚାହାନ୍ତି ଏବେ ଆପଣ କେବଳ ହେବେ ଜଣେ ଦିବ୍ୟ ପରିବ୍ରାଜକ । ସୃଷ୍ଟି ଭିତରେ ସ୍ରଷ୍ଟାର ମହିମାକୁ ଅନୁଭବ କରିବେ । ଏଇ

ପାର୍ଥିବ ସତ୍ତାକୁ ଧାରଣ କରିଥିବା ବେଳେ ହିଁ ଆପଣ ମହାଜାଗତିକ ସତ୍ତା ସହିତ ଏକାତ୍ମ ହୋଇଯିବାର ଉପଲବ୍ଧି କରିବେ । ଆପଣଙ୍କ ଚେତନାରେ ଏବେ ବି ଅବଶେଷ ଥିବା ଜଡ଼ ଓ ଚିନ୍ମୟର ଭେଦଜ୍ଞାନ ଦୂର ହୋଇଯିବ । ଏ ଜନ୍ମରେ ଏହା ହିଁ ଆପଣଙ୍କର ସାଧନା, ଏହା ହିଁ ସିଦ୍ଧି ।"

ତରୁନ୍ ଟିକେ ସଂଶୟ ପ୍ରକାଶ କରି କହିଲେ "ଆଚ୍ଛା ଦାଦା, ଯେତେବେଳେ ଚନ୍ଦନର ଘର ଲେକେ ତା ସହିତ ସବୁ ସମୟରେ ରହିବି ଏକଥାର ବିନ୍ଦୁ ବିସର୍ଗ ଜାଣି ପାରିନାହାନ୍ତି ତୁମର ସେ ଘନଶ୍ୟାମ ପଣ୍ଡା ଏତେ କଥା ଜାଣିଲେ କିପରି: ଚନ୍ଦନ କ'ଣ ତାଙ୍କୁ ଏସବୁ କଥା କହିଥିଲେ ନା ସେ ଜଣେ ସର୍ବଜ୍ଞ ?"

ଅଶୋକ ବାବୁ ଖୁବ୍ ଗମ୍ଭୀର ହୋଇ ଉତ୍ତର ଦେଲେ, ''ଘନଶ୍ୟାମ ପଣ୍ଡା ଏସବୁ କଥା କିପରି ଜାଣିଲେ ମୁଁ କହିପାରିବିନି । କିନ୍ତୁ ଗୋଟିଏ କଥା ଭଲରେ ଜାଣିଛି, ସେ ଜଣେ ସିଦ୍ଧପୁରୁଷ । ସେ ଅନେକ କଥା ତାଙ୍କ ନିଜ ଅଭିଜ୍ଞତାରୁ କହିଛନ୍ତି । ପୁଣି କେତେ କଥା ସେ ତାଙ୍କର ନିର୍ଦ୍ଦିଷ୍ଟ ଜାଣିବା ସୂତ୍ରରୁ ମୋ ଆଗରେ ପ୍ରକାଶ କରିଛନ୍ତି ।

ଏଇ ଯେ ତପନ, ତୁମେ କହିଲନା ଘରଲୋକେ କପରି ପାଖରେ ଥାଇ ଜାଣିପାରୁନାହାନ୍ତି ବୋଲି ? ତାର ଉତ୍ତର ହେଲା ସେମାନେ ଯେତିକି କଥାରେ ସଂପୃକ୍ତ ସେତିକି ଜାଣିଲେ ସନ୍ତୁଷ୍ଟ ହୁଅନ୍ତି । ପୁଅ କଣ କରୁଛି, କେତେ ପଇସା ପାଉଛି ଜାଣିଲେ କଥା ସରିଲା । କିନ୍ତୁ ସେ ଅନ୍ୟ ସମୟରେ କଣ ଭାବୁଛି, କୋଉ କଥାରେ କଷ୍ଟ ପାଉଛି, କୋଉ ମାନସିକ ସମସ୍ୟାରେ ଘାଣ୍ଟି ହେଉଛି ସେସବୁ ଜାଣିବାର ଆଗ୍ରହ କେତେଜଣ ମା ବାପାଙ୍କ ପାଖରେ ଥାଏ ? ସେଇମିତି ଝିଅଟି ସମସ୍ତଙ୍କୁ ଲୁଚାଇ ଲୁହରେ କିପରି ତକିଆ ଭିଜାଉଛି କି ସମୟେ ସମୟେ ତା ଓଠ ଉପରେ ସ୍ମିତ ହାସ ଟିକେ ଉକୁଟି ଉଠି ପୁଣି କୁଆଡ଼େ ମିଳେଇ ଯାଉଛି ସେ ଖବର କେତେ ଘର ଲୋକ ରଖନ୍ତି ?

ପୁଅ ଝିଅତ ଦୂରର କଥା ଯୋଉଠି ଦୁଇଜଣ ନାରୀପୁରୁଷ ଏକା ବିଛଣାରେ ପଚାଶ ଷାଠିଏ ବର୍ଷ କଟାନ୍ତି ସେମାନେ ବି କ'ଣ କେହି କାହାର ମନକଥା ବୁଝନ୍ତି ! ଏଇ ଦେଖନା ତୁମର ବୌଦୀକୁ ମୁଁ ଯେବେ ଏଠାକୁ ଆସେ ତାକୁ ମୋ ସାଙ୍ଗରେ ଆସି ବୁଲିଯିବାକୁ କହେ । ସେ କହେ ଥରେ ତ ଯାଇଥିଲା ପୁରୀ ସବୁ ଦେଖିଛି, ଦଶଥର ଗଲେ ତ ସେଇ ଏକାକଥା । କିନ୍ତୁ ମୁଁ କୋଉ ଆକର୍ଷଣରେ ଏଠାକୁ ବର୍ଷରେ ପାଞ୍ଚ ଛ' ଥର ଦୌଡ଼ି ଆସେ ସେକଥା ସେ ଜାଣେନା ବା ଜାଣିବାକୁ କେବେ ଆଗ୍ରହ ଦେଖାଏନି । କିନ୍ତୁ ବୋହୂ କ'ଣ କଲା ନକଲା, ତା ବାପଘରୁ କଣ ଆଣିଲା ନ ଆଣିଲା ସେଥିରେ ତାର ଭାରି ଆଗ୍ରହ । କାଳେ ତା ପୁଅ ତା ସ୍ତ୍ରୀ କଥାରେ ପଡ଼ିଯିବ, ମା'କୁ ଗୁରୁତ୍ୱ ଦେବନି ଏ

ନେଇ ସେ ଥାଏ । ଅନେକ କ୍ଷେତ୍ରରେ ଏକାଠି ସ୍ୱାମୀ ସ୍ତ୍ରୀ ଥିଲେ ବି ଦୁହିଁଙ୍କର ରାସ୍ତା ଅଲଗା ଥାଏ ।

ଏସବୁ ତ ଆମ ସାଧାରଣ ଜୀବନର କଥା । ଆମେ କେହି କାହାକୁ ବୁଝିପାରୁନା ମୁଁ ଯେଉଁ କଥା ସବୁ କହିଲି ତାକୁ ବା ବୁଝିବ କିଏ ! ସେ ତ ସମ୍ପୂର୍ଣ୍ଣ ଭିନ୍ନ ଜଗତର କଥା ଭିନ୍ନ ଚେତନା ସ୍ତରର କଥା । ତାକୁ ବୁଝିବେ ସେଇମାନେ ଯେଉଁମାନେ ସେଇସବୁ ସ୍ତରରେ ଗତାଗତ କରନ୍ତି । ତା' ନହେଲେ ଏସବୁ ଆମ ପାଇଁ କାହାଣୀ ଭିନ୍ନ କିଛି ନୁହେଁ ।"

ଅଶୋକ ବାବୁ ଖୁବ୍ ଭାବପ୍ରବଣ ଜଣାପଡୁଥିଲେ । ତରୁନ ଆଉ ସେ ବିଷୟରେ କିଛି ମନ୍ତବ୍ୟ ନଦେଇ କହିଲେ, "ଦାଦା ଆପଣ ଚନ୍ଦନଙ୍କୁ ଦେଖିଛନ୍ତି ବୋଲି କହୁଥିଲେ ଯେ, ମତେ ଟିକେ ଦେଖାଇ ଦିଅନ୍ତେ ନାହିଁ ?"

ଅଶୋକ ଏଥର କେମିତି ଟିକେ ହସିଲେ, କହିଲେ, "ନାଁ ତରୁନ, ସେଥିପାଇଁ ଘନଶ୍ୟାମ ମତେ ବାରଣ କରିଛନ୍ତି । ସେ କହିଛନ୍ତି କୌଣସି ପ୍ରକୃତ ଆଗ୍ରହୀ ମଣିଷକୁ କଥାଟା କୁହାଯାଇପାରେ କିନ୍ତୁ ସେ ବ୍ୟକ୍ତିଜଣକୁ କେବେ ବି ଚିହ୍ନାଇବନି । କାରଣ ଏକଥା ପାଇଁ ଜିଜ୍ଞାସୁଙ୍କ ଅପେକ୍ଷା କୌତୂହଳୀ ମଣିଷ ମାନଙ୍କର ଭିଡ଼ ତାଙ୍କ ପାଖରେ ଜମିଯିବ । ଏକ ଗଭୀର ଆଧ୍ୟାତ୍ମିକ ଅନୁଭବ ଶେଷରେ ଗାଲଗଳ୍ପ ସ୍ତରକୁ ଆସିଯିବ । ମୁଁ ଘନଶ୍ୟାମ ପଣ୍ଡାଙ୍କ ଦୟାରୁ ତାଙ୍କୁ ଦେଖିଛି । କିନ୍ତୁ ତାଙ୍କ ସହିତ ପରିଚୟ ବଢ଼ାଇବାକୁ ଚାହିଁନି । ତରୁନ୍, ମୁଁ ତାଙ୍କୁ ଦେଖିଲେ ବି ଚିହ୍ନାଇ ଦେବିନାହିଁ । ତା'ଛଡ଼ା ତାଙ୍କର ପ୍ରକୃତ ନାମ ମଧ୍ୟ ତୁମକୁ କହିନାହିଁ । କାରଣ ସେ ଅସାଧାରଣ ଶକ୍ତି କୌଣସି ପ୍ରକାର କୌତୂହଳର ଶରବ୍ୟ ହେବା ମୁଁ ଚାହେଁନି । ତୁମେ ହୁଏତ ଭାବୁଥିବ ମୁଁ ତେବେ ତୁମକୁ ଏତେକଥା କହିଲି କାହିଁକି ! ଏଇଥିପାଇଁ କହିଲି ଯେ ତୁମେ ଜାଣିଥାଅ ଏହିପ୍ରକାର ଅଲୌକିକ ଅନୁଭୂତି ଲାଭ କରୁଥିବା ଅସାଧାରଣ ମଣିଷମାନେ ବି ଆମ ସହିତ ଖୁବ୍ ସାଧାରଣ ମଣିଷ ଭାବରେ ରହିଛନ୍ତି । ଏସବୁ ବିଶ୍ୱାସର କଥା । ଅବିଶ୍ୱାସ, ସନ୍ଦେହ ମନରେ ଥିଲେ ଏ ଦିଗରେ କେହି ପାଦେ ଆଗେଇ ପାରେନି । ଉପଲବ୍ଧି ତ ଦୂରର କଥା ।''

ଏତିକି କହୁ କହୁ ଅଶୋକ ବାବୁ କ୍ଷିପ୍ର ବେଗରେ ଉଠିପଡ଼ି ପାହାଚ ପରେ ପାହାଚ ଓହ୍ଲାଇଯାଇ ଗୁମୁଟି ଘର ଭିତରେ ଅଦୃଶ୍ୟ ହୋଇଗଲେ । ତପନ ଆବାକାବା ହୋଇ ଏଣେ ତେଣେ ଚାହିଁ 'ଦାଦା' 'ଦାଦା' ଡାକିଡାକି ତାଙ୍କ ପଛ ପଛେ ଚାଲିଗଲେ ।

ମୁଁ ସେମାନଙ୍କର ଯିବା ପ୍ରତି ଆଦୌ ଧ୍ୟାନ ନଦେଇ ଉଠି ଠିଆହୋଇପଡ଼ିଲି । ମୋର ସେତେବେଳେ ଆଣ୍ଠୁ କଥା ମନେ ପଡ଼ିନଥିଲା । ହୁଏତ ସ୍ୱାଭାବିକ ହୋଇଯାଇଥିଲା ।

ମୁଁ ଖୁବ୍ ସହଜ ଭାବରେ ପାହାଚ କେଇଟା ଓହ୍ଲାଇ କାଶୀ ବିଶ୍ୱନାଥଙ୍କ ମନ୍ଦିର ପାଖରେ ପହଞ୍ଚିଗଲି । ବୃଷଭ ପଛରେ ଠିଆହୋଇ ଚାହିଁରହିଲି ଗର୍ଭଗୃହରେ ସ୍ଥାପିତ ଲିଙ୍ଗଦେବତାଙ୍କୁ । ମୋର ଏମିତି କଣ ହେଲା କେଜାଣି ଅଦ୍ଭୁତ ଅଭିମାନରେ ମୋର କଣ୍ଠରୁଦ୍ଧ ହୋଇ ଆଖିରୁ ଝରଝର ଲୁହ ସବୁ ଓଜାଡ଼ି ହୋଇପଡ଼ିଲେ । ପାଟି ନଫିଟାଇ ମଧ୍ୟ ମୁଁ ମୋର ଅଭିଯୋଗ ଖୁବ୍ ସ୍ପଷ୍ଟ ଭାବରେ ତାଙ୍କୁ ଜଣାଇ କହିଲି, "ହେ ଭୋଳାନାଥ ଆପଣ ଆର୍ଯ୍ୟ କି ଅନାର୍ଯ୍ୟ ଦେବତା, ଆପଣ ଦ୍ରାବିଡ଼ଙ୍କର ନା ଆଦିମ ଅଧିବାସୀଙ୍କର ଉପାସ୍ୟ ନା ଆପଣ ମହୋଞ୍ଜୋଦାରୋର ପଶୁପତି ଏହା ନିର୍ଣ୍ଣୟ କରିବାକୁ ଯାଇ କୌଣସି ସିଦ୍ଧାନ୍ତରେ ନ ପହଞ୍ଚି ପାରିବା ପାଇଁ ମତେ ଲାଗିଛି କେତେବର୍ଷ । ଭାରତୀୟ ସଂସ୍କୃତିର ବିଭିନ୍ନ ପର୍ଯ୍ୟାୟ ଯୋଗ, ଦର୍ଶନ, ବ୍ୟାକରଣ, ଆୟୁର୍ବେଦ, ସଂଗୀତ, ନୃତ୍ୟ ଓ ଚିତ୍ରକଳା ଆଦି ସବୁର ଉଦ୍‌ଭବ ଓ ବିକାଶର ସୂତ୍ର ଆପଣଙ୍କ ସହ କିପରି ସମ୍ପାଦିତ ତାହା ନିର୍ଣ୍ଣୟ କରିବାକୁ ଯାଇ କେତେ ଦିନରାତି ଏକାକାର କରିଛି କିନ୍ତୁ କାହିଁକି ଥରଟିଏ ପାଇଁ ତ ମତେ ଦର୍ଶନ ଟିକେ ଦେବାର କୃପା କରିନ !

ଅଥଚ କାହାନା କାହା ଉପରେ ଅଯାଚିତ ଭାବରେ କରୁଣା ଢ଼ାଳି ଦେଉଛ କାହାକୁ ସ୍ୱପ୍ନରେ ଦେଖା ଦେଉଛ ତ ପୁଣି କାହାକୁ ଏଇ ପାର୍ଥିବ ସ୍ତରରୁ ଉଠାଇ ନେଉଚ କେଉଁ ଅପାର୍ଥିବ ସ୍ତରକୁ । ଅଥଚ... ଅଥଚ... ମୁଁ ଆଉ ମନରେ ମଧ୍ୟ ଶବ୍ଦକୁ ଶବ୍ଦ ଯୋଡ଼ି ବାକ୍ୟ କରି ପାରିଲିନି । କୋହରେ ମୋ ଛାତି ଭିତରଟା ରୁନ୍ଧି ହୋଇ ଯାଉଥାଏ ।

ମୋ ଆଖିରୁ ସେମିତି ଲୁହ ଝରି ଚାଲିଥାଏ । ମୁଁ ନିଜକୁ ସଂବରଣ କରିବାକୁ ଚେଷ୍ଟା ବି କରୁନଥାଏ । କିଛି ସମୟ ପରେ ମୁଁ ଆପେ ଆପେ ଶାନ୍ତ ହୋଇଗଲି । ଆଖି ପୋଛି କେବଳ ବିଗ୍ରହକୁ ଚାହିଁରହିଲି ।

ଏଥର କିଏ କେଉଁଠି ମୃଦୁମନ୍ଦ୍ର ସ୍ୱରରେ ମତେ କହୁଥିବା ପରି ଲାଗିଲା, "ଶୁଣ ମୁଁ କ'ଣ ତୋର ଦର୍ଶନ ଶାସ୍ତ୍ର ଭିତରେ ନା ତୋ ଗବେଷଣାପତ୍ର ଭିତରେ ଥାଏ ଯେ ମତେ ସେଇଠି ପାଇଥାନ୍ତୁ । ଥରଟିଏ ଲାଗି କାହିଁ ତ ଆଜିପରି ମତେ ଦେଖିବାକୁ ବ୍ୟାକୁଳ ହୋଇ ଚାହିଁନୁ !

ମୁଁ ଯୋଗରେ ଥାଏ, ଭାବରେ ଥାଏ ତାକୁ ମୁଁ ଯୋଗରେ ମିଳିଛି ତତେ ଆଜି ଭାବରେ ମିଳିଗଲି ।

ତୋର ଏ ଲୁହ ତୋର ଏ ଅଭିମାନ କ'ଣ ମତେ ପାଇଥିବାର ଯଥେଷ୍ଟ ପ୍ରମାଣ ନୁହେଁ ।

ଶୁଣିଥିବା ଅନ୍ୟର ଅନୁଭବକୁ ସତ୍ୟ ବୋଲି ସ୍ୱୀକାର କରିପାରିବା କ'ଣ ତୋ ନିଜ ବିଶ୍ୱାସର ପରିଚୟ ନୁହେଁ !"

ମୁଁ ସତରେ ଅନ୍ୟ କାହାର ସ୍ୱର ଶୁଣୁଥିଲି କି ଆପେ ଆପେ ନିଜକୁ ଏକଥା କହୁଥିଲି ସେସବୁର ତର୍ଜମା କରିବାର ପ୍ରବଣତା ମୋ ଭିତରେ ଆଉ ସୃଷ୍ଟି ହେଉନଥିଲା । ମୁଁ ଖୁବ୍ ହାଲ୍‌କା ଅନୁଭବ କରୁଥିଲି । ଏକ ଅନନୁଭୂତ ଉଲ୍ଲାସ ମୋ ସମଗ୍ର ସତ୍ତାରେ ସଂଚରି ଯାଉଥିଲା ।

ମୋର ଧ୍ୟାନ ନ ଭାଙ୍ଗିବା ପାଇଁ ବିଥି କେତେବେଳୁ ଆସି ମୋ ପାଖରେ ଠିଆ ହୋଇ ଅପେକ୍ଷା କରୁଥିଲା । ମତେ ଆଖି ଖୋଲିବାର ଦେଖି ସେ ଗଦଗଦ ହୋଇ କହିଲା, "ବୁଝିଲୁ ନମ୍ରତା, ଆଜି ମୋର ବଡ଼ ଭାଗ୍ୟ । ମନ୍ଦିରରେ ଆଦୌ ଗହଳି ନଥିଲା । ତିନି ଠାକୁରଙ୍କର ପୂର୍ଣ୍ଣାବୟବ ମୂର୍ତ୍ତି ଦର୍ଶନ କରିପାରିଲି । ଯୋଉ କଳାଠାକୁରଙ୍କୁ ଦେଖିବାକୁ ଧାଇଁଆସେ, ଦୂରରୁ ଗହଳି ଭିତରେ ତାଙ୍କର ଅଧା ଦିଶୁଥିବା ମୁହଁ, କେତେବେଳେ ନୋଥପିନ୍ଧା ନାକଟି ଦେଖି ସନ୍ତୁଷ୍ଟ ହୋଇ ଫେରିଯାଏ । ଆଜି ତାଙ୍କୁ ମୁଁ ପୂରା ମନ ପୂରେଇ ଦେଖିଛି । ଏତେ ବର୍ଷ ପରେ ଏପରି ଦର୍ଶନର ସୁଯୋଗ ପାଇ ମୁଁ ଘରକୁ ଫେରିବା କଥା ଏପରିକି ତୋ କଥା ବି ଭୁଲିଗଲି । ଯାହାହେଉ ତୋ ଆଣ୍ଠୁ ଠିକ୍ ହୋଇଯାଇଛି । ବେଶ୍ ଡେରି ହୋଇଗଲାଣି । ଚାଲ ଯିବା ।"

ମୁଁ ତାକୁ କିଛି ଉତ୍ତର ଦେଲିନାହିଁ । ଶାସ୍ତ୍ରପୁରାଣର ବୌଦ୍ଧିକ ଚର୍ଚ୍ଚାରେ ନିଜକୁ ବ୍ୟସ୍ତ ରଖୁଥିବା ମଣିଷଟିକୁ କିଛି ଅନ୍ୟ ଅନୁଭବ ଦେବାପାଇଁ ଯେ ତାକୁ ଏଠି ଆଣ୍ଠୁ ବାହାନାରେ ଅଟକାଇ ଦିଆଯାଇଥିଲା ସେକଥା ମୁଁ ଉପଲବ୍ଧି କରିସାରିଥିଲି । କିନ୍ତୁ ସେ ବିଷୟରେ ପାଟିଖୋଲି ପଦଟିଏ ବି କଥା ବିଥିକୁ କହିଲି ନାହିଁ ।

ହୃଦୟରେ ପରିପୂର୍ଣ୍ଣ ସନ୍ତୋଷ ନେଇ ବିଥିର ହାତଧରି ମୁଁ ନୀରବରେ ପାହାଚ ଓହ୍ଲାଉଥିଲି ।



# ଅନ୍ୟ ଦୃଶ୍ୟ

ଦୀର୍ଘ ପାଞ୍ଚ ବର୍ଷ ଧରି ଗୋଟିଏ ଛୋଟ ସରକାରୀ କ୍ୱାର୍ଟରରେ ସ୍ୱାମୀ ଶ୍ରୀକାନ୍ତ ଓ ପିଲା ଦୁଇଟିଙ୍କ ସହ ଶ୍ରଦ୍ଧା ରହି ଆସୁଥିଲେ । ଏତେ ଛୋଟ ଘରେ ପ୍ରଥମେ ପ୍ରଥମେ ବିଶେଷ କିଛି ଅସୁବିଧା ହେଉନଥିଲା । ଝିଅ ପୁଅ ଦୁଇଟି ସାନ ଥିଲେ । ଆସବାବପତ୍ର କମ୍ ଥିଲା ।

ଏବେ ପିଲାଦୁହେଁ ଦଶବାର ବର୍ଷର ହୋଇଗଲେଣି । ସେ ଦୁହିଁଙ୍କର ବହିପତ୍ର, ଖେଳଣା, ଲୁଗାପଟା ଓ ପଢ଼ାଟେବୁଲ ପଡ଼ି ଘରେ ଆଉ ଗୋଡ଼ ବୁଲାଇବାର ଜାଗା ଟିକେ ନାହିଁ । ସେଥିରେ ମଝିରେମଝିରେ ଶାଶୂଶ୍ୱଶୁର, ନଣନ୍ଦଦିଅର ଓ ନିଜ ବାପାମା ମଧ୍ୟ ଆସି ରୁହନ୍ତି । ତା'ରି ଭିତରେ ଚଳିବାକୁ ହୁଏ ।

ଏଣେ ଧୀରେଧୀରେ ଘରର ଅବସ୍ଥା ଖରାପ ହୋଇ ଯାଉଥିଲା । ଘର ଭିତର ଛାତର ଠାଏ ଠାଏ ସ୍ଥାନରୁ ଚକଡାଏ ଲେଖାଏଁ ପଲସ୍ତରା ଖସି ପଡୁଥିଲା । ତେଣୁ ରାତିରେ ଖଟ ଉପରେ ସେ ଶକ୍ତ କରି ମଶାରି ଟାଙ୍ଗନ୍ତି । କିନ୍ତୁ ଦିନରେ କ'ଣ କରିବେ । ସେଦିନ ପଲସ୍ତରା ଖଣ୍ଡେ ଖସି ଶାଶୂଙ୍କ ପାଦରେ ପଡ଼ି ଖଣ୍ଡିଆ ହୋଇ ରକ୍ତ ବୋହିଲା । ସେଥିପାଇଁ ସେ କାହାରିକୁ ଦୋଷ ଦେଉନଥିବାବେଳେ ଶ୍ୱଶୁର ରାଗି ପଞ୍ଚମ ହୋଇଗଲେ ।

ତାଙ୍କ ପୁଅଙ୍କୁ ଯାହା ମନ ହେଲା ଶୋଧିଲେ । ତାଙ୍କ ଚାକିରି ଓ ତାଙ୍କ ପାରଗ ପଣକୁ ନେଇ ନାନା କଟୂକଥା କହିଲେ । ଶାଶୂ ବୁଝାଉଥାନ୍ତି ଏଥିରେ ତାଙ୍କ ପୁଅର ବା ଦୋଷ କୋଉଠି ରହିଲା । କିନ୍ତୁ ଶ୍ୱଶୁର ଏତେ ରାଗି ଯାଇଥିଲେ ଯେ କହିଲେ ଘର ନ ବଦଳାଇବା ଯାଏ ସେମାନେ ଆଉ ଏଠାକୁ ଆସିବେନି ।

ସତକୁ ସତ ଏ ଭିତରେ ବିତିଗଲାଣି ବର୍ଷଟିଏ । ସେମାନେ କେହି ତାଙ୍କ ଘରକୁ ଆସିନାହାନ୍ତି । ଶ୍ରଦ୍ଧା ସ୍ୱାମୀଙ୍କର ଅସୁବିଧା ବୁଝନ୍ତି, କିନ୍ତୁ କ'ଣ କରି ପାରିବେ ସେ !

କେଇଦିନ ତଳେ ହଠାତ୍ ଶ୍ରୀକାନ୍ତ ଖୁବ୍ ଭଲ ଖବରଟିଏ ଶୁଣାଇଲେ । ତାଙ୍କୁ ନୂଆ ତିଆରି ହେଉଥିବା ସରକାରୀ କ୍ୱାର୍ଟରରୁ ଗୋଟିଏ ଆଲଟ ହୋଇଛି । ବର୍ତ୍ତମାନର ଘରଠାରୁ ବେଶ୍ ବଡ଼ । ତିନି ବଖରା ଡ୍ରଇଂ ରୁମ୍ ଓ ରୋଷେଇଘରକୁ ମିଶେଇ ଖୁବ୍ ଖୋଲାମେଲା ଘର । ଶ୍ରଦ୍ଧା ସେହିକ୍ଷଣି ଶାଶୂଙ୍କୁ ଫୋନକରି ଜଣାଇଦେଲେ ଓ ପନ୍ଦର କୋଡିଏ ଦିନ ପରେ ସେମାନେ ସେ ଘରକୁ ଗଲେ ଶ୍ୱଶୂରଙ୍କୁ ନେଇ ଆସିବା ପାଇଁ ଅନୁରୋଧ କଲେ ।

ସେ ନୂଆ ଘର ରଙ୍ଗ ହେଉଛି, ଅନ୍ୟାନ୍ୟ କାମ ମଧ୍ୟ କିଛି ବାକି ଅଛି । ହୁଏତ ଆଉ କିଛିଦିନ ଡେରି ହେଇପାରେ । କିନ୍ତୁ ଶ୍ରଦ୍ଧାଙ୍କର ମନ ଆଉ ଘର ଧରୁନଥାଏ । ସେ ଜିନିଷପତ୍ର ବନ୍ଧାବନ୍ଧି କାମ ଆରମ୍ଭ କରିଦେଲେ । ପିଲା ଦି'ଜଣ ମଧ୍ୟ ମା'ର ଖୁସି ଦେଖି ପାରୁପର୍ଯ୍ୟନ୍ତ ସାହାଯ୍ୟ କରିବାରେ ଲାଗିପଡ଼ିଲେ ।

ସେହି ବହୁ ଈପ୍‌ସିତ ଦିନ ଆସିଗଲା । ବୁଧବାର ଘର ମିଳୁମିଳୁ ଶ୍ରଦ୍ଧା ଆଗରୁ ସ୍ଥିର କରିଥିବା ନନାଙ୍କୁ ନେଇ ନୂଆଘରେ ଭଲକରି ଗୋଟେ ହୋମ କରିଦେଲେ । ବନ୍ଧାବନ୍ଧି ହୋଇଥିବା ଥୋଡାଏ ଜିନିଷ ଟ୍ରଲିରେ ନେଇ ରଖିଦେଇ ଆସିଲେ । ସବୁ ଜିନିଷ ଯିବା ସମ୍ଭବ ନଥିଲା । ପରଦିନ ଗୁରୁବାର ସେଦିନ ପୁରୁଣା ଘର ଛାଡ଼ିଯିବା ଠିକ୍ ହେବନି । ବରଂ ଗୁରୁବାର ସବୁ ରଖାରଖି କରି ଶୁକ୍ରବାର ଶୁଭବେଳା ଦେଖି ସେ ନୂଆ ଘରେ ପ୍ରବେଶ କରିବେ ।

ଏତେ ଦିନ ପରେ ସେ ଖୁବ୍ ଖୁସି ଅନୁଭବ କରୁଥାନ୍ତି । କୋଉ ରୁମ୍‌ରେ କ'ଣ ରଖିବେ, କିଏ କୋଉଠି ରହିବେ ଭାବି ଭାବି ତାଙ୍କୁ ରାତିରେ ନିଦ ଆସୁନଥାଏ । ରାତି ପାହିଲେ ତାଙ୍କର ଅସନା ଭଙ୍ଗାରୁଜା ଘରଛାଡ଼ି ପ୍ରଶସ୍ତ ନୂଆ ଘରକୁ ଯିବେ । ତାଙ୍କ ଖୁସି ଦେଖି ଶ୍ରୀକାନ୍ତ ମଧ୍ୟ ଖୁବ୍ ଆନନ୍ଦ ଅନୁଭବ କରୁଥାନ୍ତି । ପିଲାମାନେ ଖୁବ୍ ଉତ୍‌କଣ୍ଠିତ ନୂଆଘରକୁ ଯିବାପାଇଁ । ଗୁରୁବାର ଦିନବେଳେ ପ୍ରାୟ ସେମାନେ ସବୁ ଜିନିଷ, ରୋଷେଇ

ସରଂଜାମ ନେଇ ଯାଇଛନ୍ତି । ରାତିଟା ସଉପପଟିରେ ଚଳେଇ ଦେବାପାଇଁ ଖଟ ବି ବାହାର କରିଦେଇଛନ୍ତି ।

କେବଳ କାନ୍ଥରେ ପିଟା ହୋଇଥିବା ପଟା ଉପରେ ଠାକୁରଙ୍କର ଦୁଇଚାରିଟି ଫଟୋ ଓ ପୂଜାର କିଛି ଉପକରଣ ରହିଛି । ଯାହାକୁ ଯିବାବେଳେ ହାତରେ ଧରି ନେଇଯିବେ ।

ରାତି କେତେବେଳକୁ ଶ୍ରଦ୍ଧାଙ୍କୁ ଟିକେ ନିଦ ଲାଗିଆସିଛି । ସ୍ୱପ୍ନ ଦେଖୁଛନ୍ତି ସେ ତାଙ୍କର ନୂଆଘର ବାହାରେ ଠିଆ ହୋଇଛନ୍ତି । ଛାତ ଉପରେ ହଠାତ୍ ଦେଖାଗଲେ କୁଳପୁରୋହିତ ବିଶ୍ୱନାଥ ନନା । ସେ ସେଠି ଠିଆ ହୋଇ ତାଙ୍କୁ ହାତହଲାଇ ଘର ଭିତରକୁ ଆସିବାକୁ ବାରଣ କରୁଛନ୍ତି ।

ଶ୍ରଦ୍ଧା କିଛି ବୁଝି ନପାରି ପାଦଟିଏ ବଢ଼ାଉବଢ଼ାଉ ସେ ଚିତ୍କାର କରି କହିଲେ, "ଏ ଘର ଭିତରକୁ ଆସନା । ଏଠି ବହୁ ଅନର୍ଥ ଘଟିଛି । ଫେରିଯା ଫେରିଯା ।"

ଶ୍ରଦ୍ଧା ଚମକି ନିଦରୁ ଉଠିପଡ଼ିଲେ । ତାଙ୍କ ଦେହରୁ ଝାଳ ବୋହିଗଲା । ପାଟି ପୂରା ଅଠା । ବିଶ୍ୱନାଥ ନନା ଦୁଇବର୍ଷ ତଳୁ ଇହଧାମ ତ୍ୟାଗ କରିଥିବା କଥା ସେ ଜାଣନ୍ତି । ସେ ଖୁବ୍ ଉତ୍ତମ ମଣିଷ ଥିଲେ । ତାଙ୍କ ପରିବାର ବଂଶକୁଟୁମ୍ବରେ ସବୁ ଶୁଭକାମ ତାଙ୍କ ଦ୍ୱାରା ହୋଇଥାଏ । କିନ୍ତୁ ସେ ଯେ ଆଉ ନାହାନ୍ତି । ହଠାତ୍ ଏମିତି ସ୍ୱପ୍ନରେ ତାଙ୍କୁ ଦେଖାଦେଇ ଘର ଭିତରକୁ ଯିବାକୁ ବାରଣ କଲେ କାହିଁକି ?

ଶ୍ରଦ୍ଧାଙ୍କ ମନରେ ଭୟ ପଶିଗଲା । ସେ କ'ଣ କରିବେ ବୁଝିପାରୁନଥାନ୍ତି । ନୂଆ ଘରକୁ ଯିବାପାଇଁ ଦୀର୍ଘ ପନ୍ଦର ଦିନ ଧରି ଆନନ୍ଦରେ ତାଙ୍କ ଗୋଡ଼ ତଳେ ଲାଗୁନଥିଲା । ସବୁ ଜିନିଷପତ୍ର ବି ସେ ସେଠାକୁ ନେଇ ସାରିଲେଣି । ଏବେ କରିବେ କ'ଣ ! ସେ ଘରକୁ ନଯିବା କଥା କହିବେ କିପରି ? ତାଙ୍କର ଓ ପିଲାମାନଙ୍କ ଖୁସିଠାରୁ ତାଙ୍କ ଘର ଲୋକେ ବୋଧେ ବେଶି ଖୁସି ହୋଇଛନ୍ତି । କାରଣ ଶ୍ୱଶୁରଙ୍କ କଥା ଟାଳି ନପାରି ତାଙ୍କ ଘରକୁ ଆସିପାରୁନଥିବା ଶାଶୂ ଏବେ କେମିତି ପୁଅବୋହୂଙ୍କ ପାଖକୁ ଆସିବେ ବୋଲି ଟାକି ବସିଛନ୍ତି । ସେ କ'ଣ ଭାବିବେ ?

ଶ୍ରୀକାନ୍ତ ଶୁଣିଲେ କଥାଟା ହସରେ ଉଡ଼େଇ ଦେବେ । ସରକାରୀ କ୍ୱାର୍ଟର ଗୋଟେ ହ୍ୟାଣ୍ଡଓଭର କରି ନୂଆଟିର ପଜେସନ୍ ନେଇ ଜିନିଷପତ୍ର ରଖିସାରିଲେଣି । ସେ ଆଉ ତାଙ୍କ କଥା କିଛି ଶୁଣିବେନି । ତା'ଛଡ଼ା ଏଇ ସ୍ୱପ୍ନ କଥାରେ ସେ ବି କ'ଣ ନୂଆ ଘରକୁ ଯିବା ବନ୍ଦ କରିପାରିବେ ।

କିନ୍ତୁ କେଇଟି ମୁହୂର୍ତ୍ତ ଭିତରେ ତାଙ୍କ ଭିତରୁ ଏତେ ଆନନ୍ଦ କୁଆଡ଼େ ଉଭେଇ ଯାଇ ଗୋଟେ ଅଜଣା ଆତଙ୍କ ଘାରିବାକୁ ଲାଗିଥିଲା । ବାକିଥିବା ରାତି ସେମିତି ପଲସ୍ତରା ଛଡ଼ା ଛାତକୁ ଚାହିଁଚାହିଁ କଟିଗଲା ।

ରାତି ପାହିଲା । ଶ୍ରଦ୍ଧା ବିଛଣାରୁ ଉଠି ବାହାରକୁ ଆସିଲେ । ତାଙ୍କର ସେଇ ପୁରୁଣା ଘର ଓ ତାର ପରିବେଶ ତାଙ୍କୁ ଅପୂର୍ବ ମନେହେଲା । ପାଞ୍ଚ ବର୍ଷ ସେ ସେଇଠି କଟାଇଛନ୍ତି ଖୁବ୍ ଆନନ୍ଦରେ, ନିରାପଦରେ । କେବଳ ଘର ଛୋଟ ଲାଗି ଯାହା ମଝିରେ ମଝିରେ ଅଶାନ୍ତି ହେଉଥିଲା । ଆହା ଏତେଦିନ ଧରି ତାଙ୍କୁ ଆଶ୍ରୟ ଦେଇଥିବା ଏଇ ଘର, ପରିବେଶକୁ ଛାଡ଼ିଯିବାକୁ ବ୍ୟାକୁଳ ହେବା ଭିତରେ ଥରେ ତ ସେ ଏମାନଙ୍କୁ ହରାଇବାର ଦୁଃଖ ଅନୁଭବ କରିନାହାନ୍ତି । ଆଜି କ'ଣ ନୂତନ ଜାଗାରେ କିଛି ସମ୍ଭାବ୍ୟ ବିପଦର ଆଶଙ୍କା ଥିବାରୁ ସେ ଏମାନଙ୍କ କଥା ଚିନ୍ତା କରୁଛନ୍ତି କି ?

ବଡ଼ ମାନସିକ ସଂକଟ ଭିତରେ ପଡ଼ିଯାଇଥିଲେ ଶ୍ରଦ୍ଧା । କାହାକୁ କହିବେ ତାଙ୍କୁ ସ୍ୱପ୍ନରେ ମିଳିଥିବା ଚେତାବନୀର କଥା । କିଏ ବା କାହିଁକି ଗୁରୁତ୍ୱ ଦେବ ଏ କଥାକୁ । ପିଲା ଦୁହିଁଙ୍କର ନିଦ ଭାଙ୍ଗିବା ବେଳକୁ ଦୁହେଁ ଆଗ ବାହାରି ପଡ଼ିବେ ନୂଆ ଘରକୁ, କ'ଣ କହି ତାଙ୍କୁ ଅଟକାଇବେ !

ଶ୍ରୀକାନ୍ତ ଉଠି ବାହାରକୁ ଆସିଲେ । ଶ୍ରଦ୍ଧା ବାହାରର ଛୋଟ ପିଣ୍ଡାର ଗୋଟିଏ କଡ଼କୁ ବସିଛନ୍ତି ସ୍ଥାଣୁ ହୋଇ । ଦେହରେ ଜୀବନ ଅଛି କି ନାହିଁ ଜଣାପଡୁନି ।

ଶ୍ରୀକାନ୍ତ ଚମକିପଡ଼ି ପଚାରିଲେ, "କ'ଣ ହେଲା ? ଏମିତି କାହିଁକି ବସିଛ ? ଶୀଘ୍ର କାମସାରି ଦିଅ । ଶେଷଥର ପାଇଁ ଏ ଘରେ ଠାକୁରଙ୍କ ପୂଜା ସାରି ତାଙ୍କ ଆସ୍ଥାନ ସେଠିକୁ ଉଠାଇନେବା ।"

ଶ୍ରଦ୍ଧା ତାଙ୍କୁ ଫେରିଚାହିଁଲେ । ତାଙ୍କ ମୁହଁକୁ ଦେଖି ତାଙ୍କ ସ୍ୱାମୀ ବିଶ୍ୱାସ କରିପାରିଲେ ନାହିଁ ଯେ କାଲି ରାତିରେ ଶୋଇବାକୁ ଯିବା ପର୍ଯ୍ୟନ୍ତ ନୂଆଘରକୁ ଯିବା ପାଇଁ ଖୁସିରେ ଉଛୁଳୁଥିବା ଶ୍ରଦ୍ଧା ଏପରି ନିଷ୍ପ୍ରାଣ ଦିଶୁଛନ୍ତି କାହିଁକି ! ମୁହଁରେ ଆଗ୍ରହ ପରିବର୍ତ୍ତେ ଏକ ଆଶଙ୍କାର ଛାଇ ସ୍ପଷ୍ଟ ବାରି ହୋଇପଡୁଛି, କଥା କ'ଣ ସେ ବୁଝିପାରୁ ନାହାନ୍ତି । ଭାବିଲେ ହଠାତ୍ କିଛି ଦେହ ଖରାପ ହେଲାକି !

ସେ ପଚାରିଲେ, "ଶ୍ରଦ୍ଧା ଦେହ କ'ଣ ଭଲ ଲାଗୁନି ? ଏମିତି କାହିଁ ଶେତା ଦେଖାଯାଉଛ ? କ'ଣ ହେଇଛି ?"

ତାଙ୍କ କଥା ଶୁଣୁଶୁଣୁ ଶ୍ରଦ୍ଧା ଗୋଟେ ଆବେଶରେ କହିପକାଇଲେ, "ଆଚ୍ଛା ଆମେ ସେ ନୂଆ ଘରକୁ ନଗଲେ କ'ଣ ହେବ । ଏ ଘର ତ ବେଶ୍ ଭଲ ଅଛି । ଏଇଠି ରହିବା, କ'ଣ କହୁଛ ?"

ଶ୍ରଦ୍ଧା ବୋଧହୁଏ ଭାବୁଥିଲେ ଶ୍ରୀକାନ୍ତ ତାଙ୍କ ପ୍ରସ୍ତାବରେ ସମ୍ମତ ହୋଇଯିବେ । କିନ୍ତୁ ସେ ତାଙ୍କ କଥା ଶୁଣି ପ୍ରଥମେ ଟିକେ ଆଶ୍ଚର୍ଯ୍ୟ ହୋଇଚାହିଁଲେ । ତା'ପରେ ବେଶ୍ ଉଚ୍ଚ କଣ୍ଠରେ ବିରକ୍ତି ପ୍ରକାଶ କରି କହିଲେ "ଖେଳୁଛକି ମୋ ସାଥିରେ ? ନୂଆଘର ନେବାକୁ ତୁମେ ମତେ ବସେଇ ଉଠେଇ ଦେଲନି । କ'ଣ ନା ଶାଶୂଶ୍ୱଶୁର ଆସୁନାହାନ୍ତି, ଚଳିବା ଅସୁବିଧା ହେଉଛି । ସବୁବେଳେ ଅଭିଯୋଗ । ଏବେ କ'ଣ ହେଲା ? ଭାବିଲ କି ବଡ଼ ଘର ମିଳିଗଲା, ଶାଶୂଶ୍ୱଶୁର କାଳେ ଆସି ସ୍ଥାୟୀ ହୋଇ ତୁମ ପାଖରେ ରହିଯିବେ ।"

ସ୍ୱାମୀଙ୍କର ଏପରି କଟୁ କଥା ସେ ପୂର୍ବରୁ ଶୁଣିନଥିଲେ । ବିଶେଷକରି ତାଙ୍କ ବାପା ମା'ଙ୍କ ପ୍ରତି ଶ୍ରଦ୍ଧାଙ୍କର ଭଲପାଇବା ଓ ସମ୍ମାନ କଥା ସେ ଜାଣନ୍ତି । ହଠାତ୍ ସେଇଠି ଏପରି ଚୋଟ ସେ କାହିଁକି ମାରିଲେ !

ସେ କିଛି ଉତ୍ତର ଦେବା ପୂର୍ବରୁ ଶ୍ରୀକାନ୍ତ କହିବାକୁ ଲାଗିଲେ "ବୁଝିଲ ଦୁଇଟି କ୍ୱାର୍ଟର ଏକା ସାଙ୍ଗରେ ରଖାଯାଇ ପାରେନି । ଆ'କୁ ମୁଁ ସରେଣ୍ଡର କରି ନୂଆ ଘରର ଚାବି ନେଇ ସାରିଛି । ତା'ଛଡ଼ା ଏ ଘରର ଦଦରା ଅବସ୍ଥା ଦେଖି ଡିପାର୍ଟମେଣ୍ଟ ଆ'କୁ ମରାମତ ନକରି ପୂରା ଭାଙ୍ଗିଦେଇ ଏଠି ଫ୍ଲାଟ କରି ବହୁ ଲୋକଙ୍କୁ ଘର ଯୋଗାଇବାର ନିଷ୍ପତ୍ତି ନେଇସାରିଛି । ତେଣୁ ମୁଁ ଚାହିଁଲେ ବି ଏଠି ରହିପାରିବିନି । ... ଆଚ୍ଛା ମୁଁ ବୁଝିପାରୁନି ରାତି ପାହିବା ବେଳକୁ ତୁମର ହେଲା କ'ଣ ? ନୂଆ ଘର ମିଳିବା ପରଠାରୁ ତ ଖୁସିରେ ତୁମ ପାଦ ତଳେ ଲାଗୁ ନଥିଲା ।"

ଏଥର ଶ୍ରଦ୍ଧା ଆଉ ତାଙ୍କ ଆତଙ୍କକୁ ଲୁଚାଇ ପାରିଲେନି । ଗତ ରାତିର ସ୍ୱପ୍ନରେ ଦେଖିଥିବା କୁଳପୁରୋହିତଙ୍କ ବାରଣ କଥା କହିଦେଲେ ।

ଶ୍ରୀକାନ୍ତ ପ୍ରଥମରୁ କଥାଟା ହସରେ ଉଡ଼ାଇଦେଲେ । ଏସବୁ ଶ୍ରଦ୍ଧାଙ୍କର କିଛି ମନର ଭ୍ରମ । ନୂଆ ସ୍ଥାନକୁ ଯିବା ଜନିତ ତାଙ୍କର ମନରେ ହୁଏତ କିଛି ଦ୍ୱନ୍ଦ୍ୱ ଓ ଆଶଙ୍କା ଥିଲା ଯାହାକି ଏପରି ଏକ ସ୍ୱପ୍ନରେ ରୂପାନ୍ତରିତ ହୋଇଛି । ସେ ଆଉ ସେ ପ୍ରସଙ୍ଗରେ କିଛି ନକହି ନିଜ କାମସାରି ବାହାରକୁ ବାହାରିଯିବା ପୂର୍ବରୁ ଶୀଘ୍ର କାମ ସାରିବାକୁ ତାଗିଦ କରିଗଲେ । ପିଲା ଦି'ଜଣ ବିଛଣା ଛାଡୁ ଛାଡୁ ମୁହଁ ଧୋଇ ପକାଇ ଦଉଡ଼ିଲେ ପାଖ ପଡ଼ୋଶୀରେ ଥିବା ସାଙ୍ଗମାନଙ୍କୁ ସାକ୍ଷାତ କରି ବିଦାୟ ନେବାପାଇଁ ।

ଏବେ ଘରେ ଏକା ରହିଲେ ଶ୍ରଦ୍ଧା । ଘରେ କିଛି ଆଉ ଜିନିଷପତ୍ର ନାହିଁ । ତଳେ ପଡ଼ିଥିବା ବିଛଣା ଉଠାଇ ଦେଲେ କାମ ସରିଲା । ସବୁଆଡ ଖାଁ ଖାଁ ଲାଗୁଛି । ସେ ନିଜକୁ ବାଧ୍ୟ କଲେ କାମ ସାରିବା ପାଇଁ । ଗାଧୋଇପାଧୋଇ କାନ୍ଥରେ ପିଟା ହୋଇଥିବା ଥାକ ଉପରେ ରହିଥିବା ଦିଅଁମାନଙ୍କୁ ଯଥାବିଧି ପୂଜାକଲେ, ଭୋଗ ଦେଲେ । ସେ ମା ଭଗବତୀଙ୍କର ଉପାସିକା । ତାଙ୍କ ଉପରେ ଧ୍ୟାନ କେନ୍ଦ୍ରିତ କଲେ । କିନ୍ତୁ ସ୍ୱପ୍ନଦୃଷ୍ଟ ଘଟଣାରେ ସେ ଏତେ ବିଚଳିତ ହୋଇ ପଡ଼ିଥିଲେ ଯେ ତାଙ୍କର ଏକାଗ୍ରତା ଆଦୌ ରହିଲାନି । ମନ ଅଧିକରୁ ଅଧିକ ଚଞ୍ଚଳ ହେଲା ।

ଏ ଅବସ୍ଥାରେ ସେ କାହାର ବା ପରାମର୍ଶ ନେଇପାରିବେ ! ହଠାତ୍ ମନେପଡ଼ିଗଲା ତାଙ୍କର ଜଣେ ଦୂର ସମ୍ପର୍କୀୟ ଭଉଣୀ ମିନର୍ଭାଙ୍କ କଥା । ସେ ତାଙ୍କଠାରୁ ବୟସରେ ବେଶ୍ ବଡ଼ । ଦୁହେଁ ଦୁହିଁଙ୍କୁ ବହୁତ ଭଲ ପାନ୍ତି । ସୁବିଧା ଅସୁବିଧାରେ ଶ୍ରଦ୍ଧା ସେଇ ଭଉଣୀଙ୍କ ସହ ପରାମର୍ଶ କରିଥାନ୍ତି । ବିଶେଷକରି ଘରୋଇ ସମସ୍ୟା ଅପେକ୍ଷା ଧର୍ମ, ପୂଜା, ଉପାସନା ସମ୍ପର୍କରେ ତାଙ୍କ ମନରେ ବେଳେ ବେଳେ ଉଠୁଥିବା ପ୍ରଶ୍ନର ଉତ୍ତର ପଚାରନ୍ତି । ମିନର୍ଭା ତାଙ୍କୁ ଯାହା କୁହନ୍ତି ଶ୍ରଦ୍ଧା ତାକୁ ଅକ୍ଷରେଅକ୍ଷରେ ପାଳନ୍ତି । ସେ କଥା ସେ କାହାରି ଆଗରେ ଆଲୋଚନା କରନ୍ତି ନାହିଁ । ସେ ଜାଣନ୍ତି ତାଙ୍କ ପ୍ରଶ୍ନକୁ ନେଇ କିଏ ହୁଏତ ତାଙ୍କୁ ପରିହାସ କରିପାରେ ବା ମିନର୍ଭାଙ୍କର ପରାମର୍ଶକୁ ବାଜେ କଥାର ଆଖ୍ୟା ଦେଇପାରେ । ତେଣୁ ସେ ଦିଗରେ ସେ ପୂର୍ଣ୍ଣ ନୀରବତା ରକ୍ଷାକରନ୍ତି ।

ଏବେ ସେଇ ଭଉଣୀଙ୍କ କଥା ତାଙ୍କର ମନେ ପଡ଼ିଗଲା । କେମିତି ଏକ ଆଶ୍ୱସ୍ତିଭାବ ଛାଇଗଲା ତାଙ୍କ ମନରେ । ସେ ସିଧା ତାଙ୍କର ଫୋନ ଉଠାଇ ମିନର୍ଭାଙ୍କ ନମ୍ବରକୁ ଲଗାଇଲେ ।

ସେପଟରୁ ଶୁଣାଗଲା ମିନର୍ଭାଙ୍କର ସ୍ୱର, "କ'ଣ ହେଲା କିରେ ? ସକାଳୁ ସକାଳୁ ଫୋନ କରିଛୁ । କିଛି ଅସୁବିଧା ହୋଇଛି କି ?"

ଶ୍ରଦ୍ଧା ଆରମ୍ଭ କରିଦେଲେ ତାଙ୍କ ସଂକଟର କଥା । ନୂଆ ଘରକୁ ଯିବାର ସବୁ ପ୍ରସ୍ତୁତି ସରିବା ପରେ ହଠାତ୍ ଏପରି ସ୍ୱପ୍ନ ଦେଖିବା ଫଳରେ ତାଙ୍କ ମନରେ ଥିବା ସରସତା ସ୍ଥାନରେ ଏବେ ପୂରା ଆତଙ୍କ ବସା ବାନ୍ଧିଗଲାଣି । ନୂଆ ଘରକୁ ନଯାଇ ଉପାୟ ନାହିଁ । ଏଣେ ଅନିଷ୍ଟ କିଛି ଘଟିବାର ଆଶଙ୍କା । ସେ ଏବେ କରିବେ କ'ଣ କିଛି ବୁଝିପାରୁନାହାନ୍ତି । ହାତରେ ଆଉ ମାତ୍ର କିଛି ସମୟ ରହିଛି ।

ତାଙ୍କ ସ୍ୱରରୁ ଉଦ୍‌ବେଗ ଓ ଭୟ ସ୍ପଷ୍ଟ ବାରି ପାରିଥିଲେ ମିନର୍ଭା । ସେ ଜାଣନ୍ତି ମଣିଷ ମନର ବିଚିତ୍ର ଗତିବୃତ୍ତି,. କେବେ ହସ ତ କେବେ କାନ୍ଦ । ଯାହା ତା'ର ଆନନ୍ଦର କାରଣ ସେଇ ହୁଏ ବିଷାଦର ମୂଳ କଥା । ଯେତେ ନିଜକୁ ଦୃଢ଼ ପ୍ରମାଣ କଲେ ବି ଦୁର୍ବଳତା କୋଉଠୁ ପଦାକୁ ମୁଣ୍ଡ ଟେକିଥାଏ । ତେଣୁ ଶ୍ରଦ୍ଧାଙ୍କର ଭୟ ଖୁବ୍ ସ୍ୱାଭାବିକ କଥା । ତାଙ୍କ ମନକୁ ବି ଭୟ ଛୁଇଁ ଯାଇଥିଲା । ବିଶ୍ୱନାଥ ନନା ଶ୍ରଦ୍ଧା ପରିବାରର କୁଳ ପୁରୋହିତ ହୋଇପାରନ୍ତି, କିନ୍ତୁ ତାଙ୍କର ପ୍ରଜ୍ଞା ଓ ସାଧନା ବିଷୟରେ ଖଣ୍ଡମଣ୍ଡଳରେ ତାଙ୍କୁ ସମସ୍ତେ ଜାଣନ୍ତି । ସେ ଜଣେ ସିଦ୍ଧଯୋଗୀ ବୋଲି ମଧ୍ୟ ତାଙ୍କ ଅଞ୍ଚଳରେ ପରିଚିତ । ଏହି ସିଦ୍ଧ ଶୁଭକାମୀ ବ୍ରାହ୍ମଣ ଯଦି ସ୍ୱପ୍ନାଦେଶ ଦେଇଛନ୍ତି ତେବେ ନିଶ୍ଚୟ ଏଥିରେ ବିଶେଷ କିଛି ରହସ୍ୟ ଅଛି । ତାହା ମାନିବା ଉଚିତ । କିନ୍ତୁ ମାନିବାର ସମୟ ଏବେ ଗଡ଼ିଯାଇଛି । ଆଉ ପଛକୁ ଫେରିବାର ବାଟ ନାହିଁ । ସେ ଘର ଆଜି ଯେମିତି ହେଲେ ଛାଡ଼ିବାକୁ ପଡ଼ିବ ।

ମିନର୍ଭା ନିଜକୁ ସମ୍ଭାଳି ନେଇ ସହଜ କଣ୍ଠରେ କହିଲେ, "ଦେଖ୍ ଶ୍ରଦ୍ଧା, ବିଶ୍ୱନାଥ ନନାଙ୍କର ସ୍ୱପ୍ନରେ ଚେତାବନୀ ଦେବା ଯଦିବା ସତ ହୋଇଥାଏ ତଥାପି ତୁ ଆଦୌ ଭୟ କରନା । ତୁ ମା ଭଗବତୀଙ୍କର ଉପାସିକା । ତାଙ୍କ ଇଚ୍ଛାରୁ ଅଧିକ କେହି ନୁହନ୍ତି । ମା' ତ ଏପର୍ଯ୍ୟନ୍ତ ସେ ନୂଆ ଘରକୁ ଯାଇନାହାନ୍ତି । ତୁ ତାଙ୍କୁ ସାଙ୍ଗରେ ନେଇ ଗୃହପ୍ରବେଶ କରିବୁ । ଆଉ ଭୟ କାହିଁକି ! ବିଶ୍ୱନାଥ ନନାଙ୍କର କଲ୍ୟାଣ ତୁମ ପରିବାର ପାଇଁ ଥିଲା । ଭଗବତୀ ସେଠାରେ ପ୍ରତିଷ୍ଠା ହେବା ପୂର୍ବରୁ ସେ ହୁଏତ ସେଠାରେ କିଛି ଅନିଷ୍ଟ ଦେଖିଛନ୍ତି ଓ ତତେ ସତର୍କ କରିଛନ୍ତି ।

କିନ୍ତୁ ମା' ସେ ଘରକୁ ଯିବା ପର ଅବସ୍ଥା କ'ଣ ହେବ ସେ ଜାଣନ୍ତି ନାହିଁ । ନିଶ୍ଚିନ୍ତରେ ମାଙ୍କର ଫଟୋକୁ ଛାତିରେ ଜାକିଧରି ନୂଆଘରେ ପ୍ରବେଶ କରିବୁ । ତାଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନରେ ତାଙ୍କୁ ବସାଇ ନୂଆଘର ସମ୍ପର୍କରେ ତୁ ପାଇଥିବା ଚେତାବନୀ ତାଙ୍କୁ ପ୍ରାର୍ଥନା ସହ ଜଣାଇବୁ । ତା'ପରେ ନିଶ୍ଚିନ୍ତ ମନରେ ନୂଆଘରେ ତୋର କାମ ଆରମ୍ଭ କରିବୁ ।"

ଶ୍ରଦ୍ଧା ତାଙ୍କ ଭଉଣୀଙ୍କର କଥା ଶୁଣି ପୂରା ଆଶ୍ୱସ୍ତ ହୋଇଗଲେ । ଗତ ରାତିରୁ ହଜି ଯାଇଥିବା ଆଗ୍ରହ, ଉଚ୍ଛ୍ୱାସ, ଆନନ୍ଦ ଦ୍ୱିଗୁଣ ହୋଇ ଦ୍ୱରିତ ବେଗରେ ପୁଣି ତାଙ୍କୁ ଚହଲାଇ ଦେଲେ । ତାଙ୍କର ନିଷ୍ପ୍ରାଣ ହୋଇ ଆସିଥିବା ଶରୀରରେ କାହୁଁ ବଳ ଆସିଗଲା । ସେ ଅବଶେଷ କାମକୁ କେଇଟି ମୁହୂର୍ତ୍ତ ଭିତରେ ସାରିଦେଇ ଶ୍ରୀକାନ୍ତଙ୍କର ଫେରିବା ବାଟକୁ ଚାହିଁ ରହିଲେ ।

କିଛି ସମୟ ଭିତରେ ଗାଡ଼ିଟିଏ ଧରି ଦୁଇ ପିଲାଙ୍କୁ ସାଙ୍ଗରେ ନେଇଆସି ପହଞ୍ଚିଲେ ଶ୍ରୀକାନ୍ତ । ଶ୍ରୀକାନ୍ତ ପତ୍ନୀଙ୍କୁ ମୃଦୁ ତାଗିଦା କରି ଯାଇଥିଲେ ବି କଥାଟା ତାଙ୍କୁ ଠିକ୍ ଧରିଥିଲା । ସେ ଚିନ୍ତିତ ଜଣାପଡୁଥିଲେ । କିନ୍ତୁ ଘର ବାହାରେ ନୂଆ ଲୁଗା ପିନ୍ଧି ଖୁବ୍ ହସହସ ଦିଶୁଥିବା ଶ୍ରଦ୍ଧାଙ୍କୁ ଦେଖି ତାଙ୍କ ମନର ଚିନ୍ତା ଦୂର ହୋଇଗଲା ।

ଘର ଛାଡ଼ିବା ପୂର୍ବରୁ ଶ୍ରଦ୍ଧା ଘର ମଝିରେ ଦୀପଟିଏ ଲଗାଇଲେ । ଫୁଲ ଦୁଇଟି ରଖି ଧୂପକାଠି ଜଳାଇ ଘର ଉଦ୍ଦେଶ୍ୟରେ ପ୍ରଣାମ କରି ମନେ ମନେ କହିଲେ, "ତୁମେ ହୋଇପାର ଏକ ଜଡ଼ପିଣ୍ଡ କିନ୍ତୁ ଆମକୁ ଯେ ଏତେ ଦିନ ଆଶ୍ରୟ ଦେଇଥିଲ ମୁଁ ସେଥିପାଇଁ ତୁମ ନିକଟରେ ଆମ ସମସ୍ତଙ୍କ ପକ୍ଷରୁ କୃତଜ୍ଞତା ଜଣାଉଛି ।"

ଗାଡ଼ିରେ ବସିବା ପୂର୍ବରୁ ଶ୍ରୀକାନ୍ତ କହିଲେ "ଆଚ୍ଛା ଶ୍ରଦ୍ଧା ତୁମେ ଭଗବତୀଙ୍କର ଫଟୋକୁ ଆଗ ସିଟ୍‌ରେ ରଖିଦିଅ । ତିନିହେଁ ସୁବିଧାରେ ବସ । ମୁଁ ବାଇକରେ ଯାଉଛି ।"

ଶ୍ରଦ୍ଧା ତାଙ୍କ ଛାତିରେ ଫଟୋକୁ ସେମିତି ଜାକିଧରି ଇଙ୍ଗିତରେ "ଠିକ୍ ଅଛି" ବୋଲି ଶ୍ରୀକାନ୍ତଙ୍କୁ ଜଣାଇଦେଲେ ଏବଂ ସେ ନ ପହଞ୍ଚିବା ଯାଏ ଶ୍ରୀକାନ୍ତଙ୍କୁ ବାହାରେ ଅପେକ୍ଷା କରିବାକୁ କହିଲେ । ପଛରେ ରହିଗଲା ପୁରୁଣା ଘର ଓ ତାର ପରିବେଶ । ଗାଡ଼ି ଗଡ଼ିଚାଲିଲା ନୂଆଘର ଦିଗରେ । ଶ୍ରୀକାନ୍ତ ପୂର୍ବରୁ ପହଞ୍ଚିଥିଲେ ଘର କବାଟ ନଖୋଲି ସମସ୍ତଙ୍କୁ ଅପେକ୍ଷା କରୁଥିଲେ । ମାତ୍ର କେଇ ମିନିଟ ପରେ ପହଞ୍ଚିଗଲେ ଶ୍ରଦ୍ଧା ଓ ପିଲାଦୁହେଁ ।

ପିଲାଙ୍କୁ ଓ ସ୍ୱାମୀଙ୍କୁ ପଛକୁ ରଖି ସେ ଭଗବତୀଙ୍କ ଫଟୋକୁ ସେମିତି ଛାତିରେ ଜାକିଧରି ପ୍ରଥମେ ଘର ଭିତରକୁ ପାଦ ବଢ଼ାଇଲେ । ଠାକୁରଙ୍କ ପାଇଁ ନୂଆ ଘରେ ଭଲ ବ୍ୟବସ୍ଥା ହୋଇଥିଲା । କଣିକିଆ ଜାଗାରେ ଥିବା କାଠ ତିଆରି ସିଂହାସନରେ ଫଟୋଗୁଡ଼ିକ ସଜାଇ ରଖି, ପୂଜାରେ ବ୍ୟବହୃତ ସାମଗ୍ରୀମାନଙ୍କୁ ଯଥାସ୍ଥାନରେ ଭଲରେ ରଖିପାରିଲେ । ଠାକୁରଙ୍କ ଆସ୍ଥାନ ସାମନାରେ ବସି ଧ୍ୟାନ ପ୍ରାର୍ଥନା କରିବା ପାଇଁ ମଧ୍ୟ ଭଲ ଜାଗାଟିଏ ଥିଲା । ଶ୍ରଦ୍ଧାଙ୍କର ମନ ଖୁସି ହୋଇଗଲା । ସ୍ୱାମୀ ଅଫିସକୁ ଓ ପିଲା ଦୁହେଁ ସ୍କୁଲକୁ ଚାଲିଯିବା ପରେ ଶ୍ରଦ୍ଧାଙ୍କର ଆଉ କିଛି କାମ ରୁହେନା । ଠାକୁରଙ୍କ ପାଖରେ ବସିବା ଭଜନ ଜଣାଣ ଶୁଣିବା ଓ ସେ ସମ୍ପର୍କିତ ବହି ପଢ଼ିବାରେ ତାଙ୍କର ଆନନ୍ଦ । ପୁରୁଣା ଘରେ କାନ୍ଥରେ ପିଟା ହୋଇଥିବା କାଠପଟାରେ ଥିବା ଠାକୁରଙ୍କ ପାଖରେ ବସି ହେଉନଥିଲା । ଏଠି ସେ ଅସୁବିଧା ନାହିଁ । ନୂଆ ଘରକୁ ମନ ମୁତାବକ ସଜାଇବାରେ ଘର ସାମନାକୁ ଥିବା ଜାଗାରେ ଫୁଲ ଗଛ ଲଗାଇବାରେ ସମୟ କୁଆଡ଼େ କଟିଯାଉଥିଲା ।

ଏ ଭିତରେ ବିତିଯାଇଛି ଚାରି ମାସ ସମୟ । ମିନର୍ଭାଙ୍କ ସାଙ୍ଗରେ ସେ କେତେଥର କଥା ହୋଇଛନ୍ତି । ପରସ୍ପରର ଭଲ ମନ୍ଦ ବୁଝିଛନ୍ତି । ଯଦିବା ଶ୍ରଦ୍ଧା କୁଳପୁରୋହିତଙ୍କ ଚେତାବନୀ ଭୁଲିନଥିଲେ ସେଥିପାଇଁ କିନ୍ତୁ ତାଙ୍କ ମନରେ କୌଣସି ଭୟ ସୃଷ୍ଟି ହେଉନଥିଲା । ତେଣୁ ସେ ସମ୍ପର୍କରେ ସେ କେବେ ଆଉ କଥା ହୋଇନାହାନ୍ତି ।

କିନ୍ତୁ ସେଦିନ ଦି'ପହରେ ଖଟ ଉପରେ ଗଡ଼ପଡ଼ ହେଉ ହେଉ ଶ୍ରଦ୍ଧାଙ୍କର ଆଖି ଟିକେ ଲାଗିଯାଇଛି । ସେ ଦେଖୁଛନ୍ତି ତାଙ୍କ ବାରିପଟ ଓ ଅନ୍ୟ କ୍ୱାର୍ଟରର ବାରିପଟ ଜାଗା ଖୁବ୍ ଘଞ୍ଚ ଅରମା ବୁଦାରେ ଭର୍ତ୍ତି ହୋଇଛି । ହଠାତ୍ ସେ ଜାଗା ଭିତରୁ ସରସର ହୋଇ କିଛି ଗୋଟେ ବାହାରି ଆସିଲା । ସେ ଝରକା ରେଲିଂ ଧରି ସିଆଡ଼େ ଚାହିଁଛନ୍ତି, ଦେଖିଲେ ସର୍ପାକୃତିର ଏକ ବୀଭତ୍ସ ରୂପଧାରୀ ମଣିଷ ପରି ମନେ ହେଉଥିବା ଜନ୍ତୁଟାଏ ବାହାରି ଆସୁଛି । ସେ ତାକୁ ଆଶ୍ଚର୍ଯ୍ୟ ହୋଇ ଚାହୁଁଛନ୍ତି ସେ ତାଙ୍କ ଝରକାଆଡ଼କୁ ମାଡ଼ି ଆସିଲା । ସେ ଭୟରେ ପଛକୁ ଘୁଞ୍ଚିଗଲେ । ସେ ଜନ୍ତୁଟା ଝରକା ରେଲିଂକୁ ଦୁଇ ହାତରେ ଧରି ତାଙ୍କୁ ବିକଳ ହୋଇ କିଛି ମାଗିବାପରି ମନେହେଲା । ସେ କ'ଣ କହିବାକୁ ଚାହୁଁଛି ଶ୍ରଦ୍ଧା ଜାଣିବାକୁ ଚେଷ୍ଟା କଲାବେଳେ ତାଙ୍କ ନିଦ ଭାଙ୍ଗିଗଲା । ବାହାରେ ଦେଖିଲେ ସୂର୍ଯ୍ୟାଲୋକ ନାହିଁ । କେତେବେଳେ ଆକାଶରେ ମେଘ ଘୋଟି ଅନ୍ଧାର ଛାଇଯାଇଛି । ଘଡ଼ଘଡ଼ି ମାରି ଅସରାଏ ଅଦିନ ବର୍ଷା ହୋଇଗଲା । ବାହାରେ ଶୁଖୁଥିବା ଲୁଗାପଟା ଆଣିବାକୁ ଶ୍ରଦ୍ଧା ଦଉଡ଼ିଲେ । ପବନରେ ପିଟି ହେଉଥିବା ଝରକା କବାଟ ବନ୍ଦ କରିବାରେ ଲାଗିଗଲେ । କାର୍ଯ୍ୟବ୍ୟସ୍ତତା ଭିତରେ ସ୍ୱପ୍ନ ଆଉ ମନେରହିଲାନି ।

କିନ୍ତୁ ରାତିରେ ପୁଣି ସେଇ ସ୍ୱପ୍ନ । କିନ୍ତୁ ସେ କଥା ଘରେ ଆଲୋଚନା ହେଲେ ପିଲା ଡରିବେ । ଶ୍ରୀକାନ୍ତଙ୍କୁ ନ କହିବା ଭଲ । ସେ ଓଲଟା ମନର ଭ୍ରମ, ସ୍ୱପ୍ନର ଅଳୀକତା ଉପରେ ଅଯଥା ଗୁଡ଼ାଏ କଥା ଶୁଣାଇବେ । ତେବେ ସ୍ୱପ୍ନ ବେଶ୍ ଭୀତିପ୍ରଦ ଥିଲେ ବି ସେ ନିଜକୁ ବୁଝାଇଦେଲେ ।

ପୁଣି ସାତଦିନ ପରେ ସେଇ ସ୍ୱପ୍ନ । ସେଇ ବୀଭତ୍ସ ରୂପର ଜନ୍ତୁ ମଣିଷଟା ତାଙ୍କର ଝରକା ରେଲିଂ ଧରି ଏଥର ତାଙ୍କୁ କେବଳ ବିକଳରେ ଚାହୁଁନଥିଲା, କିଛି ମାଗୁଥିଲା । ଶ୍ରଦ୍ଧା ତାକୁ ଭିତରୁ ପଚାରିଲେ ''କ'ଣ ମାଗୁଛୁ ?''

ଜନ୍ତୁଟା ଏଥର ସ୍ପଷ୍ଟ ଭାବରେ ଇଙ୍ଗିତ କଲା ସେ କିଛି ଖାଇବାକୁ ମାଗୁଛି । ଶ୍ରଦ୍ଧାଙ୍କର ନିଦ ଭାଙ୍ଗିଗଲା ସତ କିନ୍ତୁ ତାଙ୍କୁ ଲାଗିଲା ସ୍ୱପ୍ନର ସେଇ ଜନ୍ତୁଟା ଝରକା ଆରପଟରେ ସତକୁ ସତ ରହିଛି ଓ ତାଙ୍କୁ ଚାହିଁଛି । କେତେ କ୍ଷଣ ସେପରି ବିତିଗଲା

ଶ୍ରଦ୍ଧାଙ୍କର ଜ୍ଞାନ ନାହିଁ । ସେ ତଟସ୍ଥ ହୋଇ ତାକୁ ଦେଖୁଥିଲେ । କିନ୍ତୁ ତାଙ୍କ ଖୋଲା ଆଖି ଆଗରେ ସେ ରୂପ ପବନରେ ମିଳାଇ ଯାଇଥିଲା । ଏଥର ଏ ସ୍ୱପ୍ନକୁ ଗୁରୁତ୍ୱ ନଦେଇ ତାଙ୍କର ଉପାୟ ନଥିଲା ।

ଶ୍ରଦ୍ଧା ସେଦିନ ପୂରା ଅନ୍ୟମନସ୍କ ରହିଲେ । ତାଙ୍କର ଆଉ କୋଉ କାମରେ ମନ ଲାଗିଲା ନାହିଁ । ମିନର୍ଭାଙ୍କ କଥା ମନେ ପଡୁଥିଲା । କିନ୍ତୁ କେହି ଘରେ ନଥିବାବେଳେ ସିନା ସେ ଖୋଲା ମନରେ କିଛି କଥା କହିପାରିବେ । ସେମିତି ଗୋଟେ ସମୟ ଆସିଗଲା । କିନ୍ତୁ ଶ୍ରଦ୍ଧା ଫୋନ କରିବା ପୂର୍ବରୁ ମିନର୍ଭା ହିଁ ତାଙ୍କର ଭଲ ମନ୍ଦ ଜାଣିବାକୁ ଫୋନ କରିଥିଲେ । ଶ୍ରଦ୍ଧା ଏକା ନିଃଶ୍ୱାସରେ କହିଗଲେ ତିନିଥର ଦେଖିଥିବା ସେଇ ଗୋଟିଏ ସ୍ୱପ୍ନର ବିବରଣୀ ଓ ନିଜ ଭୟର କଥା ।

ସେପଟରୁ ମିନର୍ଭା ଶାନ୍ତ ଓ ସମବେଦନାଭରା ସ୍ୱରରେ କହିଲେ "ଆହା ବିଚାରା, ବହୁଦିନର କ୍ଷୁଧା ଧରି କଷ୍ଟ ପାଉଛି ।"

"କିଏ କଷ୍ଟ ପାଉଛି !!" ଶ୍ରଦ୍ଧା ଏପାଖରୁ ଚମକି ପଡ଼ି ପଚାରିଲେ ।

"ତୁ ସେକଥା ବୁଝିପାରିବୁନି । ଏତିକି ଜାଣିରଖ ଏମିତି କିଛି ସତ୍ତା ଅଛନ୍ତି ଯେଉଁମାନେ ବହୁକାଳର ଅତୃପ୍ତି ନେଇ ଘୂରି ବୁଲୁଥାନ୍ତି । ଏମିତି ମଣିଷଟିଏ ଖୋଜୁଥାନ୍ତି ଯାହା ମାଧ୍ୟମରେ ସେମାନେ ସେଥିରୁ ମୁକ୍ତି ପାଇଯିବେ । ତାଙ୍କୁ ଭୟ କରିବାର ନୁହେଁ, ସାହାଯ୍ୟ କରିବା ଆବଶ୍ୟକ । ସେ ତତେ ଭୟ ଦେଖାଉ ନାହିଁ ତୋ'ର ସାହାଯ୍ୟ ମାଗୁଛି ।" ସହଜରେ କଥାଟା କହିଲେ ମିନର୍ଭା ।

ଶ୍ରଦ୍ଧା ସତରେ ବୁଝିପାରିଲେ ନାହିଁ ମିନୁ ଅପା ତାଙ୍କୁ କ'ଣ କହୁଛନ୍ତି । କେଉଁ ସତ୍ତା, କି ପ୍ରକାର ତାର ଅତୃପ୍ତି, ତାକୁ ପୁଣି ସାହାଯ୍ୟ କରିବା ଏସବୁର ମାନେ କ'ଣ !

ସେ ଏପଟରୁ ନୀରବ ରହିଯିବାରୁ ମିନର୍ଭା ବୁଝିପାରିଲେ ଶ୍ରଦ୍ଧାଙ୍କ ମନର ଦ୍ୱନ୍ଦ୍ୱ । କିନ୍ତୁ ସେସବୁର ରହସ୍ୟ ବୁଝାଇ ତାଙ୍କ ମନକୁ ଭାରାକ୍ରାନ୍ତ କରିବା ଅପେକ୍ଷା ତା'ର ନିଦାନ ଉପରେ ସେ ଗୁରୁତ୍ୱ ଦେଇ କହିଲେ, "ବୁଝିଲୁ ଶ୍ରଦ୍ଧା, ଅଧିକ ଚିନ୍ତା କରନା । ଯାହା କହୁଛି ଧ୍ୟାନ ଦେଇ ଶୁଣ । ଗାଧୋଇ ସାରି ଧୂଆ ପୋଛା ହୋଇଥିବା ଚୁଲିରେ ଭଲ ଡେକ୍‌ଚିରେ ଅରୁଆ ଚାଉଳ, ମୁଗଡାଲି, ନଡ଼ିଆ କୋରା ଓ ଗୁଆଘିଅ ପକାଇ ଖେଚୁଡ଼ିଟିଏ ରାନ୍ଧିବୁ । ମା'ଙ୍କ ପାଖରେ ତାକୁ ଭୋଗ କରି ସେଥିରେ ମା'ଙ୍କର ଆଶୀର୍ବାଦ ଫୁଲର ଦୁଇଟି ପାଖୁଡ଼ା ପକାଇ ଯେଉଁ ଝରକା ଆରପଟରେ ସେ ଠିଆହୋଇ ମାଗୁଛି ସେଇଠି ଗୋଟେ କଦଳୀ ପତ୍ରରେ ତାକୁ ବାଢ଼ିଦେବୁ, ନୂଆ ସରାରେ ପାଣି ରଖି କହିବୁ, "ମୁଁ

ଜାଣେନି ତୁମେ କିଏ, କେଉଁ ଅତୃପ୍ତ ସତ୍ତା । ଆଜି ଏ ପ୍ରସାଦ ତୁମ କ୍ଷୁଧାତୃପ୍ତି ପାଇଁ କେବଳ ଦେଉନାହିଁ ଏଥିରେ ଦେଇଛି ମା' ଭଗବତୀଙ୍କର ଆଶୀର୍ବାଦ । ଏହାକୁ ଗ୍ରହଣ କର, ମୁକ୍ତ ହୋଇଯାଅ ।"

ମିନର୍ଭା ଏତିକି କହି ନୀରବ ରହିଲେ ଓ ଯଥାଶୀଘ୍ର ଏହି କାର୍ଯ୍ୟ ସମାପନ କରିବା ଉଚିତ ବୋଲି କହିଲେ ।

ଶ୍ରଦ୍ଧା ଫୋନ ରଖିଲେ । ଆଉ କାହିଁକି ସେ ବିଳମ୍ବ କରିବେ । ନିର୍ଦ୍ଦେଶ ତ ତାଙ୍କୁ ମିଳିଯାଇଛି । ମିନର୍ଭାଙ୍କ ନିର୍ଦ୍ଦେଶ ସେ ବିଧିବଦ୍ଧ ଭାବରେ ପାଳନ କଲେ । କିନ୍ତୁ ଥରେ ଦୃଶ୍ୟ ହୋଇଥିବା ସେ ଅଦୃଶ୍ୟ ସତ୍ତା ଉଦ୍ଦେଶ୍ୟରେ ଶେଷ କଥାଟି କହିବାବେଳେ ସେ ନିଜେ କାନ୍ଦି ପକାଇଥିଲେ । ସତକୁସତ ତାଙ୍କର ଅନୁଭବ ହୋଇଥିଲା ଯେ କୋଉ ଜଣେ ଅଜଣା ଦୁଃଖୀ ଓ ଯନ୍ତ୍ରଣାକ୍ଲିଷ୍ଟ ସତ୍ତାକୁ ସେ ସାହାଯ୍ୟ କରୁଛନ୍ତି ।

ସେ ସ୍ୱପ୍ନର ଆଉ ପୁନରାବୃତ୍ତି ଘଟିଲା ନାହିଁ ।

ଶ୍ରଦ୍ଧାଙ୍କ ଭିତରେ ସମସ୍ତଙ୍କ ପାଇଁ ଶୁଭେଚ୍ଛା ସୃଷ୍ଟି ହେଉଥିଲା । ସେ ଏକ ଅପୂର୍ବ ଆନନ୍ଦ ନିଜ ଭିତରେ ଅନୁଭବ କରୁଥିଲେ । ମିନର୍ଭା ଆଉ ତାଙ୍କର କେବଳ ଭଉଣୀ ହୋଇ ରହିନଥିଲେ । ସେ ଭାବୁଥିଲେ ସବୁ ପ୍ରକାର ସମସ୍ୟାର ସମାଧାନସୂତ୍ର ଯେମିତି ତାଙ୍କ ପାଖରେ ଅଛି । ସେ ଏକପ୍ରକାର ନିଶ୍ଚିନ୍ତ ହୋଇଯାଇଥିଲେ ।

ପୁଣି ଦୁଇମାସ ପରେ ଯାହା ଘଟିଲା ତାହା ତାଙ୍କ ପାଇଁ କୌଣସି ଭୟର କାରଣ ନଥିଲେ ବି କିଛି ଅଶ୍ୱସ୍ତିର କାରଣ ହେଲା । ରାତି ପ୍ରାୟ ବାରଟା ହେବ । ଶ୍ରୀକାନ୍ତ ଟୁର୍‌ରେ ବାହାରକୁ ଯାଇଛନ୍ତି, ପିଲା ଦୁଇଜଣ ଶୋଇ ପଡ଼ିଲେଣି । ସେ ଦାଣ୍ଡ ଘରେ ବସି ଟିଭିରେ କିଛି ପ୍ରୋଗ୍ରାମ ଦେଖୁଥାନ୍ତି । ହଠାତ୍ ତାଙ୍କର ମନେହେଲା ତାଙ୍କ ଦାଣ୍ଡ କବାଟ ମୁକୁଳା ହୋଇଯାଇଛି । ସେ ଉଠିକରି କବାଟର ବନ୍ଦ ବ୍ୟବସ୍ଥାକୁ ପରଖି ନେଲେ ସବୁ ଠିକ୍ ଅଛି । ସେ ପୁଣି ଆସି ଟି.ଭି. ସାମ୍ନାରେ ବସିଲେ । ପ୍ରୋଗ୍ରାମରେ ଆଉ ମନ ଲାଗିଲାନି । ସେ ଟି.ଭି ବନ୍ଦ କରି ଶୋଇବା ଘରକୁ ଉଠିଯାଇ ପିଲାଙ୍କ ପାଖରେ ଶୋଇପଡ଼ିଲେ ।

ରାତି କେତେହେବ କେଜାଣି ସେ ଦେଖୁଛନ୍ତି ତାଙ୍କ ଦାଣ୍ଡ କବାଟ ଖୋଲିଯାଇଛି । ଦଳ ଦଳ ହୋଇ ଛୋଟ ଛୋଟ ପୁଅଝିଅ ଘର ଭିତରକୁ ପଶିଆସୁଛନ୍ତି । ଶ୍ରଦ୍ଧା ବିଛଣାରେ ଉଠିବସିଲେ । ସ୍ୱପ୍ନ ତୁଟି ଯାଇଥିଲା । କିନ୍ତୁ ତାଙ୍କୁ ଲାଗୁଥିଲା ସତେ ଯେମିତି ଦାଣ୍ଡଘରେ କେହି ବୁଲୁଛନ୍ତି । ସେ ମନେମନେ ମା ଭଗବତୀଙ୍କର ମନ୍ତ୍ର ଜପ କରିବାକୁ ଲାଗିଲେ ।

କାହିଁକି କେଜାଣି ତାଙ୍କୁ ଏ ଘଟଣାରେ ଆଦୌ ଭୟ ଲାଗୁନଥିଲା । ଠିକ୍ ପରଦିନ ରାତିରେ ସେଇ ସମାନ କଥା । ତାଙ୍କ ମୁକୁଳା ଦାଣ୍ଡ ଦ୍ୱାର ଦେଇ ପିଲାଗୁଡ଼ାଏ ଧସେଇ ପଶିଆସିଲେ । ସେ ଏଥର ଲକ୍ଷ୍ୟ କରି ଦେଖିଲେ ଯେ ସେସବୁ ପିଲା ଥିଲେ ଖୁବ୍ ସାନ ସାନ ଓ ସମସ୍ତେ ଲଙ୍ଗଳା । ତେଣୁ ସେମାନଙ୍କ ମଧ୍ୟରୁ ପୁଅ ଝିଅ ବାରି ହୋଇ ପଡୁଥିଲେ । ଶ୍ରଦ୍ଧା ସେମାନଙ୍କୁ ସ୍ନେହଭରା ଦୃଷ୍ଟିରେ ଚାହୁଁଥିବାବେଳେ ସେମାନେ କେମିତି ଏକ କାତର ଦୃଷ୍ଟିରେ ତାଙ୍କ ଆଡ଼େ ଚାହୁଁଥିଲେ । ସେମାନଙ୍କ ଭିତରେ ଏକ ଯନ୍ତ୍ରଣାର ଭାବ ସେ ଯେମିତି ଅନୁଭବ କରିପାରୁଥିଲେ ୀ ନବଜାତ ଶିଶୁର କୁଆଁକୁଆଁ ଶବ୍ଦ କୋଉଠୁ କ୍ଷୀଣଭାବରେ ଭାସି ଆସୁ ଆସୁ ଥପ୍ କରି ବନ୍ଦ ହୋଇଯାଉଥିଲା । ପୁଣି ଶୁଭୁଥିଲା ସେହି କାନ୍ଦଣାର ସ୍ୱର, ପୁଣି ନୀରବତା । କେମିତି ଏକ ଅଜଣା ଦୁଃଖରେ ତାଙ୍କ ଛାତି ଭିତରଟା କୋରି ହୋଇଯିବା ପରି ଲାଗୁଥିଲା ।

ନିଦ ଭାଙ୍ଗିବା ପରେ ମଧ୍ୟ ସେ ଅନୁଭବ ସେମିତି ରହିଥିଲା । ସେ ବୁଝିପାରିଲେ ଯେ ଏ ସ୍ୱପ୍ନ ସାଧାରଣ ନୁହେଁ । ଏହା ପଛରେ କିଛି ରହସ୍ୟ ନିଶ୍ଚୟ ଥିବ । ମିନର୍ଭାଙ୍କୁ ପଚାରିବା ଛଡ଼ା ତାଙ୍କର ଅନ୍ୟ ଉପାୟ ବା କ'ଣ ଅଛି ! ତେଣିକି ରାତି ପାହିବାକୁ ଅପେକ୍ଷା ।

ମିନର୍ଭା ସବୁ ଶୁଣି କହିଲେ, "ଦେଖ୍ ଶ୍ରଦ୍ଧା, ଛୋଟ ପିଲାଙ୍କୁ ସ୍ୱପ୍ନରେ ଦେଖିବା ଖୁବ୍ ଭଲ । କିନ୍ତୁ କାହାର କବାଟ ଖୋଲି ଦଳ ଦଳ ପିଲା ଧସେଇ ପଶି ଆସିବା କଥାଟା ମତେ ଠିକ୍ ଲାଗୁନି । ତେବେ ପ୍ରତି ଘଟଣା ପଛରେ ଥିବା ଠିକ୍ କାରଣଟି ନିରୂପଣ କରିବା ସହଜ ନୁହେଁ, ଅଯଥା ଅନୁମାନ ମଧ୍ୟ ଉଚିତ ନୁହେଁ । ଗୋଟେ କାମ କର ଦାଣ୍ଡ କବାଟରେ ଭଗବତୀଙ୍କର ମନ୍ତ୍ର ଆଙ୍ଗୁଠିରେ ତିନିଥର ଲେଖି ଦେ, ମା'ଙ୍କୁ ପ୍ରାର୍ଥନା କର, କୌଣସି ବିରୋଧୀ ଶକ୍ତି ଯେପରି ତୋର କ୍ଷତି ନ କରନ୍ତି । କିନ୍ତୁ ସେ ଛୁଆମାନେ ଯିଏ ହୁଅନ୍ତୁନା କାହିଁକି ତାଙ୍କ ପ୍ରତି ମନରେ କୌଣସି ଭୟର ଭାବନା ରଖନା । ବରଂ ମା'ଙ୍କ ପାଖରେ ସେମାନଙ୍କ ପାଇଁ ଖୁବ୍ ଏକାଗ୍ର ଭାବରେ ପ୍ରାର୍ଥନା କର । ମତେ ଲାଗୁଛି ସେ ଅଜଣା ଛୁଆଗୁଡ଼ିକ ତୋ'ଠାରୁ କିଛି ସହାୟତା ହୁଏତ ଚାହୁଁଛନ୍ତି । ମନେ ମନେ ସେମାନଙ୍କୁ ମା' ଭଗବତୀଙ୍କ ପାଖରେ ସମର୍ପଣ କରିଦେ । ସେ ତାଙ୍କ କଥା ବୁଝିବେ ।"

ଶ୍ରଦ୍ଧା ତାହାହିଁ କଲେ । ଅନେକ ଦିନ ଏ ଭିତରେ ବିତିଗଲାଣି । ସେପରି କୌଣସି ସ୍ୱପ୍ନ ସେ ଆଉ ଦେଖିନାହାନ୍ତି ।

କିନ୍ତୁ ଏ ବିଷୟରେ ଶ୍ରଦ୍ଧାଙ୍କ ଅପେକ୍ଷା ଅଧିକ ଚିନ୍ତା କରୁଥିଲେ ମିନର୍ଭା । ବିଶ୍ୱନାଥ ନନାଙ୍କର ବାରଣ ସତ୍ତ୍ୱେ ସେ ନୂଆ ଘରକୁ ଯିବା ପାଇଁ ସେ ହିଁ ଭଗବତୀଙ୍କୁ ଭରସା କରି ସାହସ ଦେଇଥିଲେ । ତେଣୁ ସେପଟେ ଘଟୁଥିବା ଘଟଣାର କିଛି ସମ୍ଭାବ୍ୟ ବ୍ୟାଖ୍ୟା ସେ ଦେଉଥିଲେ ବି ସେ ବିଷୟରେ ନିଜେ ଗଭୀର ଭାବରେ ଚିନ୍ତା କରୁଥିଲେ । ଘଟଣା ପଛର ସତ୍ୟକୁ ବୁଝିବାର ଚେଷ୍ଟା କରୁଥିଲେ । ସେ ଜାଣନ୍ତି ଏମିତି କିଛି କଥା ସ୍ୱପ୍ନ ହୋଇ ଆସେ ଯାହାକୁ କେବଳ ସ୍ୱପ୍ନ କହି ଉଡ଼ାଇ ଦେଇହୁଏନା । ଭିନ୍ନ ଏକ ସ୍ତରର କିଛି ସମ୍ବାଦ କେତେକ ବ୍ୟକ୍ତିବିଶେଷଙ୍କ ପାଖକୁ ଆସିଥାଏ । ସେମାନଙ୍କ ମଧ୍ୟରୁ କେହି ସେ ସୂତ୍ର ଧରିପାରେ କେହି ଆଦୌ ଧରିପାରେନା । ସେ କ୍ଷେତ୍ରରେ ପୁଣି ସେ ଭିନ୍ନ ମାଧ୍ୟମ ଖୋଜିଥାଏ । ଦେଖାଯାଉ ଶ୍ରଦ୍ଧା କାହାପାଇଁ ଓ କେଉଁଥିପାଇଁ ମାଧ୍ୟମ ହେଉଛି !

ସେଦିନ ଘଣ୍ଟାରେ ବାଜିଛି ମାତ୍ର ଆଠଟା । ସନ୍ଧ୍ୟାବେଳ ଅତିକ୍ରାନ୍ତ, ରାତି ଆହୁରି ବାକି ଅଛି । ମିନର୍ଭା ତାଙ୍କ ପଢ଼ା ଟେବୁଲ ପାଖରେ ବସି କିଛି ପଢୁଛନ୍ତି ତାଙ୍କ ମୋବାଇଲ ରିଙ୍ଗ ହେଲା । ସ୍କ୍ରିନରେ ସନ୍ଧ୍ୟାର ନାଁ । ଫୋନ ଅନ୍ କରିବା ପୂର୍ବରୁ ହିଁ ମିନର୍ଭା ବୁଝିଯାଇଥିଲେ ନିଶ୍ଚୟ କିଛି ଅସ୍ୱାଭାବିକ ଘଟଣା ଘଟିଛି ।

ସେ ଫୋନ ଉଠାଇ କିଛି କହିବା ପୂର୍ବରୁ ଶ୍ରଦ୍ଧା ବ୍ୟାକୁଳ ଭାବରେ କହିଲେ, "ଅପା, ଏଇମାତ୍ର ଏକ ବଡ଼ ଅଦ୍ଭୁତ ଘଟଣା ଘଟିଲା । ଏପର୍ଯ୍ୟନ୍ତ ଯାଏ ସବୁ ଥିଲା ମୋର ସ୍ୱପ୍ନ ଭିତରେ ସୀମିତ । ଏବେ କିନ୍ତୁ କିଛି ଦୃଶ୍ୟ ହୋଇଗଲା ମୋର ଖୋଲା ଆଖିରେ । ମତେ ବହୁତ ବ୍ୟସ୍ତ ଲାଗୁଛି । ଭୟ ବି ଲାଗୁଛି ।"

ତାଙ୍କ ସ୍ୱରରୁ ଭୟ, ଉଦ୍‌ବେଗ ବାରି ହୋଇ ପଡୁଥିଲେ ବି ମିନର୍ଭା ଶାନ୍ତ କଣ୍ଠରେ କହିଲେ, "କ'ଣ ହେଲା ମତେ କହ । ଏତେ ବିଚଳିତ ହେଲେ ଘଟଣା ଯାହା ଘଟିଛି ତାହା ଅଯଥାରେ ବହୁଗୁଣିତ ହୋଇଯିବ ।"

ଏଥର ଶ୍ରଦ୍ଧା ଯେପରି ଟିକେ ସହଜରେ ନିଃଶ୍ୱାସ ନେଲେ । ସେ କଥାଟି ବର୍ଣ୍ଣନା କରି କହିଲେ, "ଅପା ସନ୍ଧ୍ୟାରେ ମୁଁ ନିୟମିତ କରୁଥିବା ଧ୍ୟାନ ପ୍ରାର୍ଥନା ଆଜି ଟିକେ ବିଳମ୍ବ ହୋଇଯାଇଥିଲା । ତେବେ ପ୍ରତିଦିନ ପରି ମା ଭଗବତୀଙ୍କର ପାଖରେ କର୍ପୂର ଆଳତି କରି ମୁଁ ସନ୍ଧ୍ୟା ଉପାସନା ଶେଷ କରେ । ଆଳତି କରିଥିବା କର୍ପୂର ଖଣ୍ଡକୁ ଥାଳିଆରେ ରଖି ବାହାରେ ଥିବା ଚଉରା ମୂଳରେ ରଖିଦିଏ । ଆଜି ମଧ୍ୟ ତାହାହିଁ କଲି । କିନ୍ତୁ ଚଉରା ମୂଳରେ ରଖି ବୃନ୍ଦାବତୀଙ୍କୁ ପ୍ରଣାମ କରି ଉଠିବା ବେଳକୁ ଦେଖିଲି ସେ କର୍ପୂର ଖଣ୍ଡର ଚାରିପାଖରେ ଖୁବ୍ ଟିକି ଟିକି କିଛି ଜିନିଷ ଆସି କୋଉଠୁ ପଡ଼ିଯାଇଛି । ମୁଁ ତାକୁ

ନିରେଖି ଦେଖିଲି । ...ଅପା ସେସବ୍ ଦିଶିଲା ଛୋଟ ପିଲାଙ୍କର ଖପୁରି ଓ କୁନି କୁନି ହାଡ଼ ଖଣ୍ଡ ପରି । କର୍ପୂର ସହିତ ସେସବୁ ମଧ୍ୟ ଜଳିବାକୁ ଆରମ୍ଭ କରିଥିଲେ । ମୁଁ ସେଇଠି ସେମିତି ଛିଡ଼ା ହୋଇଥାଏ । ମୋର ଗୋଡ଼ହାତ ଅଚଳ ହୋଇଯିବା ପରି ଲାଗିଲେ ବି ଖୁବ୍ ସଚେତନ ଭାବରେ ଘଟଣାକୁ ଲକ୍ଷ୍ୟ କରୁଥାଏ । ସେସବୁ ଜଳିଯିବା ପରେ ନୂଆ ଆସି ଜମି ଯାଉଥାଏ । କର୍ପୂର ଖଣ୍ଡ ଲିଭିବା ପର୍ଯ୍ୟନ୍ତ ସେସବୁ ସେମିତି ଚାଲିଲା ।''

ଶ୍ରଦ୍ଧା ନୀରବ ହେଲେ, ଏପଟେ ମିନର୍ଭା ମଧ୍ୟ ନୀରବ । ଏ ଅଭାବିତ ଘଟଣା ଦୁହିଁଙ୍କୁ ବିଚଳିତ କରିପକାଇଲା ।

ପୁଣି କିଛି ସମୟ ପରେ ଶୁଣାଗଲା ଶ୍ରଦ୍ଧାଙ୍କର ସ୍ୱର, "ଅପା, ଏସବୁର ଅର୍ଥ କ'ଣ ? ଏପର୍ଯ୍ୟନ୍ତ କିଛି ସ୍ୱପ୍ନରେ ଘଟୁଥିଲା କିନ୍ତୁ ଆଜି ତ ଖୋଲା ଆଖିରେ ଘଟିଗଲା । ମୁଁ କିଛି ବୁଝିପାରୁନି । ଏପରି କାହିଁକି ହେଉଛି ।"

"ଦେଖ୍ ଶ୍ରଦ୍ଧା ଆମେ କେହି ବି ସବୁ କଥା ବୁଝି ପାରୁନା । ଆମର ସାଧାରଣ ଜୀବନରେ ଘଟୁଥିବା ଅନେକ ଘଟଣାର ସୂତ୍ର ତ ଆମେ ଧରିପାରୁନା, ଇଏତ ଅନ୍ୟ ଏକ ସ୍ତରର କଥା । ଏହାର ରହସ୍ୟ ବୁଝିବା ସହଜ କଥା ନୁହେଁ । ତୁ ଯା ତୋର ଯାହା କାମ କରିବା କଥା କର । ମତେ ସମୟ ଦେ । ଏବେ ମୋ ଭିତରକୁ ଯେଉଁ ଉତ୍ତର ଆସୁଛି ତାହା କେତେଦୂର ଯଥାର୍ଥ ମୁଁ ବିବେଚନା କଲେ ହିଁ କହିବି । ତୁ ଆଦୌ ବ୍ୟସ୍ତ ହ'ନା । ପ୍ରଶ୍ନ ଯଦି ହୃଦୟକୁ ଆଲୋଡ଼ିତ କରିଥାଏ ସେ ପ୍ରଶ୍ନର ଉତ୍ତର ଆପେ ଆପେ ଆସିବ । କାଲି କଥା ହେବା ।"

ମିନର୍ଭା ଏପଟରୁ ଫୋନ ରଖିଦେଲେ। ଶ୍ରଦ୍ଧା ବାଧ୍ୟହୋଇ ଫୋନ ରଖିଲେ । ତାଙ୍କର ଇଚ୍ଛା ହେଉଥିଲା ଆଉ କିଛି ସମୟ ମିନର୍ଭାଙ୍କ ସାଙ୍ଗରେ କଥା ହୋଇଥିଲେ ତାଙ୍କୁ ଭଲ ଲାଗିଥାନ୍ତା । କିନ୍ତୁ ଫୋନ ରଖିବା ପରେ ହିଁ ସେ ଅନୁଭବ କଲେ ତାଙ୍କର ପୂର୍ବ ଉଦ୍‌ବେଗ ବା ଅସ୍ଥିରତା ଆଉ ନାହିଁ । ଅବଶ୍ୟ ସବୁବେଳେ ମିନର୍ଭାଙ୍କର କଥା ବା ଉପଦେଶ ତାଙ୍କ ପାଇଁ ଚନ୍ଦନର କାମ କରିଥାଏ ।

ପରଦିନ ଦି'ପହରେ ଶ୍ରଦ୍ଧା ଏକା ଥିବାବେଳେ ତାଙ୍କ ଘର ଖୋଜି ଖୋଜି ଆସି ପହଞ୍ଚିଲେ ଏକଦା ସେଇ ଅଞ୍ଚଳରେ କାମ କରୁଥିବା ତାର ସମ୍ପର୍କୀୟ ମଉସା ଦିନବନ୍ଧୁ ଦାସ ।

ସେ ଭିତରକୁ ପଶୁ ପଶୁ ଶ୍ରଦ୍ଧାଙ୍କୁ ଉଦ୍ଦେଶ୍ୟ କରି କହିଲେ, "ଆଛା ଝିଅ ତୁମେମାନେ ଶେଷରେ ଏଇଠି ଆସି ରହିଲ ?" ତାଙ୍କ ସ୍ୱରରେ କେମିତି ଏକ ଅଡୁଆ କଥାର ଆଭାସ ।

ଗତ ଦିନରୁ ଶ୍ରଦ୍ଧାଙ୍କ ଭିତରେ ଟିକେ ଚାପିହୋଇ ରହିଥିବା ଉତ୍କଣ୍ଠା ସେହିକ୍ଷଣ ମୁଣ୍ଡଟେକି ଉଠିଲା । ସେ ଏକପ୍ରକାର ବ୍ୟସ୍ତହୋଇ କହିଲେ, "କ'ଣ ହେଲାକି ମଉସା ? ଆପଣ ତ ଆମ ପୁରୁଣା ଘର ଦେଖିଛନ୍ତି । ଭାଙ୍ଗିରୁଜି ଯାଇଥିଲା । ଏବେ ସରକାର ଏ ନୂଆ କ୍ୱାର୍ଟର ସବୁ କରି ଲୋକଙ୍କୁ ଆଲଟ୍ କଲେ । ନୂଆଘରେ କ'ଣ ଅସୁବିଧା ହେଲା ?"

ଦିନବନ୍ଧୁ ଦାଣ୍ଡଘରେ ଥିବା ଚୌକୀରେ ବସିପଡ଼ିଲେ । ପାଣି ଗ୍ଲାସଟେ ପିଇ କହିଲେ, "ଝିଅ, ନୂଆଘର ଠିକ୍ ଅଛି । କିନ୍ତୁ ଯେଉଁ ଜମି ଖଣ୍ଡକ ଉପରେ ତୋର ଓ ଆଖପାଖର ଦୁଇ ଚାରିଘର ରହିଛି ସେ ଜମି କଣ ଥିଲା ଜାଣିଛୁ ?"

ଶ୍ରଦ୍ଧା କାବାହୋଇ ତାଙ୍କ ପରକଥାକୁ ଅପେକ୍ଷା କରୁଥିବାବେଳେ ସେ କହିଲେ "ଏଇ ଜାଗା ଖଣ୍ଡକ ଗୋଟେ ପୋଖରୀ ପରି ଥିଲା । ଟିକେ ଦୂରରେ ଥିଲା ଗୋଟେ ପ୍ରାଇଭେଟ ନର୍ସିଂ ହୋମ । ସେଠି କେବଳ ଚିକିତ୍ସା ନାଁରେ ଚାଲିଥିଲା ଅବୈଧ ଗର୍ଭପାତ । ମରିଥିବା, ବଞ୍ଚିଥିବା ପିଲାଙ୍କୁ ଏଇ ପରିତ୍ୟକ୍ତ ପୋଖରୀରେ ଫୋପାଡ଼ି ଦିଆଯାଉଥିଲା । କୋଉ ଦୂରରୁ ଏଥିପାଇଁ ସବୁ ବୟସର ସ୍ତ୍ରୀଲୋକ, ବେଶିଭାଗ ଅବିବାହିତା ଝିଅ ଏଠାକୁ ଆସନ୍ତି । ଆଖପାଖର ଲୋକେ ସବୁ ଜାଣନ୍ତି । କିନ୍ତୁ ନର୍ସିଂହୋମ୍ ମାଲିକ କିଛି ଗୁଣ୍ଡାଙ୍କୁ ପଇସା ଦେଇ ହାତରେ ରଖିଥାଏ । ଯିଏ ଏସବୁ ବିରୋଧରେ ପାଟି ଖୋଲିବ ତା' ପାଟି ଚୁପ୍ କରାଇଦେବାର କୌଶଳ ସେମାନଙ୍କୁ ଜଣାଥିଲା ।"

"ମଉସା ଇଏ କେବେକାର କଥା ? ସେ ନର୍ସିଂହୋମ କୋଉଠି ?" ଉଦଗ୍ରୀବ ହୋଇ ପଚାରିଲେ ଶ୍ରଦ୍ଧା ।

"ଏଇ ଆଠ ଦଶ ବର୍ଷ ତଳେ ଏଠି ଏସବୁ ଚାଲୁଥିଲା । କ'ଣ କେମିତି ଦିନେ ଖବରକାଗଜରେ ଏ କଳାକାମର କଥା ବାହାରି ପଡ଼ିଲା । ସରକାର ଜାଗିଗଲେ । ତେଣିକି ପୁଲିସବାଲା, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଲାଗିଗଲେ କାମରେ । ନର୍ସିଂହୋମ ବନ୍ଦ ହୋଇଗଲା । କିଏ ସବୁ ଗିରଫ ହେଲେ କାଗଜରେ ଫଟୋ ବାହାରିଥିଲା । ତେଣିକି କ'ଣ ହେଲା କେଜାଣି ! କିଏ ବା ଖବର ରଖୁଛି । ସେହିଦିନୁ ଏ ପୋଖରୀ ପୋତିହୋଇ ଚାଲିଥିଲା । ଏସବୁ ହେଲା ସରକାରୀ ଜାଗା । ଖାଲଖମା ପୋତି ସରକାର ଘର କରିଦେଲେ । ଲୋକ ରହିଲେ । କିଏ ଜାଣୁଛି ଏଠି କ'ଣ ଥିଲା । ତୁ ଏଠି ଅଛୁ । ମୁଁ କଥାଟା ଜାଣିଥିବାରୁ କହିଦେଲି । ଆଚ୍ଛା ଶ୍ରୀକାନ୍ତ କୋଉଦିନ ଫେରିବ ? ତା' ପାଖରେ ଟିକେ କାମ ଥିଲା ?"

ଶ୍ରଦ୍ଧାଙ୍କ ଭିତରଟା କେମିତି ଜାମ ହୋଇଯାଇଥିଲା । ସେ ଆଉ କିଛି ନ ପଚାରି ମଉସାଙ୍କ ଚର୍ଚ୍ଚା କଲେ । କିନ୍ତୁ ଶ୍ରୀକାନ୍ତ ଚାରିଦିନ ପରେ ଆସିବା କଥା ଜାଣି ଦିନବନ୍ଧୁ ସେହିକ୍ଷଣି ଫେରିଗଲେ ।

ଶ୍ରଦ୍ଧାଙ୍କର ଅନ୍ୟ କିଛି କାମରେ ମନ ଲାଗିଲାନି । ଏକ ଅଜଣା ଦୁଃଖରେ ସେ ଘାରିହେବାକୁ ଲାଗିଲେ । ମଉସା କହିଥିବା ଘଟଣା ସହ ତାଙ୍କର ସ୍ୱପ୍ନ ଓ ଦେଖାଦୃଶ୍ୟକୁ ମିଶାଇ ସେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରୁନଥିଲେ । ମଉସାଙ୍କଠାରୁ ଯାହା ଶୁଣିଲେ, ଜଣାଗଲା ସେ ଘରର ନିଅଁ ତଳେ ରହିଛି କେତେନା କେତେ ମୃତ ଶିଶୁଙ୍କର କଙ୍କାଳ । କିନ୍ତୁ ତାଙ୍କ ଘରକୁ ସ୍ୱପ୍ନରେ ଧସେଇ ପଶିଆସୁଥିବା ସେଇ ଦଳଦଳ ଲଙ୍ଗଳା ଶିଶୁ କ'ଣ ସେଇମାନେ !! ତାଙ୍କ ଘରକୁ ବା ସେମାନେ କାହିଁକି ଆକୃଷ୍ଟ ହେଉଛନ୍ତି !! ତାଙ୍କର ଆଳତି କର୍ପୂର ସହ ଜଳି ଯାଉଥିବା ଶିଶୁମାନଙ୍କର ଖପୁରି ଓ ହାଡ଼ଖଣ୍ଡର ପୁଣି ରହସ୍ୟ କ'ଣ ? ଏ ଅଭିଜ୍ଞତା କେବଳ ତାଙ୍କରି ହେଉଛି ନା ଅନ୍ୟ ଯେଉଁମାନେ ପାଖ କ୍ୱାର୍ଟରରେ ସବୁ ଅଛନ୍ତି ସେମାନଙ୍କର ମଧ୍ୟ ହେଉଛି ?  ପାଖ ପଡ଼ୋଶୀଙ୍କୁ ସେ ଜାଣନ୍ତି । ପଚାରିବେ କି କାହାକୁ !

ଏ ଭିତରେ ନୂଆଘରେ ଘଟିଯାଇଥିବା ଏସବୁ ଘଟଣା ସମ୍ପର୍କରେ କେହି ବି କିଛି ସୂଚନା ପାଇନଥିଲେ । ନୂଆ ଘରକୁ ଆସିବା ପରଠାରୁ ଶ୍ରଦ୍ଧାଙ୍କର ଶାଶୂଶ୍ୱଶୁର ଓ ତାଙ୍କ ମା ମଧ୍ୟ ଆସି କିଛିଦିନ ଲେଖାଏଁ ରହିଯାଇଛନ୍ତି । ଶ୍ରଦ୍ଧା ଭାବୁଥିଲେ ସେମାନଙ୍କ ଭିତରୁ କେହି ହୁଏତ ସେପରି କିଛି ସ୍ୱପ୍ନ ଦେଖିପାରନ୍ତି । ବିଶ୍ୱନାଥ ନନାଙ୍କ ସହ ତାଙ୍କ ଶ୍ୱଶୁରତ ଖୁବ୍ ଘନିଷ୍ଠ ଥିଲେ । ବର୍ଷ ବର୍ଷ ଧରି ତାଙ୍କ ଘରେ ନନା ପୂଜାପାଠ କରିବା ସହ ପ୍ରତି ସଂକ୍ରାନ୍ତିରେ ତାଙ୍କ ଘରେ ହୋମ କରୁଥିଲେ । ତେଣୁ ଶ୍ୱଶୁର ଯେତେବେଳେ ଆସି ଏ ନୂଆ ଘରେ ରହିଛନ୍ତି ତାଙ୍କୁ ନନାଙ୍କଠାରୁ ନିଶ୍ଚୟ କିଛି ସଂକେତ ମିଳିବ । ତା'ଛଡ଼ା ତାଙ୍କ ମା'ତ ବହୁତ ପୂଜାପାଠ, ଓଷାବ୍ରତ କରେ । ସକାଳସଂଜେ ଠାକୁରଙ୍କ ପାଖରେ ଘଡିଏ ଲେଖାଁ ବସି କ'ଣ ସବୁ ଜପୁଥାଏ, ଜଗୁଥାଏ । ସେ ନିଶ୍ଚୟ କିଛି ଜାଣିପାରିବ ।

କିନ୍ତୁ ନାଁ, କାହାରି କ୍ଷେତ୍ରରେ ସେପରି କିଛି ଘଟିନଥିଲା । ସେମାନେ ବେଶ୍ ଖୁସିରେ ତାଙ୍କର ଏ ନୂଆଘରେ ସମୟ ବିତାଇ ଯାଇଛନ୍ତି । ଶ୍ରଦ୍ଧା ମଧ୍ୟ ତାଙ୍କର ଏପ୍ରକାର ଅଭିଜ୍ଞତା ସମ୍ପର୍କରେ କାହାରିକୁ କିଛି ସୂଚନା ଦେଇନଥିଲେ । ସେ ଜାଣିଥିଲେ ସେମାନଙ୍କ ଭିତରୁ ଯଦି କେହି କିଛି ଜାଣେ ପରିସ୍ଥିତି ଜଟିଳ ହେବ । ବିଶେଷକରି ଦିନବନ୍ଧୁ ମଉସା କହିଥିବା କଥା ଶୁଣିଥିଲେ, ସେମାନେ ଏ ଘରକୁ କେହି ଆସିବାର ନାଁ ଧରିନଥାନ୍ତେ, ଓଲଟା ଏ ଘର ବଦଳାଇବାକୁ ଜିଦ୍ କରି ନାନା ଅଶାନ୍ତି ସୃଷ୍ଟି କରିଥାନ୍ତେ । ଅଜ୍ଞତା ତ ଏକପ୍ରକାର ଶାନ୍ତିର କାରଣ । ସେମାନଙ୍କୁ ଏ ବୟସରେ ଆଦୌ ବ୍ୟସ୍ତ କରିବା ଠିକ୍ ନୁହେଁ ।

ନାଁ ସେ ଶ୍ରୀକାନ୍ତଙ୍କୁ ମଧ୍ୟ କିଛି କହିବେ ନାହିଁ । ମୁହଁରେ ଟାଣ ଦେଖେଇଲେ ବି ସେ ନିଶ୍ଚୟ ଶଙ୍କାଗ୍ରସ୍ତ ହେବେ । କେବଳ ଶୁଣା କଥାରେ ତ ମାନସିକ ଶାନ୍ତି ନଷ୍ଟ ହୋଇଯିବ, ଆଉ ତାଙ୍କ ଅଭିଜ୍ଞତା କଥା ଶୁଣିଲେ ପୂରା ବିପର୍ଯ୍ୟୟ ଘଟିଯିବ ।

କିନ୍ତୁ ନିଜ କଥା ସେ କ'ଣ କରିବେ ! ନିଜ ଅଭିଜ୍ଞତାକୁ ତ ସେ ଅସ୍ୱୀକାର କରିପାରିବେ ନାହିଁ । କିଛି ସେମିତି ଘଟିନାହିଁ ବା ଘଟିବ ନାହିଁ କଥାକୁ କ'ଣ ସେ ବିଶ୍ୱାସ କରି ନିଶ୍ଚିନ୍ତରେ ରହିପାରିବେ ।

ଏବେ ତାଙ୍କର କେବଳ ବିଶ୍ୱନାଥ ନନାଙ୍କର ବାରଣ କଥା ମନେ ପଡୁଥିଲା । ଏ ଘର ମାଟିରେ ଏତେ ଅନର୍ଥ ହୋଇଛି ସେ ଜାଣି ତାଙ୍କୁ ଏଠାକୁ ନ ଆସିବା ପାଇଁ ସ୍ୱପ୍ନରେ ଜଣାଇଥିଲେ । ଯାହା ତ ହେଲା ହେଲା । ଏବେ କ'ଣ କରିବେ ସେ ! ମିନର୍ଭା ଅପା ଏକଥା ତ ଜାଣିନାହାନ୍ତି । ଜାଣିଲେ ବା ସେ କ'ଣ କରିପାରିବେ ! କ୍'ଣ ବା କହିବେ ଏ କଥାରେ !

ଏମିତିରେ ଦିନ ବିତିଗଲା । ସନ୍ଧ୍ୟା ହେଲା । ଶ୍ରଦ୍ଧା ଯଥାରୀତି ତାଙ୍କର ସନ୍ଧ୍ୟା ଉପାସନା କଲେ । କର୍ପୂର ଆଳିତି ସାରି କର୍ପୂରଦାନୀକୁ ନେଇ ତୁଳସୀ ଚଉରାମୂଳେ ରଖି ପ୍ରଣାମ କଲେ । ମନକୁ ଟାଣ କରି ଜଳୁଥିବା କର୍ପୂର ଖଣ୍ଡକୁ ଚାହିଁ ରହିଲେ । କର୍ପୂର ଅଳ୍ପ ସମୟ ଭିତରେ ଜଳିକରି ଲିଭିଗଲା । ପୂର୍ବ ଦୃଶ୍ୟର ପୁନରାବୃତ୍ତି ହେଲାନାହିଁ ।

ମୋବାଇଲ ଫୋନ ରିଙ୍ଗ ହୋଇହୋଇ କଟିଗଲା । ସେ ଆସି ଦେଖିଲେ ମିନର୍ଭା ଅପା କରିଛନ୍ତି । ଶ୍ରଦ୍ଧା ଫୋନ ଧରି ଶୋଇବା ଘରକୁ ଚାଲି ଆସିଲେ ! ପିଲାମାନେ ଦାଣ୍ଡ ଘରେ ବସି ଟି.ଭି. ଲଗାଇଛନ୍ତି । ତା'ଛଡ଼ା ତାଙ୍କର ମିନର୍ଭା ଅପାଙ୍କ ସହିତ ହେଉଥିବା କୌଣସି କଥା ସେମାନଙ୍କ କାନରେ ନପଡୁ ବୋଲି ସେ ସଜାଗ ରହୁଥିଲେ ।

ଘର ଭିତରେ ବସି ଫୋନ ଲଗାଇଲେ । ସେ ପଟରୁ ମିନର୍ଭା ଅପା କହିଲେ "କ'ଣ ଚଉରାମୂଳରେ ଠିଆହୋଇ ଜଳୁଥିବା କର୍ପୂରକୁ ଦେଖୁଥିଲୁ ?"

ଶ୍ରଦ୍ଧା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଅପା ତୁମେ କିପରି ଜାଣିଲ ?"

ସେପଟରୁ ହସି ହସି ମିନର୍ଭା କହିଲେ "ମୁଁ କିପରି ଜାଣିଲି କ'ଣ । ଗତକାଲି ରାତିରୁ ତୁ ତ ସେଇ କଥା କେବଳ ଭାବୁଥିବୁ ନା ।"

"ହଁ, ଅପା କାଲିଠାରୁ ଯେଉଁ ଚିନ୍ତାରେ ପଡ଼ିଥିଲି ତା'ର କାରଣ ଆଜି ଜାଣିଲି ।" ତେଣିକି ଦିନବନ୍ଧୁଙ୍କଠାରୁ ଶୁଣିଥିବା କଥା ସେ ମିନର୍ଭାଙ୍କୁ କହିଲେ । ଉଭୟ ପଟରେ କିଛି

ସମୟର ନୀରବତା ପରେ ପୁଣି କଥା ଆରମ୍ଭ କଲେ ଶ୍ରଦ୍ଧା, "ଅପା ମତେ ଏବେ ବହୁତ ଅଶ୍ୱସ୍ତି ଲାଗୁଛି । ଏ ଘରେ କ'ଣ ସବୁ ଘଟୁଛି ମୁଁ ଅନ୍ୟ କାହାକୁ କହିପାରୁନି, ଏଣେ ଶାନ୍ତିରେ ରହି ମଧ୍ୟ ପାରୁନି । ଏ ଘର କେମିତି ଛାଡ଼ିବି କୁହ ।''

ଏଥର ମିନର୍ଭା ଦୃଢ଼ ଗଳାରେ କହିଲେ, "ଘରଟା ଛାଡ଼ିଦେବୁ ମାନେ କ'ଣ ? ତୁ ଛାଡ଼ିଲେ ଅନ୍ୟ କେହି ଆସି ରହିବ । ସମସ୍ୟା ଯାହା ତାହା ହିଁ ରହିବ । ତା'ର କିଛି ସମାଧାନ ହେବକି ?''

– ''ତେବେ ମୁଁ କ'ଣ କରିପାରିବି ?'' ପଚାରିଲେ ଶ୍ରଦ୍ଧା ।

– ''ଶୁଣ, ଯାହା କରିବା କଥା ତତେ ହିଁ କରିବାକୁ ହେବ । ସେଦିନ ତୁ ଯେଉଁ ଦୁଇଟି ଘଟଣା କଥା କହିଲୁ, ସେଥିରୁ ଏକଥା ମୁଁ ଅନୁମାନ କରିପାରିଥିଲି । କିନ୍ତୁ ମୁଁ କିଛି ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ରହସ୍ୟ ଖୋଲିଗଲା । ଭଲ ହେଲା । ଦେଖ୍ ଏବେ ତ ଜାଣିଲୁ ସେ ଛୁଆମାନେ କିଏ । ନିଷ୍ଠୁର ମଣିଷର ଅପକର୍ମର ଫଳ । ତଥାକଥିତ ମା'ବାପାମାନେ ଜନ୍ମ ପୂର୍ବରୁ ଜୋର କରି ଗର୍ଭପାତ କରିଆରେ ହେଉ କିମ୍ବା ଜନ୍ମ ପରେ ହତ୍ୟାକରି ବା ଜୀବିତ ଅବସ୍ଥାରେ ହେଉ ନାଳନର୍ଦ୍ଦମାରେ ଫୋପାଡ଼ି ଦିଅନ୍ତି ନିଜର ଜନ୍ମିତ ସନ୍ତାନକୁ ଏକ ଅବାଂଛିତ ମାଂସପିଣ୍ଡ ଭାବରେ । ସେମାନେ ଜାଣନ୍ତି ନାହିଁ ଯେ ସେ ପିଣ୍ଡ ଭିତରେ ବିକଶିତ ହୋଇସାରିଥିବା ପ୍ରାଣସତ୍ତାର କଥା । ଆକସ୍ମିକ ଭାବରେ ନଷ୍ଟ କରିଦିଆଯାଉଥିବା ଶରୀର ଭିତରୁ ବାଧ୍ୟହୋଇ ସେ ବାହାରି ଆସେ କିନ୍ତୁ ବୁଝିପାରେନା ସେ କୁଆଡ଼େ ଯିବ । ସେଇଠି ସେ ଖୁବ୍ ଅସହାୟ ଭାବରେ ଘୂରି ବୁଲେ । ବହୁତ କଷ୍ଟ ପାଏ । ଏହା ଯେ ସବୁ କ୍ଷେତ୍ରରେ ହୁଏ ତା' ନୁହେଁ କିନ୍ତୁ ପରିଣତ ରୂପ ନେଇ ସାରିଥିବା ଶିଶୁ କ୍ଷେତ୍ରରେ ହୁଏ ।"

ଶ୍ରଦ୍ଧା ବିମୂଢ଼ ହୋଇ ଶୁଣୁଥିଲେ ମିନର୍ଭାଙ୍କ କଥା । ଏସବୁ କଥା ତ ସେ ଆଦୌ କିଛି ଜାଣିନଥିଲେ । ଛାତି ଭିତରେ କୋହଟାଏ ସତେ ଯେପରି ବାହାରକୁ ଆସିବାର ବାଟ ନପାଇ ଘୂରିବୁଲୁଛି । ସେ କେମିତି ଆକ୍ତାମାକ୍ତା ହୋଇ ଯାଉଥିଲେ । କିନ୍ତୁ ହଠାତ୍ କୋହଟା ଏକ ପ୍ରଚଣ୍ଡ କ୍ରୋଧର ରୂପ ନେଇ ବାହାରକୁ ବାହାରି ଆସିଲା । ଏପରି କ୍ରୂର କର୍ମ କରୁଥିବା ନାରୀ ପୁରୁଷଙ୍କ ଉଦ୍ଦେଶ୍ୟରେ ସେ ଅଭିସଂପାତ ବର୍ଷଣ କରିପକାଇଲେ ।

ମିନର୍ଭା ତାଙ୍କୁ ଆଉ ବେଶି କିଛି କହିବାରୁ ନିବୃତ୍ତ କରି କହିଲେ, "ଶ୍ରଦ୍ଧା ତୁ ଆତତାୟୀମାନଙ୍କୁ କିଛି ଅଯଥା ଅଭିସଂପାତ ଦେନା । ବୁଦ୍ଧଦେବ କହିଥିଲେ ଶଗଡ଼ର ଚକ ବଳଦର ପାଦକୁ ଅନୁସରଣ କରି ଯିବା ପରି କର୍ମଜନିତ ଫଳ ମଧ୍ୟ ମଣିଷକୁ

ଅନୁସରଣ କରିଥାଏ । ଏଥିରୁ କାହାରି ନିଷ୍କୃତି ନାହିଁ । ତୁ ଅଯଥାରେ ଅଶାନ୍ତ ହ'ନା । ତୁ ଯେଉଁମାନଙ୍କ ପାଇଁ କରିବା କଥା କରିଛୁ ଏବଂ ତାହା ଫଳପ୍ରଦ ମଧ୍ୟ ହୋଇଛି । ତାହାହିଁ କରିଚାଲ ।''

"କାହାପାଇଁ କ'ଣ କରିଛି ମୁଁ? କ'ଣ ଫଳପ୍ରଦ ହୋଇଛି ? ମୁଁ ତ କିଛି ବୁଝିପାରୁନି ।" ଚକିତ ହୋଇ ପଚାରିଲେ ଶ୍ରଦ୍ଧା ।

ସେପଟରୁ ପ୍ରତ୍ୟୟର ସହ କହିଲେ ମିନର୍ଭା, ଶୁଣ ବୁଝିବା ପାଇଁ ଚେଷ୍ଟା କର । ଏବେ ତ ତୁ ଜାଣିସାରିଛୁ ତୁ ଥିବା ଘରର ଜମି ରହସ୍ୟ । ଛୋଟଛୋଟ ଶିଶୁଙ୍କର ପ୍ରାଣସତ୍ତା ବିକଳ ହୋଇ ସେଠି ଘୂରି ବୁଲୁଥିଲା । ତୁ ସେଠାକୁ ପ୍ରଥମେ ଗଲୁ । ମା ଭଗବତୀଙ୍କୁ ପ୍ରତିଷ୍ଠା କଲୁ । ତାଙ୍କର କରୁଣା ପାଇଁ ସେମାନେ ତୋ ଘର ଭିତରକୁ ଧସେଇ ପଶି ଆସୁଥିଲେ । ତୁ ସେମାନଙ୍କ କଥା କିଛି ନ ଜାଣିବି ସେମାନଙ୍କ ପାଇଁ ଦିନ ଦିନ ଧରି ପ୍ରାର୍ଥନା କରିଛୁ । ସବୁ ଆନ୍ତରିକ ନିଃସ୍ୱାର୍ଥପର ପ୍ରାର୍ଥନାର ଫଳ ମିଳେ । ଜଳୁଥିବା ଆଳତି କର୍ପୂରରେ ଯେଉଁ କୁନି ଖପୁରି ଓ ହାଡ ଖଣ୍ଡ ଜଳିଯିବାର ଦେଖିଲୁ ତାହା ତାଙ୍କର ମୁକ୍ତି ପାଇଥିବାର ସୂଚନା । ଭଲ ହେଲା । ଏଇ ମହତ ଉଦ୍ଦେଶ୍ୟରେ ହିଁ ଅନ୍ୟ ସବୁ ରାସ୍ତା ବନ୍ଦ କରି ସେଇ ଘର ଦିଗରେ ତତେ କଢ଼ାଇ ନେଇଥିଲା କେଉଁ ଏକ ଅଦୃଶ୍ୟ ଶକ୍ତି ।''

"ତେବେ ବିଶ୍ୱନାଥ ନନାଙ୍କ ଆତ୍ମା ମତେ ବାରଣ କରୁଥିଲେ କାହିଁକି ?" ପଚାରିଲେ ଶ୍ରଦ୍ଧା ।

"ଦେଖ ଶ୍ରଦ୍ଧା, ସେ ଏକ ଶୁଭକାମୀ ସତ୍ତା । ତୋର ମାନସିକ ଶାନ୍ତି ବିପନ୍ନ ହେବା କଥା ଭାବି ତତେ ବାରଣ କରୁଥିଲେ । ଠିକ୍ ଅଛି । କିନ୍ତୁ ଭଗବତ ଇଚ୍ଛା ତ ସବୁରି ଉପରେ । ତାଙ୍କ ଇଚ୍ଛାରେ ଯାହା ମାଧ୍ୟମରେ ଯେଉଁ କାର୍ଯ୍ୟ ହେବାକଥା ତାହା ଖୁବ୍ ନୀରବରେ ସଂଗୋପନରେ କରାଯାଇଥାଏ । ତୁ କେବଳ ସମସ୍ତଙ୍କର ମଂଗଳ କାମନା କରି ପ୍ରାର୍ଥନା କରିଥିଲୁ । ତାହା ଫଳପ୍ରଦ ହୋଇଛି । ଏବେ ମୁଁ ରହୁଛି, ପରେ କଥା ହେବା ।" ଏତିକି କହି ମିନର୍ଭା ସେପଟରୁ ଫୋନ ରଖିଦେଲେ ।

ଶ୍ରଦ୍ଧାଙ୍କୁ ଲାଗିଲା ତାଙ୍କ ସମ୍ମୁଖରେ ଖୋଲିଯାଉଥିବା ଏକ ରହସ୍ୟମୟ ଜଗତ ଉପରେ ହଠାତ୍ ଯେମିତି ପର୍ଦ୍ଦା ପଡ଼ିଗଲା । ମିନର୍ଭା ଅପା ଆଉ ଅଧିକ କିଛି ନ କହି ଏମିତି ଫୋନ ରଖିଦେଲେ କାହିଁକି ଯେ ! ଆହୁରି ଶୁଣିବାକୁ ଇଚ୍ଛା ହେଉଥିଲା । ତାଙ୍କ ମନ ଚଞ୍ଚଳ ହେବାକୁ ଆରମ୍ଭ କଲା । ଆଉ କାହା ଆଗରେ କହିବାକୁ ଇଚ୍ଛା ହେଲା ।

କିନ୍ତୁ ପର ମୁହୂର୍ତ୍ତରେ ସେ ଅନୁଭବ କଲେ ଏ ସବୁ କଥା ଆଦୌ କୌତୂହଳର ବିଷୟ ନୁହେଁ । ସ୍ଥୂଳ ଆଖି ଦେଖିପାରୁଥିବା ଦୃଶ୍ୟ ବାହାରେ କିଛି ଅନ୍ୟ ଦୃଶ୍ୟ କାହା ଆଖିରେ ବେଳେ ବେଳେ ହୁଏତ ଧରାଦିଏ, କାନରେ ନ ଶୁଣିବି କେହି କିଛି କଥା ମନରେ ଶୁଣିପାରେ । ତେଣୁ ନିଜେ ଦେଖିଥିବା ଓ ଶୁଣିଥିବା କଥାକୁ ସେ ନିଜେ କାହିଁକି ଅବିଶ୍ୱାସ କରିବ ଓ ସେଥିପାଇଁ ଅନ୍ୟ କାହାମନରେ ବିଶ୍ୱାସ ଆଣିବାକୁ କାହିଁକି ବା ପ୍ରମାଣ ଖୋଜିବ ! ଥରେ ସେ ଏ ବିଷୟରେ ମୁହଁ ଖୋଲିଲେ ତାଙ୍କୁ କେତେ ଅଯଥା ପ୍ରଶ୍ନର ସାମ୍ନା କରିବାକୁ ହେବ ତା'ର ଠିକଣା ରହିବନି । ପରିହାସ ବି ବାକି ରହିବନି । ତେଣୁ ଏ କ୍ଷେତ୍ରରେ ତାଙ୍କର ନୀରବ ରହିବା ଶ୍ରେୟସ୍କର ।

ମିନର୍ଭା ଅପାଙ୍କ ପରି ଜଣେ ସୂକ୍ଷ୍ମଦର୍ଶୀ ମଣିଷକୁ ସେ ଯେ ଜାଣିଛନ୍ତି ତାହା ତାଙ୍କର ଭାଗ୍ୟ । ତାଙ୍କୁ ଅବୋଧ୍ୟ ମନେ ହେଉ୍ିବା ପ୍ରତିଟି ଘଟଣାର ମର୍ମକଥାଟିତ ସେ ତାକୁ ବୁଝାଇ ଦେଉଛନ୍ତି । ଆଉ ଅଧିକ କ'ଣ ଦରକାର ! ବରଂ ସେ ଯାହା କହୁଛନ୍ତି ତାହା ସେ ପାଳନ କରିଚାଲିବେ । ଶୁଦ୍ଧ ସରଳ ମନରେ ମା' ଭଗବତୀଙ୍କ ପାଖରେ ଥିବା ନଥିବା ସମସ୍ତଙ୍କ ପାଇଁ ପ୍ରାର୍ଥନା କରିଚାଲିବେ । ଏତିକି କରିପାରିବା ହିଁ ତାଙ୍କ ପାଇଁ ଯଥେଷ୍ଟ ହେବ । ତେଣିକି ମା' ଭଗବତୀର ଇଚ୍ଛା ।



# ଅଭିସାରିକା

ସ୍ୱର୍ଗପୁରରେ ଏକ ବିଶେଷ ଉତ୍ସବର ଆୟୋଜନ । ଦେବରାଜ ଇନ୍ଦ୍ରଙ୍କ ନିର୍ଦ୍ଦେଶରେ ଅପୂର୍ବ ସୁନ୍ଦର ଭାବରେ ସୁସଜ୍ଜିତ ସଭାସ୍ଥଳ । ସମସ୍ତ ଦେବତା, ଗନ୍ଧର୍ବ, ଯକ୍ଷ, କିନ୍ନର, ଅପସ୍ୱରା, ସିଦ୍ଧ ଓ ଋଷିଙ୍କ ସମେତ ଦେବର୍ଷି ନାରଦ ଓ ଦେବଗୁରୁ ବୃହସ୍ପତି ମଧ୍ୟ ସ୍ୱସ୍ୱ ସ୍ଥାନରେ ବିରାଜମାନ ହୋଇଥିଲେ। କିନ୍ନରମାନଙ୍କର ସୁମଧୁର ବାଦ୍ୟଧ୍ୱନି ପରିବେଶରେ ସଂଚରି ଯାଉଥିଲା ।

ସୁସଜ୍ଜିତ ସଭାସ୍ଥଳକୁ ପ୍ରବେଶ କଲେ ଦେବରାଜ ଇନ୍ଦ୍ର । ସାଙ୍ଗରେ କୁନ୍ତୀପୁତ୍ର ଅର୍ଜୁନ । ଆଜି ସେ ଦେବସଭାର ନୂତନ ଅତିଥି । ପିତୃତ୍ୱର ଗୌରବବୋଧରେ ଇନ୍ଦ୍ରଙ୍କର ମୁଖମଣ୍ଡଳରେ ଅପୂର୍ବ ଦୀପ୍ତି ।

ପୃଥିବୀର ମାନବୋତ୍ତମ, ଉଚ୍ଚକୁଳବଂଶଜ ଶୂରବୀର, ଶ୍ରେଷ୍ଠ ଧନୁର୍ଦ୍ଧାରୀ, ଶିବକୃପାରୁ ଅପ୍ରତିରୋଧ ପାଶୁପତ ଅସ୍ତ୍ର ସମେତ ବିଭିନ୍ନ ଦେବାସ୍ତ୍ରର ଅଧିକାରୀ ଓ ବିଶେଷକରି ମର୍ତ୍ତ୍ୟରେ ଅବତୀର୍ଣ୍ଣ ସ୍ୱୟଂ ପୁରୁଷୋତ୍ତମ କୃଷ୍ଣଙ୍କର ପ୍ରିୟସଖା ଅର୍ଜୁନଙ୍କର ପିତା ହୋଇଥିବା କାରଣରୁ ସତେକି ଇନ୍ଦ୍ରଙ୍କର ଦେବମହିମା ବହୁଗୁଣିତ ହୋଇଯାଇଥିଲା ।

ସେ ଜଣଜଣ କରି ସଭାସ୍ଥ ମହାନ୍ ଦେବସତ୍ତା ସହ ପୁତ୍ରଙ୍କର ପରିଚୟ କରାଇ ଦେଉଥିଲେ । ଯେଉଁମାନଙ୍କର

ଆଶୀର୍ବାଦ ପ୍ରାପ୍ତ ହେବାପାଇଁ ମହୀମଣ୍ଡଳରେ ଅହରହ ପୂଜାପାଠ ସ୍ତବ ସ୍ତୁତିଗାନ ଓ ଯଜ୍ଞାନୁଷ୍ଠାନ କର୍ମ ଚାଲିଥାଏ ସେହି ଦେବତାମାନେ ତାଙ୍କୁ ସାଦର ଅଭିନନ୍ଦନ ଜଣାଉଥିବାରୁ ଅର୍ଜୁନ ଅଭିଭୂତ ହୋଇ ପଡୁଥିଲେ । ପ୍ରତ୍ୟେକଙ୍କୁ ଯଥୋଚିତ ସମ୍ମାନ ଜଣାଇ ଇନ୍ଦ୍ରଙ୍କର ନିକଟ ଆସନରେ ଉପବେଶନ କଲେ ଧନଞ୍ଜୟ ।

ତାଙ୍କର କୃଷ୍ଣଙ୍କ ପରି ଉଜ୍ଜ୍ୱଳ ଶ୍ୟାମଳକାନ୍ତି, କ୍ଷାତ୍ରଧର୍ମାଶ୍ରିତ ସୁଗଠିତ ଦୀର୍ଘ ସବଳ ଶରୀର, ଶାଳ ବୃକ୍ଷର ଗଣ୍ଡିପରି ଅଜାନୁଲମ୍ବିତ ବଳିଷ୍ଠ ଭୁଜଯୁଗଳ, ପ୍ରଶସ୍ତ ବକ୍ଷ ଓ ତାଙ୍କର ମତ୍ତଗଜ ଚାଲିବାର ଠାଣି ଦେବଲୋକରେ ଅସାମାନ୍ୟ ମନେ ହେଉଥିଲା । ଅର୍ଜୁନଙ୍କୁ କୃଷ୍ଣସଖା ଭାବରେ ଜାଣିଥିବାରୁ ଦେବତା, ଗନ୍ଧର୍ବ ସିଦ୍ଧ ଓ ଋଷିଗଣ ମଧ୍ୟ ତାଙ୍କୁ ସମ୍ମାନନୀୟ ଦୃଷ୍ଟିରେ ଦେଖୁଥିଲେ ।

ଏହାଙ୍କ ପୂର୍ବରୁ ମଧ୍ୟ ଦେବଦାନବ ଯୁଦ୍ଧରେ ଦେବତାଙ୍କୁ ସହାୟତା କରିବା ପାଇଁ ମର୍ତ୍ତ୍ୟମଣ୍ଡଳରୁ ଆଗମନ କରିଥିଲେ ସୂର୍ଯ୍ୟବଂଶୀ ମହାପ୍ରତାପଶାଳୀ ତେଜସ୍ୱୀ ରାଜା ଦିଲୀପ । ଭିନ୍ନ କାରଣରୁ ରାଜା ପୁରୁରବା ମଧ୍ୟ ସ୍ୱଦେହରେ ସ୍ୱର୍ଗଲୋକକୁ ଆସିଥିଲେ । ପୃଥିବୀର ସେହି ବିରଳ ବ୍ୟକ୍ତିମାନଙ୍କ ପାଇଁ ସ୍ୱର୍ଗ ଅପହଞ୍ଚ ହୋଇ ରହିନାହିଁ ।

କିନ୍ତୁ ଆଜି ଯାହାଙ୍କର ଆଗମନ ହୋଇଛି ସେ ସ୍ୱର୍ଗର ଦେବରାଜଙ୍କ ଔରସରେ ମର୍ତ୍ତ୍ୟର ଜଣେ ମାନବୀ ଗର୍ଭରେ ଜନ୍ମ । ସେ ଜଣେ ଦେବମାନବ ଓ ଭଗବାନ କୃଷ୍ଣଙ୍କର ପ୍ରିୟସଖା । ତେଣୁ ସ୍ୱର୍ଗଲୋକରେ ତାଙ୍କର ଉପସ୍ଥିତି ଦେବତାମାନଙ୍କ ପାଇଁ ମଧ୍ୟ ମହାର୍ଘ ସମୟ ଥିଲା ।

ଦେବରାଜ ଇନ୍ଦ୍ର ନିଜ ଆସନରୁ ଉଠି ଠିଆହେଲେ । ତାଙ୍କର ମନ୍ଦ୍ରଗମ୍ଭୀର ସ୍ୱରରେ ଅର୍ଜୁନଙ୍କର ଆଗମନର କାରଣ ଜଣାଇବାକୁ ସଭାକୁ ସମ୍ବୋଧନ କରି କହିଲେ, "ଆପଣମାନେ ପୃଥିବୀରେ ଘଟୁଥିବା ସମସ୍ତ ଘଟଣ ଅଘଟଣ ସମ୍ପର୍କରେ ଅବଗତ ଅଛନ୍ତି । ହସ୍ତିନାପୁରର ଯୁବରାଜ ଦୁର୍ଯ୍ୟୋଧନଙ୍କର ଷଡ଼ଯନ୍ତ୍ରର ଶରବ୍ୟ ହୋଇ ପାଣ୍ଡବ ପଞ୍ଚଭ୍ରାତା ବନବାସୀ ହୋଇଛନ୍ତି । ଏହି କାରଣରୁ ପୃଥିବୀରେ ଏକ ମହାସମର ଅନୁଷ୍ଠିତ ହେବାକୁ ଯାଉଛି । ପାଣ୍ଡବମାନେ ସେଥିପାଇଁ ନିଜକୁ ପ୍ରସ୍ତୁତ କରୁଛନ୍ତି । ସେମାନଙ୍କ ମଧ୍ୟରୁ ମୋର ପୁତ୍ର ଅର୍ଜୁନ ଦିବ୍ୟାସ୍ତ୍ର ଲାଭକରିବା ପାଇଁ ବନବାସ କାଳରେ ମହାଦେବଙ୍କୁ ଆରାଧନା କରୁଥିଲେ । ତାଙ୍କର ତପସ୍ୟାରେ ସନ୍ତୁଷ୍ଟ ହୋଇ ସ୍ୱୟଂ ଶିବ କିରାତ ରୂପରେ ଆସି ତାଙ୍କର ଶକ୍ତିପରୀକ୍ଷା କରିଛନ୍ତି ଓ ତାଙ୍କୁ ପ୍ରଦାନ କରିଛନ୍ତି ଦେବଦାନବ ଦ୍ୱାରା ଅପ୍ରତିରୋଧ ମହାନ୍ ଅସ୍ତ୍ର ପାଶୁପତ ଏବଂ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କଥା ହେଲା କିରାତବେଶୀ ଶିବଙ୍କୁ

ଚିହ୍ନିନପାରି ଅର୍ଜୁନ ତାଙ୍କ ସହିତ ଯେଉଁ ଶରୀର ସଂଘାତ କଲେ ସେଥିରେ ତାଙ୍କର ଏ ଶରୀର ଶିବକୃପାଧନ୍ୟ ହୋଇ ଅମୋଘ ହୋଇଛି ।

ପିନାକପାଣି ଅର୍ଜୁନଙ୍କୁ ଅସ୍ତ୍ରପ୍ରଦାନ ଓ ତା'ର ପ୍ରୟୋଗ କୌଶଳ ଶିକ୍ଷାଦେଇ ସେଠାରୁ ଅନ୍ତର୍ହିତ ହୋଇଯିବା ପରେ ବୈଦୁର୍ଯ୍ୟବର୍ଣ୍ଣଶୋଭିତ ଜଳେଶ୍ୱର ସମସ୍ତ ଜଳଜନ୍ତୁଙ୍କ ଦ୍ୱାରା ବେଷ୍ଟିତ ହୋଇ ସର୍ବଦିଗକୁ ଆଲୋକିତ କରି ଆବିର୍ଭୂତ ହେଲେ । ତାଙ୍କ ପଛକୁ ସୁବର୍ଣ୍ଣକାନ୍ତିଧାରୀ କୁବେର ଦିବ୍ୟ ଦ୍ୟୁତିମନ୍ତ ବିମାନ ଆରୋହଣ କରି ଯକ୍ଷମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ଅର୍ଜୁନଙ୍କ ନିକଟକୁ ଆଗମନ କଲେ । ତାଙ୍କ ପରେପରେ ପ୍ରାଣିମାନଙ୍କର ଅନ୍ତକାରୀ ସୂର୍ଯ୍ୟତନୟ ଯମଦେବଙ୍କ ସମେତ ବହୁ ଲୋକପାଳଙ୍କର ଆଗମନ ହେଲା ।

ସମସ୍ତେ ଅର୍ଜୁନଙ୍କ ପ୍ରତି ସନ୍ତୁଷ୍ଟ ଚିତ୍ତରେ ସେମାନଙ୍କର ସ୍ୱତଃ ଆଗମନର କାରଣ ଜଣାଇ କହିଥିଲେ ଯେ ପୂର୍ବଜନ୍ମରେ ଅର୍ଜୁନ ନରନାମରେ ଜଣେ ଅପରିମିତ ତେଜସମ୍ପନ୍ନ ଋଷି ଥିଲେ । ତାଙ୍କର ତପସ୍ୟାରେ ସନ୍ତୁଷ୍ଟ ହୋଇ ସ୍ୱୟଂ ବ୍ରହ୍ମଦେବ ତାଙ୍କଦ୍ୱାରା ପୃଥିବୀର ଅନିଷ୍ଟକାରୀ ଦୁଷ୍ଟଶକ୍ତିକୁ ସଂହାର କରିବା ଉଦ୍ଦେଶ୍ୟରେ ହିଁ ତାଙ୍କୁ ମର୍ତ୍ତ୍ୟମଣ୍ଡଳରେ ସମ୍ଭବ କରିଛନ୍ତି । ତେଣୁ ଦେବତାମାନେ ଏହି ମହାନ୍ କାର୍ଯ୍ୟରେ ସହଯୋଗ କରିବାପାଇଁ ତାଙ୍କର ଅସ୍ତ୍ରଶସ୍ତ୍ର ଓ ତା'ର ପ୍ରୟୋଗ କୌଶଳ ସମ୍ପର୍କରେ ଅର୍ଜୁନଙ୍କୁ ଯଥୋଚିତ ଶିକ୍ଷା ଦେଇଛନ୍ତି ।

ତେଣୁ ମୁଁ ମନେକଲି ଅର୍ଜୁନଙ୍କୁ ସ୍ୱର୍ଗଲୋକକୁ ଆମନ୍ତ୍ରିତ କରିଆଣିଲେ ଅନ୍ୟ ସମସ୍ତେ ମଧ୍ୟ ତାଙ୍କୁ ଦର୍ଶନ କରିବାର ସୁଯୋଗ ପାଇବେ ।"

ଇନ୍ଦ୍ର ଏତିକି କହି ସ୍ୱଆସନରେ ଉପବେଶନ କଲେ । 'ସାଧୁ' 'ସାଧୁ' ଶବ୍ଦରେ ଉପସ୍ଥିତ ଦେବ, ଗନ୍ଧର୍ବ, ସିଦ୍ଧ ଓ ଋଷିଗଣ ନିଜର ଆନନ୍ଦ ପ୍ରକଟ କଲେ ।

କିନ୍ନରମାନଙ୍କର ବାଦ୍ୟଧ୍ୱନି ବାଜିଉଠିଲା । ସମସ୍ତେ ଲକ୍ଷ୍ୟକଲେ ଦେବପ୍ରଭାରେ ଉଜ୍ଜ୍ୱଳ ଥିବା ସଭାସ୍ଥଳରେ ଏକ ରମଣୀୟ କାନ୍ତି ସଂଚରିଗଲା । ଅପୂର୍ବ ସୌନ୍ଦର୍ଯ୍ୟର ଅଧିକାରିଣୀ ମେନକା, ରମ୍ଭା, ସ୍ୱୟଂପ୍ରଭା, ମିଶ୍ରକେଶୀ, ଘୃତାଚାରୀ ବରଥିନୀ, ଚିତ୍ରଲେଖା, ଗୋପାଳୀ, ସହଜନ୍ୟା, ପ୍ରଦାଗରା ଓ ଚିତ୍ରସେନା ପ୍ରଭୃତି ଅପ୍ସରାଗଣ ଲୀଳାୟିତ ଭଙ୍ଗୀରେ କଟାକ୍ଷପାତ ଓ ହାବଭାବ ଲାଳିତ୍ୟଦ୍ୱାରା ସଭାଜନଙ୍କୁ ମୁଗ୍ଧ କରି ପ୍ରବେଶ କଲେ । ହର୍ଷୋଲ୍ଲାସରେ ଭରିଗଲା ସଭାସ୍ଥଳ ।

କିନ୍ତୁ ସମସ୍ତଙ୍କ ମୁଖରେ ଏକ ଉତ୍କଣ୍ଠିତ ଅପେକ୍ଷାର ଆଭାସ ଫୁଟିଉଠୁଥିଲା । ସବୁରି ଦୃଷ୍ଟି ଅପ୍ସରାମାନେ ଯେଉଁ ପଥ ଦେଇ ଆଗମନ କରିଥିଲେ ସେହି ଦିଗରେ ସ୍ଥିର ହୋଇ ରହିଥିଲା ।

ଦେବପ୍ରହରୀ ଘୋଷଣା କଲେ, "ବର୍ତ୍ତମାନ ଭୁବନମୋହିନୀ ଦେବରାଜ ପ୍ରିୟା ଅପ୍‌ସରାଶ୍ରେଷ୍ଠା ଦେବୀ ଉର୍ବଶୀ ଆଗମନ କରୁଛନ୍ତି ।"

ଚଞ୍ଚଳ ହୋଇଉଠିଲା ସଭାସ୍ଥଳ । ଏକ ଅପୂର୍ବ ଭଙ୍ଗୀରେ ପ୍ରବେଶ କଲେ ଅନିନ୍ଦ୍ୟା ଉର୍ବଶୀ । ଏପର୍ଯ୍ୟନ୍ତଯାଏ ଅପ୍‌ସରାମାନଙ୍କୁ ଅବଲୋକନ କରି ଅର୍ଜୁନ ମନେ କରୁଥିଲେ ଏପରି ନାରୀସୌନ୍ଦର୍ଯ୍ୟ ପୃଥିବୀରେ କେବେବି ସମ୍ଭବ ନୁହେଁ । ଏତେ ରାଜକନ୍ୟା ଓ ରାଣୀମାନଙ୍କୁ ସେ ଦର୍ଶନ କରିଛନ୍ତି କିନ୍ତୁ ଏହି ଚିରଯୌବନା ରମଣୀଙ୍କର ସୌନ୍ଦର୍ଯ୍ୟର କେହି ବି ସମକକ୍ଷା ନୁହନ୍ତି ।

କିନ୍ତୁ କିଏ ଏଇ ଅପୂର୍ବ ନାରୀ ! ଏ ଯେ କଳ୍ପନାତୀତ ସୌନ୍ଦର୍ଯ୍ୟର ଅଧିକାରିଣୀ । ଉର୍ବଶୀଙ୍କର ତପ୍ତ କାଞ୍ଚନବର୍ଣ୍ଣ ଶରୀର ନୃତ୍ୟାଙ୍ଗନାର ଆଭୂଷଣରେ ସୁସଜ୍ଜିତ ହୋଇଥିଲା । ପାନପତ୍ର ସଦୃଶ ତାଙ୍କର ସୁନ୍ଦର ମୁଖାକୃତିରେ ଘନ ପଲ୍ଲବଯୁକ୍ତ ମୃଗନୟନ ପରି ଦୀର୍ଘ ସୁନ୍ଦର ସ୍ନିଗ୍ଧ ନୟନଯୁଗଳ, ତିଳପୁଷ୍ପ ସମ ନାସାରେ ହୀରାର ନକ୍ଷତ୍ର, ରକ୍ତିମ ଓଷ୍ଠଧାର, ରମଣୀୟ ଦନ୍ତପନ୍ତି, ମରାଳୀର ଗ୍ରୀବା ପରି ମସୃଣ ଚାରୁଗ୍ରୀବା ପୁଷ୍ପସଜ୍ଜିତ ଘନକେଶ ଓ ଅଷ୍ଟ ଅଳଙ୍କାରଭୂଷିତା ଉର୍ବଶୀ ଥିଲେ ସର୍ବୋତ୍ତମ ସୌନ୍ଦର୍ଯ୍ୟର ବିମଳ ଅଭିବ୍ୟକ୍ତି ।

ଦେବୀ ଉର୍ବଶୀ ଦେବସଭାକୁ ପ୍ରଣାମ ଜଣାଇଲେ ।

ସେହି ସମୟରେ ସାମଗାନ ବିଶାରଦ ତମ୍ବୁର ପ୍ରଭୃତି ଗନ୍ଧର୍ବମାନେ ସାମଗାଥାମାନ ଗାୟନ ଆରମ୍ଭ କଲେ । ସମତାଳରେ କିନ୍ନରମାନଙ୍କର ନିପୁଣ ହସ୍ତରେ ବାଜିଉଠିଲା ବୀଣା, ବେଣୁ, ମୃଦଙ୍ଗ ପ୍ରଭୃତି ବାଦ୍ୟମାନ । ନୃତ୍ୟାରମ୍ଭ ହେଲା । ଅପ୍‌ସରାଗଣଙ୍କର ମଧ୍ୟଭାଗରେ ନୃତ୍ୟ କରୁଥିଲେ ଉର୍ବଶୀ । ତାଙ୍କର ପଦବିକ୍ଷେପ, ହସ୍ତମୁଦ୍ରା, କଟିଚାଳନା ଓ କଟାକ୍ଷପାତର ଅନନ୍ୟତା ସ୍ପଷ୍ଟ ବାରି ହୋଇପଡୁଥିଲା । ନକ୍ଷତ୍ରମାଳାରେ ସେ ଚନ୍ଦ୍ରମା ପରି ଶୋଭା ପାଉଥିଲେ । ସଭାସ୍ଥଳରେ ଉପସ୍ଥିତ ଥିବା ସମସ୍ତଙ୍କର ଦୃଷ୍ଟି ତାଙ୍କରି ଉପରେ କେନ୍ଦ୍ରିତ ହୋଇ ରହିଥିଲା । ସତେ ଯେମିତି ସେ ଅପୂର୍ବ ସୌନ୍ଦର୍ଯ୍ୟ ଅବଲୋକନର ମହାର୍ଘ ବେଳାରୁ ପଲକଟିଏ ବି ଊଣା ନ ପଡ଼ିଯାଉ !

କିନ୍ନର ଗନ୍ଧର୍ବ ମାନଙ୍କର ମଧୁର ସଂଗୀତ, ବାଦ୍ୟଧ୍ୱନି ଓ ଉର୍ବଶୀଙ୍କର ନୃତ୍ୟ ସଂଦର୍ଶନ କରି ଅର୍ଜୁନ ସତେକି ଏକ ମୁଗ୍ଧ ପ୍ରତିମା ପାଲଟି ଯାଇଥିଲେ । ନେତ୍ର ଥିଲା ଅପଲକ, ଶରୀର ଥିଲା ନିଶ୍ଚଳ; କିନ୍ତୁ ତାଙ୍କର ମନେ ହେଉଥିଲା ସତେ ଯେମିତି ସେ ଭାସି ଭାସି ଚାଲିଛନ୍ତି କେଉଁ ଅପୂର୍ବ କଳ୍ପଲୋକରେ, ସାଗରର ଉତ୍ତାଳ ତରଙ୍ଗ ତାଙ୍କ ହୃଦୟରେ ଲହଡ଼ି ଭାଙ୍ଗୁଥିଲା । ଆକାଶର ଅନନ୍ତ ଶାନ୍ତ ନୀଳିମା ଭିତରେ ତାଙ୍କର ସମଗ୍ର

ସତ୍ତା ସଂଚରି ଯାଉଥିଲା । ଉର୍ବଶୀଙ୍କର ନୃତ୍ୟକଳା ତାଙ୍କର ମନପ୍ରାଣ ଶରୀରର ପ୍ରତିଟି ଅଣୁକଣାରେ ଏକ ଅପୂର୍ବ ସ୍ପନ୍ଦନ ସୃଷ୍ଟି କରୁଥିଲା ।

କିନ୍ତୁ ଦେବରାଜ ଇନ୍ଦ୍ରଙ୍କର ଦୃଷ୍ଟି କେବଳ ତାଙ୍କର ମାନବପୁତ୍ର ଅର୍ଜୁନଙ୍କ ମୁଖ ଓ ହାବଭାବକୁ ଗଭୀର ଭାବରେ ଲକ୍ଷ୍ୟ କରୁଥିଲା । ଅର୍ଜୁନଙ୍କର ମୁଗ୍‌ଧତା ସେ ଅନୁଭବ କରିପାରି ଖୁବ୍ ଆନନ୍ଦ ଅନୁଭବ କରୁଥିଲେ । ଅର୍ଜୁନଙ୍କର ବିହ୍ୱଳ ଦୃଷ୍ଟି ଉର୍ବଶୀଙ୍କ ଉପରେ ସ୍ଥିର ରହିଥିବା ପ୍ରସଙ୍ଗରେ ସେ ଅଦୂରରେ ଉପସ୍ଥିତ ଥିବା ଚିତ୍ରସେନ ଗନ୍ଧର୍ବଙ୍କୁ ଇଙ୍ଗିତରେ କିଛି ଜଣାଉଥିଲେ ।

ନୃତ୍ୟ ସଂଗୀତ ଶେଷ ହେଲା । ଧୀରେ ଧୀରେ ସ୍ୱସ୍ଥାନକୁ ସମସ୍ତେ ପ୍ରତ୍ୟାବର୍ତ୍ତନ କରିଗଲେ । ଅର୍ଜୁନଙ୍କର ବିହ୍ୱଳଭାବ କଟିନଥିଲା । ସେ ସେହି ଅବସ୍ଥାରେ ସ୍ୱର୍ଗପୁରରେ ତାଙ୍କ ପାଇଁ ଉଦ୍ଦିଷ୍ଟ ବିଶ୍ରାମ କକ୍ଷକୁ ଫେରିଆସିଲେ ।

ଉନ୍ମୁକ୍ତ ବାତାୟନ ଦେଇ ଅର୍ଜୁନ ବାହାରକୁ ଚାହିଁଲେ । ସ୍ୱର୍ଗଲୋକରେ ବି ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ ହୁଏ । କିନ୍ତୁ ପ୍ରତି ରାତ୍ରି ଶୋଭାପାଏ ଚନ୍ଦ୍ରଲେଖା ଓ ନକ୍ଷତ୍ର ମାଳାରେ । ସ୍ୱର୍ଗ ପୁଷ୍ପ ପାରିଜାତର ସୁଗନ୍ଧି ପରିବେଶକୁ ସଦା ସୁରଭିତ କରିଥାଏ ।

ଅର୍ଜୁନଙ୍କୁ ସ୍ୱର୍ଗାଗମନ ସ୍ୱପ୍ନପ୍ରାୟ ପ୍ରତୀତ ହେଉଥିଲା । ଯେଉଁଦିନ ସେ ଶିବକୃପା ସ୍ୱରୂପ ପାଶୁପତ ଓ ଅନ୍ୟାନ୍ୟ ଦେବାସ୍ତ୍ର ଲାଭକରି ପ୍ରସନ୍ନ ଚିତ୍ତ ଥିଲେ ତାଙ୍କର ସେ ପ୍ରସନ୍ନତାକୁ ବହୁଗୁଣିତ କରି ସେଦିନ ତାଙ୍କ ସମ୍ମୁଖରେ ଦିବ୍ୟରଥ ନେଇ ଉପସ୍ଥିତ ହୋଇଥିଲେ ଦେବରାଜଙ୍କ ସାରଥି ମାତଳି । ବିସ୍ମୟାବିଷ୍ଟ ଚିତ୍ତରେ ଅର୍ଜୁନ ଲକ୍ଷ୍ୟ କରୁଥିଲେ ସେ ରଥକୁ । ପବନର କ୍ଷିପ୍ରବେଗ ପରି ବେଗଗାମୀ ଅଶ୍ୱମାନଙ୍କ ଦ୍ୱାରା ଯୋଚିତ ହୋଇଥିଲା ସୁବର୍ଣ୍ଣାଚ୍ଛାଦିତ ବିଶାଳକାୟ ରଥ । ତା'ର ଶୀର୍ଷଦେଶରେ ଇନ୍ଦୀବର ସଦୃଶ ଶ୍ୟାମଳ ବର୍ଣ୍ଣର ମହାପ୍ରଭାନ୍ୱିତ ବୈଜୟନ୍ତ ନାମକ ପତାକା ହିଲ୍ଲୋଳିତ ହେଉଥିଲା । ଉଜ୍ଜ୍ୱଳ ସୁବର୍ଣ୍ଣାଳଙ୍କାରରେ ଭୂଷିତ ଇନ୍ଦ୍ରଙ୍କର ସାରଥି ମାତଳିଙ୍କ ରୂପ ପ୍ରଥମେ ଅର୍ଜୁନଙ୍କ ମନରେ ସ୍ୱୟଂ ଦେବରାଜଙ୍କର ଭ୍ରମ ସୃଷ୍ଟି କରିଥିଲା ।

କିନ୍ତୁ ଯେତେବେଳେ ମାତଳି ବିନମ୍ର ଭାବରେ ଦେବଲୋକରେ ଇନ୍ଦ୍ରଦେବ, ସିଦ୍ଧ, ଋଷି, ଗନ୍ଧର୍ବ, କିନ୍ନର ଓ ଯକ୍ଷ ପ୍ରଭୃତିଙ୍କ ସମାବେଶରେ ଉପସ୍ଥିତ ହୋଇ ଅର୍ଜୁନଙ୍କୁ ଦର୍ଶନ କରିବାକୁ ଅପେକ୍ଷା କରିଥିବା କଥା ନିବେଦନ କଲେ । ଅର୍ଜୁନ ଆତ୍ମସ୍ଥ ହେଲେ । ସ୍ୱର୍ଗପୁରରୁ ତାଙ୍କ ପାଇଁ ଆସିଛି ଆମନ୍ତ୍ରଣ ! କି ଦୁର୍ଲ୍ଲଭ ଭାଗ୍ୟ ତାଙ୍କର !

ସେ ମାତଳି ପରିଚାଳିତ ଦିବ୍ୟ ରଥକୁ ଲକ୍ଷ୍ୟ କରି ଭାବିଲେ ପୃଥିବୀରେ ଶହେ ଅଶ୍ୱମେଧ ଯଜ୍ଞ କରିଥିବା ବ୍ୟକ୍ତି ମଧ୍ୟ ଏହାକୁ ଆରୋହଣ କରିବାକୁ ଅସମର୍ଥ । ବହୁ ଯାଜ୍ଞିକ ନରପତି ଅନେକ ଦକ୍ଷିଣା ଦାନ କରି ପୁଣ୍ୟାର୍ଜନ କରିଥିଲେ ବି ଏହାକୁ ସ୍ପର୍ଶ କରିପାରନ୍ତି ନାହିଁ । ଉତ୍ତମ ତପସ୍ୟା ବିନା ଏହି ଦିବ୍ୟରଥରେ ଆରୋହଣ କରିବା ଅସମ୍ଭବ କଥା ।

ତାଙ୍କର ସେହି ସମୟରେ ସ୍ମରଣ ଆସିଥିଲା ଯେ ଦେବତାମାନେ ତାଙ୍କୁ ଜଣାଇ ଦେଇଥିଲେ ଯେ ଗତ ଜନ୍ମରେ ନର ନାମକ ଋଷି ଭାବରେ ସେ ବହୁ ତପସ୍ୟା କରିଛନ୍ତି । ହୁଏତ ସେହି ତପଃଫଳ ତାଙ୍କୁ ଏହି ମହାର୍ଘ ସୁଯୋଗ ଦେଇଛି । କୃଷ୍ଣଙ୍କର ସହାସ୍ୟ ବଦନ ତାଙ୍କ ସମ୍ମୁଖରେ ଭାସି ଉଠିଥିଲା । ତାଙ୍କ ଅଧରର ସ୍ମିତହାସ ଓ ମୟୂର ଚନ୍ଦ୍ରିକାର ଦୋଳନ ସତେ ଯେମିତି ତାଙ୍କୁ ସଚେତନ କରୁଥିଲା ଯେ ସେପରି ସାଧନା ନଥିଲେ ସେ କ'ଣ ପୁରୁଷୋତ୍ତମ କୃଷ୍ଣଙ୍କର ସଖା ହୋଇ ପାରିଥାନ୍ତେ !

ଅର୍ଜୁନଙ୍କ ମନରୁ ଦ୍ୱନ୍ଦ୍ୱ ଅପସିରଗଲା । ସେ ନଦୀରେ ସ୍ନାନ କରି ଶୁଚିହୋଇ ଗୁରୁମନ୍ତ୍ର ଜପକଲେ । ଏତେଦିନ ଧରି ଯେଉଁ ମନ୍ଦର ପର୍ବତରେ ସେ ଅବସ୍ଥାନ କରୁଥିଲେ ତାଙ୍କଠାରୁ ବିଦାୟ ନେବାକୁ ଯାଇ କହିଥିଲେ ଯେ ମନ୍ଦର ଶୈଳ ସାଧୁ, ପୁଣ୍ୟଶୀଳ ମୁନି ଓ ସ୍ୱର୍ଗାଭିଳାଷୀ ମଣିଷମାନଙ୍କର ଆଶ୍ରୟସ୍ଥଳ । ତେଣୁ ସେହି ସ୍ଥାନରେ ସେ ନିଜେ ଅବସ୍ଥାନ କରିବାର ସୁଯୋଗ ପାଇ ନିଜକୁ ଧନ୍ୟ ମନେ କରୁଥିଲେ । ଉକ୍ତ ପର୍ବତରୁ ଝରୁଥିବା ପ୍ରସ୍ରବଣର ଜଳ ପାନ ଓ ପର୍ବତ୍ର ଗାତ୍ରରେ ବିରାଜିତ ବୃକ୍ଷମାନଙ୍କର ସୁମିଷ୍ଟ ଫଳ ଭକ୍ଷଣ କରି ସେ ଜୀବନଧାରଣ କରିଥିବାରୁ ମନ୍ଦର ପର୍ବତ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରି ବିଦାୟନେଇ ଦିବ୍ୟରଥରେ ଉପବେଶନ କରି ସ୍ୱର୍ଗାଭିମୁଖୀ ହୋଇଥିଲେ ।

ଅର୍ଜୁନ ରାତ୍ରିର ଆକାଶକୁ ଚାହିଁ ମନେ ପକାଉଥିଲେ ସେ ପଥରେ ଦେଖିଥିବା ଆକାଶର ଅଦ୍ଭୁତରୂପ । ସେଠାରେ ସହସ୍ରସହସ୍ର ବିମାନ ଗତାଗତ ହେଉଥିଲା । ମର୍ତ୍ତ୍ୟକୁ ଯେଉଁସବୁ ଉଜ୍ଜ୍ୱଳ ତାରାମାନେ ପରିଦୃଶ୍ୟ ହୁଅନ୍ତି ସେହିମାନେ ସ୍ୱକୀୟ ତେଜରେ ଉଜ୍ଜ୍ୱଳ ଦେଖାଯାଉଥିଲେ । ନିଜନିଜର ପ୍ରଭାରେ ଦ୍ୟୋତିତ ହୋଇ ସହସ୍ର ସହସ୍ର ସିଦ୍ଧ, ଋଷି, ଗନ୍ଧର୍ବ, କିନ୍ନର ଓ ଅପ୍‌ସରାମାନେ ବିଭିନ୍ନ ଦିଗରେ ଗମନ କରୁଥିଲେ ।

ସ୍ୱର୍ଗପୁରରେ ପ୍ରବେଶ ପରଠାରୁ ଚିରବସନ୍ତର ମଳୟ ସ୍ପର୍ଶରେ, ପୁଷ୍ପର ବର୍ଣ୍ଣରେ ଓ ସୁଗନ୍ଧରେ, ଜଳର ରଂଗରେ ଏକ ଅପୂର୍ବ ଅନନ୍ୟତା ସେ ଅନୁଭବ କରୁଥିଲେ ।

ସ୍ୱର୍ଗବାସୀ ସତ୍ତାମାନଙ୍କର ରୂପ, ଆକାର ଆଚରଣରେ ମର୍ତ୍ତ୍ୟଲୋକର କୌଣସି ମଳିନତା ନଥିଲା । ସେ ନିଜ ଭିତରେ ଏକ ଅପୂର୍ବ ରୋମାଞ୍ଚ ଅନୁଭବ କରୁଥିଲେ ।

ତାଙ୍କର ସ୍ୱର୍ଗ ରହଣି କାଳରେ ପିତା ଇନ୍ଦ୍ରଦେବଙ୍କ ନିର୍ଦ୍ଦେଶରେ ସେ ଚିତ୍ରସେନ ଗନ୍ଧର୍ବଙ୍କ ନିକଟରୁ ନୃତ୍ୟକଳା ଓ ବାଦନ କୌଶଳ ଶିକ୍ଷା କରୁଥିଲେ । ତାହା ତାଙ୍କର ଭବିଷ୍ୟତରେ କିଛି କାର୍ଯ୍ୟରେ ଆସିବ ବୋଲି ତାଙ୍କୁ ଜଣାଇ ଦିଆଯାଇଥିଲା । ସେଥିପାଇଁ ସେ ଖୁବ୍ ମନଯୋଗ ସହକାରେ ନୃତ୍ୟାଭ୍ୟାସ କରୁଥିଲେ । କିନ୍ତୁ ଆଜି ଦେବସଭାରେ ଉର୍ବଶୀଙ୍କର ନୃତ୍ୟ ଦେଖିବା ପରେ ହିଁ ସେ ବୁଝିପାରିଥିଲେ ଏହି ଦିବ୍ୟ କଳା ଆୟତ୍ତ କରିବା ଆଦୌ ସହଜ ନୁହେଁ । କେବଳ ଅଭ୍ୟାସ ଜରିଆରେ ଏହା ସମ୍ଭବ ହୁଏନାହିଁ, ଯଦି ଅନ୍ତଃସତ୍ତାରେ ଏହାର ସୂକ୍ଷ୍ମ ଉତ୍ସ ନିହିତ ଥିବ ତେବେ ହୁଏତ ତାହାର ପ୍ରକାଶରେ ଅସାମାନ୍ୟ ଭାବ ବାରି ହୋଇପାରେ । ତେବେ ଉର୍ବଶୀଙ୍କର ନୃତ୍ୟକଳାର ସେ ସ୍ୱୟଂ ଅଧିଶ୍ୱରୀ । ସେ ଅଦ୍ୱିତୀୟା । ଦେବସଭାର ନୃତ୍ୟ ସ୍ମରଣ କରି ସେ ଉଚ୍ଛକିତ ହେବାକୁ ଲାଗିଲେ ।

ଏହି ସମୟରେ ତାଙ୍କ ଦାୟିତ୍ୱରେ ଥିବା ଦେବ ଅନୁଚର ଆସି ଜଣାଇଲେ ଯେ ଦେବୀ ଉର୍ବଶୀ ଅର୍ଜୁନଙ୍କୁ ସାକ୍ଷାତ କରିବାକୁ ଆସିଛନ୍ତି । ଚମକି ପଡ଼ିଲେ ମଧ୍ୟମ ପାଣ୍ଡବ । ରାତ୍ରିର ଏହି ଯାମରେ ଉର୍ବଶୀଙ୍କର ଆଗମନର କାରଣ କ'ଣ ହୋଇପାରେ ! କିଛି ନିର୍ଣ୍ଣୟ ନକରି ପାରିଲେ ବି ସେ ତତ୍‌କ୍ଷଣାତ୍ ନିଜର ଆସନରୁ ଉତ୍‌ଥିତ ହୋଇ ପ୍ରତୀକ୍ଷାରତା ଉର୍ବଶୀଙ୍କ ନିକଟରେ ଉପସ୍ଥିତ ହେଲେ ।

କିନ୍ତୁ ସେ କାହାକୁ ଦେଖୁଛନ୍ତି !! ଇଏ କ'ଣ ସେହି ନୃତ୍ୟ ପ୍ରବୀଣା ନାୟିକା ଯାହାଙ୍କୁ ସେ ଦେଖିଥିଲେ ଦେବସଭାରେ !! ଶରୀରକୁ ଆବୃତ କରିଥିବା ବସ୍ତ୍ରାବରଣ ଓ ଅଙ୍ଗପ୍ରତ୍ୟଙ୍ଗରେ ପରିହିତ ଅଷ୍ଟ ଅଳଙ୍କାରର ଔଜ୍ଜ୍ୱଲ୍ୟ ଭିତରେ ସେ ତ ଅସାମାନ୍ୟା ମନେ ହୋଇଥିଲେ । କିନ୍ତୁ ଏବେ ସେସବୁ ଆଭୂଷଣ ନଥିଲା । ତାଙ୍କର ସେ ତପ୍ତକାଂଚନ ବର୍ଣ୍ଣର ଦେହବଲ୍ଲରୀରେ ଥିଲା ଏକ ରକ୍ତବର୍ଣ୍ଣର ଝୀନ ବେହରଣ । ପୀନୋନ୍ନତ ବକ୍ଷକୁ ଆବୃତ କରିଥିବା ନୀଳ ଓ ସୁନେଲି ରଙ୍ଗର କାଂଚଲା ବାହାରକୁ ଫୁଟି ଦିଶୁଥିଲା । ବାଜୁବନ୍ଧରେ କେବଳ ଦୁଇଟି ହୀରାର କଙ୍କଣ । କର୍ଣ୍ଣର ଉଭୟ ପାର୍ଶ୍ୱରେ ଦୋଳାୟିତ ହେଉଥିଲା ଚୂର୍ଣ୍ଣକୁନ୍ତଳର ଝରା । ମୟୂରପୁଚ୍ଛ ପରି ମୁକ୍ତକେଶ ରାଶିରେ ଶୋଭା ପାଉଥିଲା ପାରିଜାତର କେତୋଟି ସ୍ତବକ । ମୁକ୍ତଗ୍ରୀବା, ମୁକ୍ତବାହୁ ଝୀନ ବେହରଣରେ ଆବୃତ ଦେହବଲ୍ଲରୀ ଅଧିକ ଅନାବୃତ ହୋଇଥିବା ପରି ଦିଶୁଥିଲା ।

ଅର୍ଜୁନ ତାଙ୍କର ଏପରି ଅପୂର୍ବ ଲୋଭନୀୟ ରୂପଶ୍ରୀ ଦର୍ଶନ କରି ମୋହିତ ହେବା ପରିବର୍ତ୍ତେ ଆଶ୍ଚର୍ଯ୍ୟ ପ୍ରକଟ କରି କହିଲେ "ମାତେ, ଆସନ ଗ୍ରହଣ କରନ୍ତୁ । ରାତ୍ରିର ଏହି ଗଭୀର ଯାମରେ ଆପଣଙ୍କର ମୋ ପୁରକୁ ଆଗମନର କାରଣ କ'ଣ ଜଣାଇବେକି ?"

ଅର୍ଜୁନଙ୍କର ଏପ୍ରକାର ବିନୀତ ଆଚରଣରେ ଉର୍ବଶୀ ଆଶ୍ଚର୍ଯ୍ୟ ହୋଇଗଲେ । ନୃତ୍ୟସଭା ପରେ ସେ ନିଜ ପୁରରେ ବିଶ୍ରାମ ନେଉଥିବାବେଳେ ଗନ୍ଧର୍ବ ଚିତ୍ରସେନ ସେଠାରେ ଉପସ୍ଥିତ ହୋଇ ଦେବରାଜଙ୍କର ଇଚ୍ଛା ନିବେଦନ କରିଥିଲେ । ପ୍ରସଙ୍ଗଟି ଥିଲା ଯେ ଦେବସଭାରେ ଉର୍ବଶୀ ନୃତ୍ୟରଙ୍ଗ ପ୍ରଦର୍ଶନ କରୁଥିବାବେଳେ ଅର୍ଜୁନ ତାଙ୍କୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥିବାରୁ ଇନ୍ଦ୍ରଦେବ ମନେକଲେ ଯେ ସେ ଉର୍ବଶୀଙ୍କ ପ୍ରତି ଆସକ୍ତ ହୋଇଛନ୍ତି । ତେଣୁ ତାଙ୍କ ପୁତ୍ରର ଶୃଙ୍ଗାରଭିଳାଷ ପୂରଣ କରିବା ପାଇଁ ସେ ଦେବୀଙ୍କୁ ଅନୁରୋଧ କରିଛନ୍ତି ।

ତା'ପରେ ଅର୍ଜୁନଙ୍କର ଗୁଣଗାନ କରିବାକୁ ଯାଇ ଚିତ୍ରସେନ ତାଙ୍କର ବୀରତା, ପରାକ୍ରମ, ପ୍ରତିଭା, ସତ୍ୟବାଦୀତା, ଅହଂକାରଶୂନ୍ୟତା, ସୌମ୍ୟତା ଓ ଦେବଦୁର୍ଲଭ ସ୍ୱଭାବର ବହୁ ବର୍ଣ୍ଣନା କଲେ ।

ଦେବୀ ଉର୍ବଶୀ ଅର୍ଜୁନଙ୍କ ସମ୍ପର୍କରେ ସେସବୁ କଥା ପୂର୍ବରୁ ଶୁଣିଥିଲେ ଓ ଦେବସଭାରେ ସେହି ଶ୍ୟାମଳକାନ୍ତି ପୁରୁଷଙ୍କର ଦୁର୍ଲଭ ରୂପଶୋଭା ପ୍ରତି ଆକର୍ଷଣ ମଧ୍ୟ ଅନୁଭବ କରିଥିଲେ । ତେଣୁ ସେ ଖୁବ୍ ପ୍ରୀତ ହୋଇ ଚିତ୍ରସେନଙ୍କ ମାଧ୍ୟମରେ ଇନ୍ଦ୍ରପ୍ରେରିତ ଅନୁରୋଧ ରକ୍ଷା କରିବାକୁ ଆଗ୍ରହୀ ହୋଇ ଅର୍ଜୁନଙ୍କ ପୁରକୁ ଆସିଥିଲେ । ସେ ପଥସାରା ଭାବି ଆସୁଥିଲେ ଯେ ତାଙ୍କର ଏହି ଭୁବନମୋହିନୀ ଅଭିସାରିକା ରୂପ ଦେଖି ଅର୍ଜୁନ ମୁହୂର୍ତ୍ତେ ବିଳମ୍ବ ନକରି ତାଙ୍କୁ ଗାଢ଼ ଆଲିଙ୍ଗନରେ ଆବଦ୍ଧ କରିବେ । ତେଣିକି ଶୃଂଗାରକଳା ନିପୁଣା ଉର୍ବଶୀ ତାଙ୍କୁ ଯେଉଁ ଆନନ୍ଦ ଦେବେ ତାହାର କାଣିଚାଏ ମଧ୍ୟ ସେ ମର୍ତ୍ତ୍ୟଭୁବନରେ ଅନ୍ୟ କୌଣସି ନାରୀ ସଂସର୍ଗରେ ପାଇନଥିବେ ।

ତେଣୁ ଅର୍ଜୁନଙ୍କର ସେ ବିନୀତ ଆଚରଣ ତାଙ୍କୁ ବିସ୍ମିତ କଲା । ସେ ମୁହଁ ଖୋଲିବାକୁ ବାଧ୍ୟ ହେଲେ । ଅର୍ଜୁନଙ୍କ ପ୍ରତି ତାଙ୍କର ସମ୍ମୋହନକାରୀ କଟାକ୍ଷପାତ କରି ସ୍ମିତ ହସି କହିଲେ, "ହେ ପୁରୁଷ ଶ୍ରେଷ୍ଠ ମୋର ଆଗମନର କାରଣ କ'ଣ ତୁମେ ସତରେ ଜାଣନାହିଁ ।"

– ନାଁ ଦେବୀ ଏପରି ଅସମୟରେ ଆପଣଙ୍କର ଆଗମନ ମତେ ବିସ୍ମିତ କରିଛି ।

– ଚିତ୍ରସେନ ଗନ୍ଧର୍ବ ତୁମକୁ କିଛି କହିନାହାନ୍ତି ?

- ନାଁ ଆଜିର ଦେବସଭାର ନୃତ୍ୟାନୁଷ୍ଠାନ ପରେ ତାଙ୍କ ସହିତ ମୋର ଆଦୌ ସାକ୍ଷାତ ହୋଇନାହିଁ ।

- ଦେବରାଜ ଇନ୍ଦ୍ରଙ୍କ ନିକଟରୁ କୌଣସି ସନ୍ଦେଶ ପାଇଥିଲେ କି ?

ଅର୍ଜୁନ, କୌଣସି ପ୍ରକାର ସମ୍ବାଦ ଇନ୍ଦ୍ରଙ୍କ ନିକଟରୁ ପାଇନାହାନ୍ତି ବୋଲି ସରଳ ଉତ୍ତର ଦେଲେ ।

ଉର୍ବଶୀଙ୍କର ହୃଦ୍‌ବୋଧ ହେଲା ପ୍ରକୃତରେ ଅର୍ଜୁନଙ୍କ ନିକଟରେ ତାଙ୍କ ଆଗମନର ବାର୍ତ୍ତା ପହଞ୍ଚାଯାଇନାହିଁ । ହୁଏତ ଇନ୍ଦ୍ରଦେବ ପିତା ଭାବରେ ପୁତ୍ରକୁ ଏପ୍ରକାର କିଛି କଥା କହିବାକୁ ସଂକୋଚ ଅନୁଭବ କରିଥିବେ । ତାଙ୍କର ଓ ଚିତ୍ରସେନଙ୍କର ତ ଦୃଢ଼ ଧାରଣା ରହିଛି ଉର୍ବଶୀଙ୍କର ଅଭିସାରିକା ରୂପର ମାୟାଜାଲରେ ଛନ୍ଦି ନହୋଇ ରହିପାରିବା କୌଣସି ପୁରୁଷ ପକ୍ଷରେ ସମ୍ଭବ ନୁହେଁ । ତେଣୁ ତାଙ୍କର ଉପସ୍ଥିତିରେ ଅର୍ଜୁନଙ୍କର ବଶୀଭୂତ ହୋଇଯିବା ତ ନିଶ୍ଚିତ କଥା । ପୂର୍ବ ସୂଚନାର ପ୍ରୟୋଜନ କ'ଣ ! ତେବେ ଅର୍ଜୁନ କ'ଣ ସଂକୋଚ ଅନୁଭବ କରୁଥିବାରୁ ଏପ୍ରକାର ବାର୍ତ୍ତାଳାପ କରୁଛନ୍ତି କି ! ହୋଇପାରେ ଇଏ ତ ସ୍ୱର୍ଗର କୌଣସି ଦେବତା, ଗନ୍ଧର୍ବ ବା ଯକ୍ଷ ନୁହନ୍ତି; ମର୍ତ୍ତ୍ୟର ମାନବ । ଜଣେ ମଣିଷ ପକ୍ଷରେ ଦେବୀ ଉର୍ବଶୀଙ୍କ ନିକଟରେ ନିଜର ପ୍ରେମ ନିବେଦନ କରିବା ଆଦୌ ସହଜ ନୁହେଁ ।

ଉର୍ବଶୀ ଚିନ୍ତାକଲେ ଅର୍ଜୁନଙ୍କ ମନରୁ କୁଣ୍ଠା ଦୂର କରିବାକୁ ପଡ଼ିବ । ତେଣୁ ସେ ତାଙ୍କର ମୋହିନୀ ରୂପକୁ ନିଜର ଶୃଂଗାରୀ ଭଙ୍ଗୀରେ ଆହୁରି ଆକର୍ଷଣୀୟ କରି କହିଲେ, "ହେ ଅର୍ଜୁନ, ମୁଁ ତୁମର ପ୍ରଣୟପ୍ରାର୍ଥିନୀ ହୋଇ ଏଠାକୁ ଆଗମନ କରିଛି । ତୁମ୍ଭର ପିତା ଇନ୍ଦ୍ରଦେବ ମଧ୍ୟ ଚାହାନ୍ତି ତୁମେ ମୋ ନିକଟରୁ ନାରୀ ସଂଭୋଗ ଜନିତ ସ୍ୱର୍ଗସୁଖ ପ୍ରାପ୍ତ ହୁଅ ।"

ଉର୍ବଶୀଙ୍କର କଥା ଶୁଣୁଶୁଣୁ ଅର୍ଜୁନ ସର୍ପଦର୍ଶନ କରିବା ପରି ଚମକିପଡ଼ି ପଛକୁ ଘୁଞ୍ଚିଗଲେ । ଦୁଇ କର୍ଣ୍ଣକୁ ହସ୍ତରେ ଆଚ୍ଛାଦନ କଲେ । ତାଙ୍କର ଶରୀର କମ୍ପିତ ହେବା ସଂଗେ ସ୍ୱେଦଯୁକ୍ତ ହୋଇଗଲା । ମୁଖ ଶୁଷ୍କ ହେଲା । ସତେକି ସେ ଶବ୍ଦଟିଏ ଉଚ୍ଚାରଣ କରିବାର ସାମର୍ଥ୍ୟ ହରାଇ ବସିଲେ ।

ତଥାପି ନିଜକୁ ସଂବରଣ କରି କହିଲେ, "ମୋତେ ଆପଣ ଏପରି ଅନୈତିକ କଥା କିପରି କହୁଛନ୍ତି ? ଏହା ପାପ ମହାପାପ ।"

- ପାପ ! କ'ଣ ପାପ ? ବିସ୍ମିତ ହେଲେ ଉର୍ବଶୀ ।

- ମାତା ଓ ପୁତ୍ର ମଧ୍ୟରେ ସମ୍ପର୍କ ଘୋର ପାପ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହା କଳ୍ପନା କରିବା ବା ଉଚ୍ଚାରଣ କରିବାରେ ମଣିଷ ନରକଗତି ପ୍ରାପ୍ତ ହୁଏ ।

- ତୁମେ ମତେ ମାତା କହିବାର ଅର୍ଥ କ'ଣ ?

- ଆପଣ ମୋର ପିତା ଦେବରାଜ ଇନ୍ଦ୍ରଙ୍କର ପ୍ରିୟତମା, ପତ୍ନୀସ୍ୱରୂପା । ସେହି ସୂତ୍ରରେ ଆପଣ ମୋର ମାତା ଓ ପୂଜନୀୟା ।

ଏଥର ଉର୍ବଶୀ ଏକ ଅପୂର୍ବ ହସ ହସି କହିଲେ, "ଅର୍ଜୁନ ମୁଁ କାହାରି ଜାୟା ନୁହେଁ ଜନନୀ ନୁହେଁ, ଭଗିନୀ ବା କନ୍ୟା ନୁହେଁ । ମୁଁ କେବଳ ଜଣେ ନାରୀ । ପୁରୁଷ ମତେ କେବଳ ଆକାଂକ୍ଷା କରେ ଶୃଂଗାର ସୁଖ ପାଇଁ । ତୁମେ ଯେ କହିଲ ମୁଁ ଦେବରାଜ ଇନ୍ଦ୍ରଙ୍କର ପ୍ରିୟା, ତାହା ଠିକ୍ । କିନ୍ତୁ ସେହି ଦେବସଭାରେ ଉପସ୍ଥିତ ଥିବା ଅନେକ ଦେବତା, ଗନ୍ଧର୍ବ, ଯକ୍ଷ ଓ ସିଦ୍ଧଗଣଙ୍କର ମଧ୍ୟ ମୁଁ ପ୍ରିୟତମା ନାରୀ । ଇନ୍ଦ୍ର ମୋର ପ୍ରଭୁ । ସେ ଯାହା ସହିତ ମତେ ରାତ୍ରିଯାପନର ନିର୍ଦ୍ଦେଶ ଦିଅନ୍ତି ତାହା ମୁଁ ପାଳନ କରିଥାଏ । ସେଥିରେ ମୋର ରୁଚିଅରୁଚିର ପ୍ରଶ୍ନ ଉଠେନାହିଁ । ସତ କହିବାକୁ ଗଲେ ରାଜା ପୁରୁରବାଙ୍କ ପରେ ମୋ ମନରେ ଯଦି କେଉଁ ପୁରୁଷ ପ୍ରତି ତୀବ୍ର କାମଭାବନା ସୃଷ୍ଟି ହୋଇଛି, ସେ ହେଉଛ ତୁମେ । ଦେବସଭାରେ ଦେବଭିନ୍ନ ମର୍ତ୍ତ୍ୟର ମାନବ ଭାବରେ ତୁମେ ହିଁ ଏକମାତ୍ର ପୁରୁଷ ସେଠାରେ ଉପସ୍ଥିତ ଥିଲ । ତୁମର ଉଜ୍ଜ୍ୱଳ ଶ୍ୟାମଳକାନ୍ତି, ସୌମ୍ୟକାନ୍ତ ରୂପ, କ୍ଷତ୍ରିୟ ବଂଶଜ ରାଜପୁତ୍ରର ଗାରିମା ମତେ ଖୁବ୍ ଆକର୍ଷଣୀୟ ମନେ ହୋଇଥିଲା । ତୁମକୁ ପାଇବାର ତୀବ୍ର କାମନା ମୋ ଭିତରେ ଜାଗରୁକ ହୋଇଥିଲା । ତା' ସତ୍ତ୍ୱେ ମୁଁ ନିଜର ସୀମା ଲଂଘନ କରି ସ୍ୱତଃ ତୁମ ନିକଟକୁ ଆସିନଥାନ୍ତି । ଦେବରାଜଙ୍କର ବିନାନୁମତିରେ ମୁଁ ସ୍ୱଇଚ୍ଛାରେ ପରିଚାଳିତ ହୁଏନାହିଁ । ଆଜି ତାଙ୍କର ନିର୍ଦ୍ଦେଶ ପରେ ମୋ ଭିତରେ ତୁମକୁ ସର୍ବୋତଭାବରେ ପାଇବାର ଆକାଂକ୍ଷା ବହୁଗୁଣିତ ହୋଇଛି । ତୁମେ ବିନା ଦ୍ୱିଧାରେ ମତେ ଗ୍ରହଣ କର ।"

ଅର୍ଜୁନ ତାଙ୍କ କଥା ଶୁଣି ଲଜ୍ଜାନ୍ୱିତ ହେଲେ ଓ ଖୁବ୍ ନମ୍ର ଭାବରେ କହିଲେ, "ହେ ବରାନନେ ! ଆପଣ ଯାହା ମତେ କହିଲେ ତାହା ମୋର ଶୁଣିବା ଉଚିତ ନୁହେଁ । ମୋ ନିକଟରେ କୁନ୍ତୀଦେବୀ ଓ ଇନ୍ଦ୍ରପତ୍ନୀ ଶଚୀ ଯେପରି ମାନନୀୟା ଆପଣ ମଧ୍ୟ ସେହିପରି ମାନନୀୟା ।"

ଏଥର ଉର୍ବଶୀଙ୍କୁ ଅର୍ଜୁନଙ୍କର ବିନୟ ତାଙ୍କ ପ୍ରତି ଉପେକ୍ଷାଭାବ ବୋଲି ମନେହେଲା । ସେ ଟିକେ ବିରକ୍ତି ପ୍ରକାଶ କରି କହିଲେ, "ତୁମେ ଯଦି ମତେ ମାତା

ଜ୍ଞାନ କରୁଥିଲ ତେବେ ଆଜି ଦେବସଭାରେ ମୁଁ ନୃତ୍ୟ ପ୍ରଦର୍ଶନ କରିବାବେଳେ ତୁମେ ମତେ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଥିଲ କାହିଁକି ? ତୁମ ମୁଖମଣ୍ଡଳରେ ଏକ ମୁଗ୍ଧ ବିଭୋର ଭାବ ଯେ ଲାଗି ରହିଥିଲା, ତାହା କ'ଣ ମୋର ଦୃଷ୍ଟିଭ୍ରମ ଥିଲା ?'

"ନାଁ, ଦେବୀ ତାହା ଆପଣଙ୍କର ଦୃଷ୍ଟିଭ୍ରମ ନଥିଲା । ଆପଣଙ୍କୁ ଦର୍ଶନ କରିବାବେଳେ ମୋର ମନେ ହେଉଥିଲା ଏହି ଯେ ଦିବ୍ୟ ସୌନ୍ଦର୍ଯ୍ୟର ଅଧିକାରିଣୀ ସ୍ୱର୍ଗଲୋକର ସୁଷମା ଦେବୀ ଉର୍ବଶୀ ହେଉଛନ୍ତି ପୌରବ ବଂଶର ଜନନୀ । ମୋର ମାତୃରୂପା । ଏତଦ୍‌ବ୍ୟତୀତ ହେ ଦେବୀ ! ଆପଣଙ୍କର ନୃତ୍ୟକଳା ଦର୍ଶନ କରିବାବେଳେ ମୋର ଉପଲବ୍‌ଧି ହେଉଥିଲା ଏହି କଳା କିପରି ଆପଣଙ୍କର ଅଙ୍ଗବଲ୍ଲରୀରେ ଚରମ ଉତ୍କର୍ଷତା ଲାଭ କରିପାରିଛି । ଚିତ୍ରସେନ ଗନ୍ଧର୍ବଙ୍କ ନିକଟରୁ ଶିକ୍ଷା କରିଥିବା ମୋର ନୃତ୍ୟଜ୍ଞାନ କେତେ ସ୍ୱଳ୍ପ, କେତେ ସୀମିତ, ତାହା ହିଁ ଥିଲା ହୁଏତ ମୋର ମୁଗ୍ଧତାର କାରଣ । ଅନ୍ୟ କିଛି ନୁହେଁ । ମୋର ସେହି ଦୃଷ୍ଟି ଯଦି ଆପଣଙ୍କ ମନରେ କିଛି ବିପରୀତ ଭାବ ସୃଷ୍ଟି କରିଛି, ତେବେ ହେ ମାତ: ଆପଣ ମତେ କ୍ଷମା କରନ୍ତୁ ।" ଅର୍ଜୁନ ନୀରବ ରହିଲେ ।

କିନ୍ତୁ ତାଙ୍କର ନୀରବତା ଉର୍ବଶୀଙ୍କୁ ଶାନ୍ତ କରିବା ପରିବର୍ତ୍ତେ କୁପିତ କଲା । ସେ କଠୋର ସ୍ୱରରେ କହିଲେ, "ହେ ପାର୍ଥ ! ତୁମେ ବାରମ୍ବାର ମତେ ମାତା ସଂବୋଧନ କରି ଅପମାନିତ କରୁଛ । ମନେରଖ ମୋର ନାରୀତ୍ୱ ସହିତ ମାତା ଭଗିନୀ ପ୍ରଭୃତି ଅବାନ୍ତର ସମ୍ପର୍କର ସୂତ୍ର ଯୋଡ଼ନାହିଁ । ମୁଁ କେବଳ ନାରୀ, କାମିନୀ, ମୋହିନୀ । ମୋର କାର୍ଯ୍ୟ ହେଲା ପୁରୁଷକୁ କାମମୋହିତ କରିବା ସଂଗେ ନିଜର କାମନା ପୂରଣ କରିବା । ଦେବକାର୍ଯ୍ୟ ସାଧନ ପାଇଁ ଦେବରାଜଙ୍କର ଆଜ୍ଞାରେ ଯେକୌଣସି ପୁରୁଷକୁ ବଶୀଭୂତ କରିବା ଓ ସିଦ୍ଧ ଋଷିଙ୍କର ତପଃ ଭଙ୍ଗ କରିବା ମୋର କର୍ତ୍ତବ୍ୟର ଅନ୍ତର୍ଭୁକ୍ତ । ହେ ପାର୍ଥ, ଆଜି ମୁଁ ତୁମକୁ ସଂଭୋଗସୁଖ ଦେବା ଉଦ୍ଦେଶ୍ୟ ନେଇ ଆସିଥିଲେ ବି ପ୍ରକୃତରେ ମୁଁ ତୁମ ରୂପରେ ଅଧିକ ଆକୃଷ୍ଟ ହୋଇ ତୁମ ସଂଗସୁଖ ଇଚ୍ଛା କରୁଛି । ତୁମେ ଅଯଥାରେ ତୁମ ମର୍ତ୍ତ୍ୟରେ ପ୍ରଚଳିତ ନୈତିକତା, ପାପବୋଧ ନିଷିଦ୍ଧ ସମ୍ପର୍କର କଥା କହି ନିଜକୁ ସଂକୁଚିତ କରନାହିଁ ।

ଆସ ଅର୍ଜୁନ, ମୋର ଏହି ମୃଣାଳନିନ୍ଦି ବାହୁଯୁଗଳକୁ ତୁମର କଣ୍ଠଲଗ୍ନ କର । ମତେ ନିବିଡ଼ ଭାବରେ ଆଲିଙ୍ଗନ କରି ଅନୁଭବ କର ଯେ ଏପର୍ଯ୍ୟନ୍ତ ନୀତି ଅନୀତିର ଦ୍ୱନ୍ଦ୍ୱରେ ପଡ଼ି ତୁମେ କେଉଁ ମହାସୁଖକୁ ଏଡ଼େଇ ଦେଉଥିଲ । ଆସ ।"

ଉର୍ବଶୀଙ୍କର କାମକମ୍ପିତ ଶରୀର ଓ ତାଙ୍କୁ ଆଲିଙ୍ଗନ କରିବାକୁ ପ୍ରସାରିତ ହୋଇ ଆସୁଥିବା ବାହୁ ଯୁଗଳକୁ ଏଡେଇ ଦେବାପାଇଁ ଅର୍ଜୁନ ବେଶ୍ ପଛକୁ ଘୁଞ୍ଚିଗଲେ ଓ କରଯୋଡ଼ି କହିଲେ, "ହେ ଶୁଭାନନେ, ମୁଁ ଜଣେ ମର୍ତ୍ତ୍ୟର ସାଧାରଣ ମାନବ । ମୁଁ ସହଜରେ ପ୍ରଲୋଭନର ଶରବ୍ୟ ହୋଇଯାଏ । ନାରୀର ଆକର୍ଷଣ ମୋ ନିକଟରେ ଅପ୍ରତିହତ ହେବା ଏକ ସ୍ୱାଭାବିକ କଥା । କିନ୍ତୁ ମୁଁ ପୃଥିବୀରେ ପ୍ରାଣିଗଣଙ୍କ ମଧ୍ୟରେ ଅଭିବ୍ୟକ୍ତ ହୋଇଥିବା ଏକ ଉତ୍ତରିତ ଚେତନସତ୍ତା । ଏକ ମହତ୍ତର ଜୀବନ ବଞ୍ଚିବା ଲକ୍ଷ୍ୟରେ ମୁଁ ନିଜ ପାଇଁ ନୀତିନିୟମ, ଶାସ୍ତ୍ର ପ୍ରଣୟନ କରିଛି । ଜୀବନରେ ଶୁଦ୍ଧତା ରକ୍ଷା କରିବା ପାଇଁ କେତେକ ସମ୍ପର୍କକୁ ନିଷିଦ୍ଧ ଘୋଷଣା କରିଛି; ଯାହା ଲଂଘନ କରିବାର ଅର୍ଥ ପଶୁ ସ୍ତରକୁ ଖସିପଡ଼ିବା । ମୁଁ ଜାଣେ, କାୟ, ମନ ଓ ବାକ୍ୟରେ ପ୍ରକାଶିତ ହେଉଥିବା ପ୍ରବେଗମାନ ଓ ଉଚ୍ଚାରିତ ହେଉଥିବା ଶବ୍ଦମାନଙ୍କ ପାଇଁ ମଧ୍ୟ ମୁଁ ଦାୟୀ ହେବାକୁ ବାଧ୍ୟ । ତେଣୁ ଜୀବନବ୍ୟାପୀ ସାଧନା କରେ ସେସବୁକୁ ନିୟନ୍ତ୍ରଣରେ ରଖିବା ପାଇଁ । ହାରୁଥାଏ ପୁଣି ଜିତୁଥାଏ । କିନ୍ତୁ ସବୁ ସମୟରେ ମୁଁ ମୋର କ୍ରିୟା ପ୍ରତିକ୍ରିୟା ସମ୍ପର୍କରେ ସଚେତନ ଥାଏ ।

ହେ ସ୍ୱର୍ଲୋକବାସିନୀ, ତୁମେ କେବଳ ଗୋଟିଏ ଉଦ୍ଦେଶ୍ୟକୁ ମନରେ ପରିପାଳିତ କର । ସୁଖ ଦେବା ଓ ସୁଖ ପାଇବା । ତୁମର ଉତ୍‌ଥାନ ନାହିଁ ବା ପତନ ମଧ୍ୟ ନାହିଁ । ଏକ ହିଁ ଭୂମିରେ ତୁମେ ସ୍ଥିର ଥାଅ । କିଛି ହରାଇବାର ଭୟ ତୁମର ନଥାଏ ବା ଉଚ୍ଚତର କିଛି ପ୍ରାପ୍ତିର ଆକାଂକ୍ଷା ମଧ୍ୟ ନଥାଏ ।

ବିଧାତାଙ୍କର ତୁମେ ଏକ ସୁନ୍ଦରତମ ସୃଷ୍ଟି ମାତ୍ର । ତୁମର ସୌନ୍ଦର୍ଯ୍ୟ ହିଁ ବିଧାତାର ସନ୍ତୋଷର କାରଣ; ଅଧିକ କିଛି ନୁହେଁ । ତୁମ ଭିତରେ ତୁମ ସ୍ରଷ୍ଟାଙ୍କୁ ଜାଣିବାପାଇଁ ତାଙ୍କୁ ଅନୁଭବ କରିବାପାଇଁ ଆକାଂକ୍ଷାର ବୀଜଟିଏ ବପିତ ହୋଇନାହିଁ । ତୁମର ସୃଷ୍ଟି ପରଠାରୁ ତୁମର ଅସ୍ତିତ୍ୱ ତାଙ୍କଠାରୁ ବିଚ୍ଛିନ୍ନ ହୋଇଯାଇଛି, ସ୍ୱତନ୍ତ୍ର ହୋଇଯାଇଛି । ତେଣୁ ତୁମକୁ ସେ ହଁ ଓ ନାଁର ଦ୍ୱନ୍ଦ୍ୱ ଭିତରେ ପରୀକ୍ଷା କରନ୍ତି ନାହିଁ । ପତନ ଓ ଉତ୍ତରଣ ତୁମ ପାଇଁ ନୁହେଁ । କାରଣ ଦେବଲୋକରେ ପାପପୁଣ୍ୟର ପରିଭାଷା ଭିନ୍ନ ।

ହେ ଦେବୀ, ମର୍ତ୍ତ୍ୟର ଏକ ଆସ୍ପୃହାବନ୍ତ ମଣିଷକୁ ସେ ପ୍ରତିନିୟତ ପରୀକ୍ଷା କରୁଥାନ୍ତି । ତାଙ୍କ ସୃଷ୍ଟିର ପ୍ରତି ଅଣୁକଣାରୁ ଆରମ୍ଭ କରି ମହାକାଶ ପର୍ଯ୍ୟନ୍ତ ପରିବ୍ୟାପ୍ତ ସ୍ଥିତିରେ ସ୍ରଷ୍ଟାର ପରିଚୟ ସେ ଅଦୃଶ୍ୟ ଲିପିରେ ଲେଖିଦେଇଥାନ୍ତି । ତାଙ୍କୁ ବୁଝିବା ପାଇଁ ମଧ୍ୟ ସେ ନିଜେ ସାହାଯ୍ୟ କରୁଥାନ୍ତି । ତା'ର ପତନ ତାଙ୍କର ଦୁଃଖର କାରଣ ହୁଏ ।

କିନ୍ତୁ ସେ ହିଁ ସେ ଅନ୍ଧଗହ୍ୱର ମଧ୍ୟରୁ ପତିତ ସତ୍ତାର ହାତ ଧରି ଉଠାଇ ଆଣନ୍ତି ଓ ତାକୁ ଉତ୍‌ଥାନର ମାର୍ଗ ଦର୍ଶାଇ ଦିଅନ୍ତି । ବାରମ୍ବାର ଏପରି ଘଟୁଥିଲେ ବି ସେ କ୍ଳାନ୍ତ ହୁଅନ୍ତି ନାହିଁ ବରଂ ପ୍ରତି ପତନ ପରେ ତାକୁ ଅଧିକ ଶକ୍ତି ସାମର୍ଥ୍ୟ ଯୋଗାଇ ଦିଅନ୍ତି ଅଗ୍ରସର ହେବାପାଇଁ ।

ହେ ସୌନ୍ଦର୍ଯ୍ୟର ଦେବୀ, ଆଜି ମୁଁ ମର୍ତ୍ତ୍ୟରୁ ସ୍ୱଦେହରେ ଆସି ସ୍ୱର୍ଗଲୋକରେ ଉପସ୍ଥିତ ହୋଇପାରିଛି ତାହା ଦେବରାଜଙ୍କର ପୁତ୍ର ହୋଇଥିବା କାରଣରୁ କେବଳ ନୁହେଁ ।

ଜନ୍ମଜନ୍ମାନ୍ତର ଧରି ମୁଁ ଘୋର ତପସ୍ୟା କରି ନିଜକୁ ସ୍ୱର୍ଗର ଯୋଗ୍ୟ କରିପାରିଛି । ସ୍ୱର୍ଗ ତ କିଛି ମାତ୍ର ନୁହେଁ । ମୋର ତପଃସିଦ୍ଧି ମତେ ପୁରୁଷୋତ୍ତମଙ୍କର ସଖା ହେବାର ସୌଭାଗ୍ୟ ପ୍ରଦାନ କରିଛି ।

ହେ ମାତ ! କୃଷ୍ଣସଖା ଅର୍ଜୁନ କୌଣସି ପ୍ରଲୋଭନର ବଶବର୍ତ୍ତୀ ହୋଇପାରିବ ନାହିଁ । ମୋର ଚିନ୍ତା ଚେତନା ବିଚାର, ଅନୁଭବ ସବୁକିଛି ତାଙ୍କରି ଚେତନାରେ ନିର୍ଜିତ ହୋଇ ରହିଛି । ମତେ କ୍ଷମାକର ଓ ସ୍ୱପୁରକୁ ପ୍ରତ୍ୟାବର୍ତ୍ତନ କର ।”

ଅର୍ଜୁନଙ୍କ କଥାର କୌଣସି ପ୍ରଭାବ ଉର୍ବଶୀଙ୍କ ଉପରେ ନଥିଲା । ସେ କେବଳ ଗୋଟିଏ କଥା ବୁଝି ସାରିଥିଲେ ଯେ ତାଙ୍କର ଅଭିସାର ବ୍ୟର୍ଥ ହୋଇଯାଇଛି ଓ ତାଙ୍କର ପ୍ରେମ ନିବେଦନ ପ୍ରତ୍ୟାଖ୍ୟାତ ହୋଇଛି । ଉର୍ବଶୀ ଏପର୍ଯ୍ୟନ୍ତ କୌଣସି କ୍ଷେତ୍ରରେ ବ୍ୟର୍ଥମନୋରଥା ହୋଇ ନଥିଲେ । ଉର୍ବଶୀଙ୍କର ଦୁର୍ଲଭ ସାନ୍ନିଧ୍ୟ ଟିକେ ପାଇଁ ଦେବତା, ଯକ୍ଷ, ଗନ୍ଧର୍ବ ଓ ଋଷିମୁନିଙ୍କର ବ୍ୟାକୁଳତାର କଥା ସେ ଜାଣନ୍ତି । ତାଙ୍କର ଥରଟିଏ କଟାକ୍ଷପାତ, ସାମାନ୍ୟ ସ୍ମିତହାସ, ଯେଉଁ ପୁରୁଷ ପାଇଁ ଉଦ୍ଦିଷ୍ଟ ହୁଏ ସେ ନିଜକୁ କୃତାର୍ଥ ମନେ କରିଥାଏ । ତାଙ୍କର ସ୍ପର୍ଶ ଟିକେ ଲାଭ କରୁଥିବା ପୁରୁଷର ଜୀବନ ଧନ୍ୟ ହୋଇଯାଏ । ଯେକୌଣସି ପୁରୁଷ ତାଙ୍କର ଉପସ୍ଥିତିରେ ନିଜର ସ୍ଥିତି ହରାଇବସେ । ସେ ଯାହା ଚାହାନ୍ତି ତାହାହିଁ ହୋଇଥାଏ ।

ସେଠି ନାଁ ଦ୍ୱନ୍ଦ୍ୱ ଥାଏ ନାଁ କୌଣସି ପ୍ରଶ୍ନବାଚୀ । ପୁରୁଷର ପରିପୂର୍ଣ୍ଣ ଆତ୍ମସମର୍ପଣ ହିଁ ତାଙ୍କର ପ୍ରାପ୍ତି ।

ଅଥଚ ଆଜି ଏ ମର୍ତ୍ତ୍ୟାଗତ ସାଧାରଣ ମାନବ ଜଣକ ତାଙ୍କୁ ଅଦ୍ଭୁତ ନୀତିନିୟମର ଦ୍ୱାହିଦେଇ ପ୍ରତ୍ୟାଖ୍ୟାନ କରିବାକୁ ସାହସ କରୁଛି । ଉର୍ବଶୀଙ୍କର ତୀବ୍ର କାମୋତ୍ତେଜନା ପ୍ରଶମିତ ହୋଇ ସେ ସ୍ଥାନରେ ପ୍ରବଳ କ୍ରୋଧାଗ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । ସେ

ଭୁଲିଗଲେ ଅର୍ଜୁନ ଦେବରାଜ ଇନ୍ଦ୍ରଙ୍କର ପୁତ୍ର । ଭୁଲିଗଲେ ପୃଥିବୀରେ ଅନୁଷ୍ଠିତ ହେବାକୁ ଥିବା ମହାନ କର୍ମରେ ଏହି ମହାନାୟକଙ୍କର ଭୂମିକା । ସେ କେବଳ ଅନୁଭବ କରୁଥିଲେ ଅଭିସାରିକା ଉର୍ବଶୀର ପ୍ରତ୍ୟାଖ୍ୟାତ ହେବାର ଅପମାନ ଜ୍ୱାଳା ।

ତାଙ୍କ ସମ୍ମୁଖରେ ବିନୀତ ଭାବରେ ଦଣ୍ଡାୟମାନ ପୁରୁଷ ଜଣକ ତାଙ୍କୁ ମହାଅହଂକାରୀ, ଗର୍ବମତ୍ତ, ନିଷ୍ଠୁର ମନେ ହେଲେ । ସେ ଇଚ୍ଛା କରି ତାଙ୍କୁ ଅପମାନିତ କରିଛନ୍ତି ବୋଲି ତାଙ୍କର ମନେ ହେବାରୁ ସେ ଆହତ ସର୍ପିଣୀ ପରି ଗର୍ଜିଉଠି କହିଲେ, "ହେ ଦର୍ପୀପୁରୁଷ ! ତୁମ୍ଭ ପିତାଙ୍କ ନିର୍ଦ୍ଦେଶରେ ମୋର ଏଠାକୁ ଆଗମନ ହୋଇଥିଲା । ମୁଁ ମଧ୍ୟ କାମତାପିତା ହୋଇ ତୁମର ସଂଗ ବାଞ୍ଛା କରୁଥିଲି । କିନ୍ତୁ ତୁମ୍ଭେ ନିଜକୁ ମହାନ ପ୍ରତିପାଦିତ କରିବାପାଇଁ ମତେ ପ୍ରତ୍ୟାଖ୍ୟାନ କରି ଅପମାନିତ କରିଛ । ତେଣୁ ତା'ର ପ୍ରତିଫଳ ତୁମକୁ ଭୋଗ କରିବାକୁ ପଡ଼ିବ । ଯେଉଁ ପୁରୁଷତ୍ୱର ଅହଂକାର ନେଇ ମତେ ପ୍ରତ୍ୟାଖ୍ୟାନ କରିବାକୁ ସାହସ କରିଛ, ତାହା ତୁମେ ହରାଇ ବସିବ । ପୁରୁଷଶ୍ରେଷ୍ଠ ପରିବର୍ତ୍ତେ ତୁମେ ନଂପୁସକରେ ପରିଣତ ହେବ । କେବଳ ସେତିକି ନୁହେଁ ଏଠାରେ ଯେଉଁ ନୃତ୍ୟକଳା ଶିକ୍ଷା କରୁଛ ତା'ର ପରିଣତି ହେବ ଯେ ଏକ ମାନହୀନ ନର୍ତ୍ତକ ଭାବରେ ସ୍ତ୍ରୀମାନଙ୍କ ଗହଣରେ ତୁମେ ଗୋଟେ କ୍ଲୀବର ଜୀବନଯାପନ କରିବ ।"

କ୍ରୋଧରେ ପ୍ରଜ୍ୱଳିତା ଉର୍ବଶୀ ତ୍ୱରିତ ଗତିରେ ସ୍ୱପୁରକୁ ଫେରିଗଲେ ।

କିନ୍ତୁ ତାଙ୍କର ପ୍ରତିଟି ଅଭିଶାପ ବାଣୀ ଅର୍ଜୁନଙ୍କର ମସ୍ତକରେ ଅକାଳ ବଜ୍ରପାତ ଘଟାଇ ଚାଲିଥିଲା । ସେ ସ୍ଥାଣୁ ପାଲଟି ଯାଇଥିଲେ । ତାଙ୍କର ସ୍ୱର୍ଗାଗମନ ପରଠାରୁ ହୃଦୟରେ ପ୍ରତିଷ୍ଠିତ ହୋଇଥିବା ଦିବ୍ୟ ଆନନ୍ଦ ମୁହୂର୍ତ୍ତକ ମଧ୍ୟରେ ଅପସରି ଯାଇଥିଲା । ଭୟ ଓ ଆତଙ୍କରେ ସେ ବିଚଳିତ ହେବାକୁ ଆରମ୍ଭ କଲେ ।

କିନ୍ତୁ ପରମୁହୂର୍ତ୍ତରେ ସେ ଅନୁଭବ କଲେ ତାଙ୍କ ହୃଦୟର ଗଭୀରତାରେ ଏକ ପ୍ରଗାଢ଼ ପ୍ରଶାନ୍ତି ବିରାଜମାନ କରୁଛି । ସେ ସତ୍ୟ ଓ ନୀତି ପଥରୁ ବିଚ୍ୟୁତ ହୋଇନାହାନ୍ତି, ପ୍ରଲୋଭନ ପାଖରେ ପରାଜିତ ହୋଇ ନିଜକୁ ସମର୍ପି ଦେଇନାହାନ୍ତି । ମର୍ତ୍ତ୍ୟ ମାନବର ନୀତିନିଷ୍ଠ ଅବିଚଳିତ ଚିତ୍ତ ପାଖରେ ସ୍ୱର୍ଗଲୋକର ଯାଦୁକରୀ ମାୟା ନିଷ୍ପ୍ରଭ ହୋଇଯାଇଛି । ଏଇ କେତୋଟି ମୁହୂର୍ତ୍ତର ମହାବିଷମ ପରୀକ୍ଷାର କଷଟି ପଥରରେ ସେ ନିଜ ସୁବର୍ଣ୍ଣସତ୍ତାର ଶୁଦ୍ଧତା ପରଖି ନେଇଛନ୍ତି ଓ ଅତିକ୍ରମି ଯାଇଛନ୍ତି ଚେତନାର କେତୋଟି ସୋପାନ ।

ତାଙ୍କର ଏହି ବଳିଷ୍ଠ ଶୌର୍ଯ୍ୟବନ୍ତ ପୁରୁଷର ଶରୀର ପୌରୁଷ ହରାଇବା ତାଙ୍କ ପାଇଁ ଚରମ ଦୁଃଖ ଓ ଲଜ୍ଜାର କାରଣ ହେବା ନିଶ୍ଚିତ । କିନ୍ତୁ ତାଙ୍କର ପ୍ରାଣ ତ ଏଥିପାଇଁ

କଳୁଷିତ ହେଲାନାହିଁ; ମନ ବିକାରଗ୍ରସ୍ତ ହେଲାନାହିଁ । ଆତ୍ମାର ଔଜ୍ଜ୍ୱଲ୍ୟତ ବହୁଗୁଣିତ ହୋଇପାରିଲା ।

ତେଣୁ ଉର୍ବଶୀଙ୍କର ମଧୁର ଅଭିସାରକୁ ସ୍ୱାଗତ କରିବା ଅପେକ୍ଷା ତାଙ୍କର ଭୟଙ୍କର ଅଭିଶାପକୁ ବରଣ କରିବା ତାଙ୍କ ପାଇଁ ଶତଗୁଣରେ ଶ୍ରେୟସ୍କର ହୋଇଛି ।

ତେବେ ଏ ଘଟଣାତ ଗୋପନ ରଖାଯାଇ ପାରିବନାହିଁ । ତାଙ୍କୁ ଜଣାଇବାକୁ ପଡ଼ିବ । ରାତ୍ରିର ସେହି ଗଭୀର ଯାମରେ ସେ ବ୍ୟାକୁଳ ହୋଇ ପହଞ୍ଚିଲେ ଚିତ୍ରସେନ ଗନ୍ଧର୍ବଙ୍କ ପୁରରେ । ତାଙ୍କ ନିକଟରେ ଉକ୍ତ ଘଟଣାର ବିବରଣୀ ଦେଲେ । ଚିତ୍ରସେନଙ୍କ ପାଇଁ ମଧ୍ୟ ଏହା ସମ୍ପୂର୍ଣ୍ଣ ଅଭାବିତ ଥିଲା । ତାଙ୍କ ପାଖରେ ଏହାର କୌଣସି ସମାଧାନ ନଥିଲା ।

ସେ ନିରୁପାୟ ହୋଇ ଅର୍ଜୁନଙ୍କୁ ସାଙ୍ଗରେ ନେଇ ପହଞ୍ଚିଲେ ଦେବରାଜ ଇନ୍ଦ୍ରଙ୍କ ଭବନରେ । ଅର୍ଜୁନଙ୍କଠାରୁ ଶୁଣିଥିବା ଉକ୍ତ ଘଟଣାର ସବିଶେଷ କଥା ଇନ୍ଦ୍ରଙ୍କୁ ଅବଗତ କରାଇଲେ ।

ଇନ୍ଦ୍ରଙ୍କ ମୁଖରେ ଫୁଟିଉଠିଲା ଏକ ଅଦ୍ଭୁତ ପ୍ରସନ୍ନଭାବ । ଯାହାର ରହସ୍ୟ ଭେଦ କରିବା ଚିତ୍ରସେନଙ୍କ ପକ୍ଷରେ ସମ୍ଭବ ନଥିଲା । ସେ ବିନା ପ୍ରଶ୍ନରେ ଅପସରି ଗଲେ ।

ଦେବରାଜ ଶାପଗ୍ରସ୍ତ ହୋଇଥିବା ଅର୍ଜୁନଙ୍କୁ ନିର୍ଜନ ସ୍ଥାନକୁ ଡାକିଆଣି ସାନ୍ତ୍ୱନାପ୍ରଦାନ କରି କହିଲେ "ହେ ଅର୍ଜୁନ, ଆଜି ମୁଁ ତୁମକୁ ପୁତ୍ର ରୂପରେ ପାଇଥିବାରୁ ଧନ୍ୟ ହୋଇଯାଇଛି । ଧନ୍ୟ ତୁମର ମାତା ପୃଥା, ଯିଏ ଏପରି ସତ୍ୟବାଦୀ, ନୀତିନିଷ୍ଠ ସ୍ଥିରଚେତା ଓ ସଂଯମୀ ପୁତ୍ରକୁ ଜନ୍ମ ଦେଇଛନ୍ତି । ଆଜି ତୁମର ଇନ୍ଦ୍ରିୟମାନଙ୍କୁ ନିୟନ୍ତ୍ରଣରେ ରଖିପାରିବାର ସାମର୍ଥ୍ୟ ନିକଟରେ ସିଦ୍ଧ ଓ ଯୋଗୀମାନେ ମଧ୍ୟ ପରାଜିତ ହୋଇଛନ୍ତି । ଯାହା ଦେବତାର ସାଧ୍ୟାତୀତ ତୁମେ ତାହା ସାଧି କରିପାରିଛ ।

ହେ ଧନଂଜୟ, ତୁମେ ନିଷ୍ପାପ ହୃଦୟରେ ଦେବୀ ଉର୍ବଶୀଙ୍କୁ ମାତା ରୂପରେ ଜ୍ଞାନ କରିଛ । ତେଣୁ ସେ ତୁମପାଇଁ ମାତା ଭିନ୍ନ ଅନ୍ୟ କିଛି ନୁହନ୍ତି । ମନେରଖ ମାତାର ଅଭିଶାପ ମଧ୍ୟ ସନ୍ତାନ ପାଇଁ ଆଶୀର୍ବାଦ ପାଲଟିଯାଏ । ତୁମ କ୍ଷେତ୍ରରେ ତାହାହିଁ ଘଟିବ । ମୁଁ ସ୍ପଷ୍ଟ ଦେଖିପାରୁଛି ଯେଉଁ ମହାସଂଗ୍ରାମ ପୃଥିବୀରେ ଘଟିବାକୁ ଯାଉଛି ତା' ପୂର୍ବରୁ ଯେଉଁପ୍ରକାର ପ୍ରସ୍ତୁତିପର୍ବ ଆରମ୍ଭ ହୋଇଛି ସେଥିରେ ତୁମର ଓ ତୁମ ଭ୍ରାତା ସକଳଙ୍କର ରହିଛି ମହାନ୍ ଭୂମିକା । ସେଥିପାଇଁ ତୁମେମାନେ ବହୁ ଅକଳ୍ପନୀୟ ପରିସ୍ଥିତି ଭିତରେ ଗତିକରିବ । ସମୟ ଆସିବ ଯେତେବେଳେ ତୁମକୁ ଆତ୍ମଗୋପନ କରିବାକୁ ହେବ

ସ୍ତ୍ରୀମାନଙ୍କ ଗହଣରେ ଜଣେ ନୃତ୍ୟଗୁରୁ ଭାବରେ । ସେହି ଏକବର୍ଷ ତୁମେ ପୁରୁଷତ୍ୱବିହୀନ ହୋଇ ନାରୀମାନଙ୍କ ମେଳରେ ସ୍ୱଚ୍ଛନ୍ଦରେ ବିଚରଣ କରିବ । ଦେବୀ ଉର୍ବଶୀଙ୍କର ଅଭିଶାପ ତୁମ ପାଇଁ ବରଦାନ । ତାଙ୍କର ଅଜାଣତରେ ହେଲେ ମଧ୍ୟ ତୁମେ ତାଙ୍କୁ ମାତାଜ୍ଞାନ କରିଥିବାରୁ ତାଙ୍କର ଅଭିଶାପ ତୁମ ପାଇଁ ସୁରକ୍ଷାର ବଳୟ ପାଲଟିଯିବ ।

ହେ ପୁତ୍ର, ମନରୁ ସବୁ ଶଙ୍କା ଦୂରକରି ସ୍ୱଚ୍ଛ ମନରେ ଏହି ସ୍ୱର୍ଗବାସ ସମୟକୁ ନୃତ୍ୟ, ବାଦ୍ୟ ଓ ସଂଗୀତ ଶିକ୍ଷାରେ ନିୟୋଜିତ କର ।"

ଅର୍ଜୁନ ହୃଦୟରେ କୃଷ୍ଣଙ୍କୁ ସ୍ମରଣ କଲେ । ତାଙ୍କ ଚିତ୍ତପଟଳରେ ଭାସିଉଠିଥିଲା ତାଙ୍କର ପରମସଖାଙ୍କର ମୋହନ ରୂପ । ଅଧରରେ ତାଙ୍କର ମୃଦୁ ମନ୍ଦ ହାସର ସୁମଧୁର ପ୍ରକାଶ, ଆଖିରେ ଦିବ୍ୟ ଆଶ୍ୱାସନାକାରୀ ଦୃଷ୍ଟି, ମସ୍ତକରେ ଅଲୋଡିତ ମୟୂର ଚନ୍ଦ୍ରିକା ।

ଅର୍ଜୁନଙ୍କର ଅନୁଭବ ହେଲା ଏହାଙ୍କର କ୍ଷଣିକ ସାନ୍ନିଧ ନିକଟରେ ଏହି ସ୍ୱର୍ଗବାସର ସୁଖ କେତେ ତୁଚ୍ଛ !

ତାଙ୍କର ହୃଦୟ କାହିଁ ଦୂରରେ ଛାଡ଼ିଆସିଥିବା ପୃଥିବୀକୁ, ନିଜର ଜଗତକୁ ଫେରିଆସିବା ପାଇଁ ବ୍ୟାକୁଳ ହେଲା । ଏହି ନକ୍ଷତ୍ରଖଚିତ ମହାକାଶ ମଧ୍ୟରେ କେଉଁଠି ତାଙ୍କର ଆବାସଭୂମି ! କେଉଁଠି ତାଙ୍କର ପ୍ରିୟ ମର୍ତ୍ତ୍ୟଲୋକ !

ଅର୍ଜୁନଙ୍କର ଆଖି ନିର୍ଣ୍ଣୟ କରିପାରୁନଥିଲା ତା'ର ପାର୍ଥିବ ସ୍ଥିତି । କିନ୍ତୁ ସେ ନିଜ ଭିତରେ କୋଉଠି ଶୁଣିପାରୁଥିଲେ ଧରଣୀ ତାଙ୍କୁ ଆହ୍ୱାନ କରୁଥିବାର ସ୍ୱର; ସେ ଅନୁଭବ କରିପାରୁଥିଲେ ପୃଥିବୀ ତା'ର ବିଜୟୀ ପୁତ୍ରକୁ ସ୍ୱାଗତ କରିବାପାଇଁ ସତେ ଯେପରି ତା'ର ସହସ୍ରବାହୁ ପ୍ରସାରିତ କରି ତାଙ୍କୁ ଅପେକ୍ଷା କରୁଛି ।



# ଚିତ୍ରରୂପ

ପୁରୀ ସମୁଦ୍ର କୂଳ । ସନ୍ଧ୍ୟା ଆହୁରି ବାକି ଅଛି । ବେଳାଭୂମିରେ ମଣିଷମାନଙ୍କର ଗହଳଚହଳ । କିଛି କିଛି ସମୟର ବ୍ୟବଧାନରେ ଡଗଡଗ ହୋଇ ବାଲିରେ ଚାଲି ଯାଉଥିବା ଘୋଡ଼ା ଓ ଓଟ ପିଠିରେ ବସିଥିବା ପିଲାଙ୍କର ଭୟ ଓ ଆନନ୍ଦମିଶା କଳରୋଳ । ଶଂଖ ଶାମୁକା ଓ ମାଳିର ଡାଲା ଧରି ବୁଲୁଥିବା ଲୋକଙ୍କର ଗ୍ରାହକର ଦୃଷ୍ଟି ଆକର୍ଷଣ ପାଇଁ ସକଳ ପ୍ରକାର ଚେଷ୍ଟା । ମସଲା ମୁଢ଼ି ବୁଟଭଜାର ଖେଳେଇ ହୋଇ ଯାଉଥିବା ବାସ୍ନା । ସବୁ ମିଶାମିଶି ଏକ ଆନନ୍ଦକର ପରିବେଶ ।

ସମୁଦ୍ରର ଢ଼େଉ ଉଠିଆସି ବେଳାଭୂମିର ଛୁଇଁ ଯାଉଥିବା ଶେଷ ଅଂଶର କିଛି ପଛକୁ ପଡ଼ିଛି ଧାଡ଼ିଧାଡ଼ି ପ୍ଲାଷ୍ଟିକ ଚୌକୀ । ସେଇଥିରୁ ଆଗଧାଡ଼ିର ଗୋଟିକରେ ବସିଥିଲେ ଲପିତା । ପାଖରେ ଥୁଆ ହୋଇଛି ପୁଅବୋହୂ ଓ ନାତିର ଜିନିଷପତ୍ର । ସେମାନେ ସବୁ ସମୁଦ୍ରର ଢ଼େଉ ସଙ୍ଗେ ଗୋଡ଼ିଆଗୋଡ଼ି ହୋଇ ଖେଳୁଛନ୍ତି । ଢ଼େଉ ସବୁ ଆଗକୁ ମାଡ଼ିଆସି ପଛକୁ ଫେରିଯିବା ବେଳେ ତା'ପଛରେ ବେଶି ବାଟ ଦଉଡ଼ିଯାଇ ପାରୁନାହାନ୍ତି । ପାଲଟା ଢ଼େଉ ବେଶି ବିକ୍ରମରେ ମାଡ଼ିଆସୁଛି । ବାପ ଓ ପୁଅ ଢ଼େଉ ସାଙ୍ଗରେ ଭଲ ତାଳମେଳ ରଖିପାରୁଛନ୍ତି । କିନ୍ତୁ ବୋହୂଟା ପୂରା ଓଦା ହୋଇଗଲାଣି ।

ଲପିତାଙ୍କର ମନଥିଲେ ବି ଆଣ୍ଠୁସମସ୍ୟା କେବେଠାରୁ ଆରମ୍ଭ ହୋଇଗଲାଣି । ଆଉ ସମୁଦ୍ର ଭିତରକୁ ପଶିବାର ସାହସ ନାହିଁ । ପାଣି ଟିକେ ଆଣି ମୁଣ୍ଡରେ ଯାହା ସିଞ୍ଚି ଦେଇଛନ୍ତି । ଚୌକୀ ଉପରେ ବସି ସମୁଦ୍ର ଓ ମଣିଷଙ୍କ ଖେଳକୁ ଉପଭୋଗ କରୁଥାନ୍ତି ।

ତାଙ୍କର ଦୃଷ୍ଟିପଡ଼ିଲା ତାଙ୍କଠାରୁ ଟିକିଏ ଦୂରରେ ଦଶଏଗାର ବର୍ଷର ଭାଇଭଉଣୀ ଦୁଇଜଣ ହାତ ଧରାଧରି ହୋଇ ପାଣିରେ ପଶୁଥାନ୍ତି ପୁଣି ଢ଼େଉ ମାଡ଼ିଆସିବା ବେଳକୁ କିଲ୍‌କିଲ୍ ହୋଇ ବେଳାଭୂମିକୁ ଦଉଡ଼ି ଆସୁଥାନ୍ତି ।

ଏ ଦୃଶ୍ୟଟି ଭିତରେ ମଜ୍ଜି ଯାଇଥିବା ଲପିତା କେତେବେଳେ ଅତୀତରେ ଏମିତି ଏକ ସମୟ ଭିତରକୁ ଚାଲିଯାଇଥିଲେ ଯେ ନିଜେ ବୁଝିପାରୁନଥିଲେ ପ୍ରକୃତରେ ତାଙ୍କ ଆଖି ଆଗରେ କ'ଣ ଘଟୁଛି । ସେ ନିଜେ ସାତ ଆଠ ବର୍ଷର ଝିଅଟିଏ ହୋଇ ସାରିଥାନ୍ତି ସାଙ୍ଗରେ ତାଙ୍କଠାରୁ ପ୍ରାୟ ଚାରିବର୍ଷର ବଡ଼ ଭାଇ, ବାପା, ମା ଓ ଦାଦାଙ୍କର ଦୁଇବର୍ଷର ସାନ ପୁଅଟିଏ । ସମସ୍ତେ ବେଳାଭୂମିରେ । ହଠାତ୍ ସେ ସାନଟା ରାହାଧରି କାନ୍ଦିବାକୁ ଆରମ୍ଭ କଲା । ମା ଯେତେ ବୁଝାଇବାକୁ ଚେଷ୍ଟା କଲେ ବି ବୁଝୁ ନଥାଏ । ବାପା ମା ଦୁହେଁ ତାକୁ ଟିକେ ଦୂରରେ ଥିବା ଦୋକାନରୁ କିଛି ଜିନିଷ କିଣି ମନ ଭୁଲେଇବା ପାଇଁ ଯିବା ପୂର୍ବରୁ ବଡ଼ ପୁଅକୁ ସାନଭଉଣୀ ଉପରେ ନଜର ରଖିବାକୁ କହିଗଲେ ।

ପ୍ରଥମ କରି ସମୁଦ୍ର ଦେଖୁଥିବା ଓ ତା'ର ବେଳାଭୂମିକୁ ମାଡ଼ିଆସି ଫେରିଯାଉଥିବା ଢ଼େଉ ସହିତ ଖେଳିବାର ଅଦ୍ଭୁତ ଉଲ୍ଲାସ ଅନୁଭବ କରୁଥାନ୍ତି ଦୁହେଁ । ଭାଇ ଟିକେ ଅଧିକ ସାହସୀ ହୋଇ ପାଣି ଭିତରକୁ ବେଶି ପଶିଯାଉଥାଏ ଓ ଖୁବ୍ ଶୀଘ୍ର ପାଲଟା ଢ଼େଉର ଆଗେଆଗେ ଦଉଡ଼ି ଆସି କୂଳରେ ପହଞ୍ଚି ଯାଉଥାଏ; ଯାହା ଭଉଣୀ କ୍ଷେତ୍ରରେ ହେଉନଥାଏ । ସେ ଦୁଇଚାରିଗଡା ପଡ଼ିଉଠି ପାଣି ଓ ବାଲିରେ ଲଟପଟ ହୋଇ ସାରିଥିଲେ ବି ଭାଇର ପିଛା ଛାଡୁନଥାଏ । ତେଣୁ ତା' ନିରାପତ୍ତା କଥା ଭାବି ଭାଇଟି ଆଉ ଖୁସିରେ ଲହରୀଖେଳ କରିପାରୁନଥାଏ । ତେଣୁ ସେ ଉପାୟଟାଏ ପାଞ୍ଚିଲା । ଭଉଣୀକୁ ଡାକି କହିଲା "ଦେଖ୍ ବାଲିରେ ଗୋଟେ କୂଅ ଖୋଳିବା । ସମୁଦ୍ରରୁ ପାଣି ମାଡ଼ିଆସି ଆମ କୂଅକୁ ଭର୍ତ୍ତି କରିଦେବ । ମଜା ହେବନା ।"

ଭଉଣୀ ମୁଣ୍ଡ ହଲାଇ ରାଜି ହୋଇଗଲା । ଦୁହେଁ ଶୀଘ୍ର ଶୀଘ୍ର ବାଲି ଖୋଳିବାରେ ଲାଗିଗଲେ । ବେଶ୍ ବଡ଼ ଗାତଟାଏ ହୋଇଗଲା । ଭାଇ କହିଲା, ''ପଶିଲୁ ଦେ ଗାତରେ ଦେଖିବା କେତେ ଯାଏ ହଉଛି ।"

ଭଉଣୀ ଭିତରେ ପଶି ଅଣ୍ଟାଯାଏ ମାପିବା ବେଳକୁ ଭାଇ ଚାରିଆଡୁ ବାଲି ଗଡ଼ାଇ ଦେଇ ସବୁପାଖକୁ ପାଦରେ ଚାପି ଚାପି ଟାଣ କରିଦେଇ କହିଲା "ଏଇଠି ଥା । ଆଉ ମୋ ପଛେ ପଛେ ଯାଇ ହଇରାଣ କରିପାରିବୁନି ।"

ଭାଇ ଦଉଡ଼ି ପଳାଇଲା ସମୁଦ୍ର ଆଡ଼ିକି । ଭଉଣୀ ଯେତେ ପାଟିରେ ଡାକିଲେବି ସମୁଦ୍ରର ଘୋ ଘୋରେ କିଛି ଶୁଣାଯାଉନଥାଏ । ସେ ଖାଲି ଭାଇର ମଜା କରୁଥିବା ଦେଖୁଥାଏ । ମନ ଛଟପଟ ହେଲେ ବି ବାଲିଗାତରୁ ବାହାରି ପାରୁନଥାଏ । କେତେବେଳ ଏମିତି ବିତିଛି କେଜାଣି ହଠାତ୍ ଦି'ଟା କୁକୁର କୋଉଠୁ ବାହାରି କାମୁଡ଼ାକାମୁଡି ହୋଇ ତା' ଆଡ଼କୁ ମାଡ଼ି ଆସିଲେ । ଆଉ ଟିକକୁ ତା' ଉପରେ ପଡ଼ି ତାକୁ ଭିଣି ପକାଇବେ । କିନ୍ତୁ ଦୂରକୁ ଦଉଡ଼ି ପଳାଇବାର ଉପାୟ ନାହିଁ । ଝିଅର ଆଖି ଭୟରେ ବୁଜି ହୋଇ ଚେତା ବୁଡ଼ିଗଲା ।

ପୁଣି ଆଖି ଖୋଲିବା ବେଳକୁ ଝିଅଟି ଦେଖୁଛି ସେ ତା' ମା କୋଳକୁ ଆଉଜି ବସୁଛି ଓ ବାପା ତା' ଭାଇକୁ ଆଖିବୁଜି ବାଡ଼େଇ ଚାଲିଛନ୍ତି । ଭାଇ ସେମିତି କାଠ ହୋଇ ଠିଆ ହୋଇଛି । ଝିଅଟି ଗୋଟେ ଡିଆଁରେ ଉଠି ଭାଇକୁ ଜାବୁଡ଼ି ଧରିଲା । ଦୁହେଁ ଦୁହିଁଙ୍କୁ ଧରି କାନ୍ଦିବାକୁ ଲାଗିଲେ । ବାପା କିଛି ସମୟ ଚୁପ୍ ହୋଇ ବାଲିରେ ବସିପଡ଼ିଲେ । କିନ୍ତୁ ସେଇଠୁ ଫେରିବା ବେଳେ ଭାଇ ଭଉଣୀ ହାତ ଧରାଧରି ହୋଇ ବାଲିରେ ଡେଇଁଡେଇଁ ଚାଲୁଥିବା ବେଳେ ଲାଗୁନଥିଲା ଏହାର କିଛି ସମୟ ପୂର୍ବରୁ ସେମିତି କିଛି ଅଘଟଣ ଘଟିଥିଲା ବୋଲି ।

"ମୁକ୍ତାମାଳଟିଏ ନିଅନ୍ତୁ ମା" ପାଟିରେ ଲପିତାର ଧ୍ୟାନ ଭାଙ୍ଗିଗଲା । ଖୁବ୍ ପାଖରେ ମାଳିବିକାଳି ଜଣ ତା'ର ପସରା ଧରି ଠିଆ ହୋଇଛି । ଲପିତା ତାଙ୍କୁ ହାତ ହଲାଇ ବାରଣ କଲେ ।

ସୂର୍ଯ୍ୟଦେବଙ୍କର ବିଦାୟୀ ସ୍ପର୍ଶରେ ସମୁଦ୍ର ବେଶ୍ ଝଲମଲ କରୁଛି । ଏ ଭିତରେ ଜନସମାଗମ ଆହୁରି ବଢ଼ିଗଲାଣି । ବେଳାଭୂମି ଚଳଚଞ୍ଚଳ । ପୁଅବୋହୂ ନାତି ସେମିତି ପାଣିରେ ଭିଜୁଥାନ୍ତି ।

ଲପିତା ତାଙ୍କ ଦାୟିତ୍ୱରେ ଥିବା ଜିନିଷପତ୍ର ଉପରେ ଥରେ ଆଖି ବୁଲାଇନେଲେ । କିନ୍ତୁ ମନ ତାଙ୍କର ହଜିଯାଇଥିଲା ଅତୀତର ସେଇ ଦିନଗୁଡ଼ିକରେ । ବାପା ତାଙ୍କର ଥିଲେ ଜଣେ ସରକାରୀ କର୍ମଚାରୀ । କେନ୍ଦୁଝରରୁ ସେମାନେ ବଦଳି ହୋଇ ଆସିଲେ କଟକ ସହରକୁ । ଚାନ୍ଦିନୀଚୌକ ପାଖ କାଳୀ ଗଳିରେ ଭଡ଼ାଘରଟିଏ ନେଇ ସେମାନେ

ରହୁଥିଲେ । ସେଠୁ ହାଇକୋର୍ଟ ଦେଇ ସିଧା କାଠଯୋଡ଼ିର ପ୍ରଶସ୍ତ ନଈବାଲି ହୋଇଗଲା ଭାଇଭଉଣୀ ଦୁହିଁଙ୍କର ନିତିଦିନିଆ ଚରାଭୂଇଁ । ସେଠୁ ଖେଳିଖେଳି ସନ୍ଧ୍ୟାରେ ଘରକୁ ଫେରି ପାଠପଢ଼ା ସମୟରେ ବି ଚଗଲାମି କରୁଥିବାରୁ ମା'ଠାରୁ ସେଥିପାଇଁ ଗାଳି ଖାଇବା ମଧ୍ୟ ସେମାନଙ୍କର ନିୟମିତ କାର୍ଯ୍ୟରେ ପରିଣତ ହୋଇଯାଇଥିଲା ।

ଦୁହିଁଙ୍କର ନାମ ସ୍ଥାନୀୟ ଏକ ପ୍ରସିଦ୍ଧ ହାଇସ୍କୁଲରେ ଲେଖାଯାଇଥାଏ । ଦୁହେଁ ଏକାଠି ସ୍କୁଲକୁ ଯିବା ଓ ଏକାଠି ଫେରୁଥିବାରୁ ବାପା ମାଙ୍କର ଆଉ ଝିଅ ପାଇଁ ଚିନ୍ତା ନଥାଏ ।

ଘରର ଖୁବ୍ ପାଖରେ ଥିଲା କାଳୀଙ୍କର ମନ୍ଦିର । ପ୍ରାୟ ପ୍ରତି ଗୁରୁବାର ସନ୍ଧ୍ୟାରେ ଠାକୁରାଣୀଙ୍କର ଆଳତି ବେଳେ ମା ମନ୍ଦିରକୁ ଯାଉଥିଲା । ଭାଇଭଉଣୀ ଦୁହେଁ ମା ସାଙ୍ଗରେ ଯାଆନ୍ତି ମନ୍ଦିର ।

ସେଦିନ ସଂଜରେ ଆଳତି ସରିଲା । କେହି ଜଣେ ଭଜନ ଗାଉଥିବାରୁ ମା ସେଠି ବସି ଶୁଣୁଥାଏ । ସେ ମନ୍ଦିର ଭିତରେ ବୁଲୁଥାନ୍ତି । ହଠାତ୍ ତାଙ୍କର ଆଖି ପଡ଼ିଥିଲା ମନ୍ଦିରର ଭିତର କାନ୍ଥରେ ଟଙ୍ଗା ହୋଇଥିବା କାଚବନ୍ଧାଇ ଏକ ଚିତ୍ରପଟ ଉପରେ । ସେ ସେଇଠି ଠିଆହୋଇ ତାକୁ ଭଲକରି ଚାହିଁଲେ । ଛବିରେ ଥିଲା ରାମରାବଣ ଯୁଦ୍ଧର ଦୃଶ୍ୟ । ଦଶମୁଣ୍ଡିଆ ରାବଣ ରଥ ଉପରେ ଓ ତଳେ ରାମଲକ୍ଷ୍ମଣ ଦୁଇଭାଇ ଧନୁଶର ଯୋଖି ଛିଡ଼ା ହୋଇଥାନ୍ତି । ପଛକୁ ମାଙ୍କଡ଼ ଓ ରାକ୍ଷସଙ୍କର ଅସ୍ପଷ୍ଟ ଚିତ୍ର । କିନ୍ତୁ ଛବିର ସାମନାପଟକୁ ମାଙ୍କଡ଼ଟିଏ ହାତରେ ଖଣ୍ଡେ ଗଛଡାଳ ଧରି ମରିପଡ଼ିଥିବାର ଦୃଶ୍ୟ ଖୁବ୍ ଜୀବନ୍ତ ମନେ ହେଉଥିଲା ।

ସେ ନିଜର କୋହ ସଂବରଣ ନ କରିପାରି କାନ୍ଦିବାକୁ ଲାଗିଲେ । ଭାଇ ସୁଶାନ୍ତ ତାଙ୍କ କାନ୍ଦ ଦେଖି ପାଖକୁ ଆସି ପଚାରିଲେ "କିରେ ଲପୁ, କ'ଣ ପାଇଁ କାନ୍ଦୁଛୁ ? କିଏ କ'ଣ କହିଲା କି ?"

ଲପିତା ମୁଣ୍ଡ ହଲାଇ ମନାକଲେ ।

– କାହିଁକି ତେବେ କାନ୍ଦୁଛୁ ?

– ଭାଇ ଦେଖିଲୁଣି ଏ ଛବି ?

– ହଁ ଦେଖିଚିତ । କାହିଁକି କ'ଣ ହେଲା ଛବିର ?

– ଦେଖନା ଭାଇ, ଏଇ ଯୋଉ ମାଙ୍କଡ଼ଟି ମରିପଡ଼ିଛି ସେ କ'ଣ ସତରେ ମରିଯାଇଛି ?

- ମିଛରେ କିଏ ମରେନା କ'ଣ ? ପଛରେ କେତେ ରାକ୍ଷସ ବି ମରିପଡ଼ିଛନ୍ତି । ଦେଖୁନୁ ।

-ହଁ ମରନ୍ତୁ ସେମାନେ । କିନ୍ତୁ ଏ ମାଙ୍କଡ଼ଟି ରାମଙ୍କ ପାଇଁ ଯୁଦ୍ଧ କରୁଥିଲାନା, ସେ କାହିଁକି ମରିବ ! ସେ ପୁଣିଥରେ ଉଠିବନା ଭାଇ । କହୁନୁ ହଁ ବୋଲି ।

ସତେ ଯେମିତି ଭାଇ ଖାଲି ହଁ କରିଦେଲେ ଲପିତା ଆଶ୍ୱସ୍ତ ହୋଇଯିବ ।

କିନ୍ତୁ ସୁଶାନ୍ତଙ୍କର କ'ଣ ହେଲା କେଜାଣି ସେ ବାରବାର କହିଲେ, "ନାଁ ନାଁ ମରିଯାଇଥିବା ମାଙ୍କଡ଼ କ'ଣ ଆଉ ବଞ୍ଚିବ । ତା' କେବେ ବି ହେବନି ।"

କିନ୍ତୁ ଲପିତାଙ୍କର ସେଇ ଏକା ଜିଦ୍, ''ହଁ ହେବ । ନିଶ୍ଚୟ ହେବ ତୁ ଜାଣିନୁ ।"

- ତୋ ପରି ମୂର୍ଖ କିଏ ଅଛି । ଏବେ ପରା ଆମ ବଡ଼ବାପା ଗାଁରେ ମରିଗଲେ, ସେ କ'ଣ ଆଉ ବଞ୍ଚିଲେ କି ?

-ହଁ ଯେ ସେ ତ ରାମଙ୍କ ପାଇଁ ଯୁଦ୍ଧ କରୁନଥିଲେ ନା ।

ସୁଶାନ୍ତ ଚିଡ଼ିଉଠି କହିଥିଲେ, "ଆଚ୍ଛା ରଟ ଗୋଟେ ଲଗେଇଛି ରାମଙ୍କ ପାଇଁ ଯୁଦ୍ଧ, ରାମଙ୍କ ପାଇଁ ଯୁଦ୍ଧ । ଚାଲ ଘରକୁ ।''

ଲପିତାଙ୍କର ମନେଅଛି ସେଦିନ ଘରକୁ ଫେରି ଗୋଡ଼ହାତ ଧୋଇ ତାଙ୍କ ପୂଜାଘରକୁ ଯାଇ ରାମ-ଲକ୍ଷ୍ମଣ-ସୀତା ଓ ଯୋଡ଼ହାତରେ ତଳେ ବସିଥିବା ହନୁମାନଙ୍କର ପୂଜାଫଟୋ ଆଗରେ ବସି ଚିତ୍ରମାଙ୍କଡ଼ର ଦୟନୀୟ ଭାବରେ ମରିପଡ଼ିଥିବା ଦୃଶ୍ୟ ମନେପକାଇ ସେ ବ୍ୟାକୁଳ ଭାବରେ ପ୍ରାର୍ଥନା କରିଥିଲେ "ହେ ଠାକୁରେ ତୁମପାଇଁ ଯୁଦ୍ଧ କରି ମରିଥିବା ମାଙ୍କଡ଼କୁ ବଞ୍ଚାଇ ଦିଅ ।"

ସେତେବେଳେ ସେ କ'ଣ ଜାଣିଥିଲେ କି ସେ ରାମରାବଣ ଯୁଦ୍ଧ କେତେ ହଜାର ବର୍ଷ ତଳୁ ହୋଇସାରିଛି । ସତକୁ ସତ ଯଦି ସେ ମଲାମାଙ୍କଡ଼ ବଞ୍ଚିଥିବ ତେବେ ସେତ କୋଉ ଯୁଗତଳୁ ପୁଣି ଥରେ ମରିଯାଇଥିବ । ତାଙ୍କର ସମୟ ବା ଘଟଣା ସମ୍ପର୍କରେ କୌଣସି ସଚେତନତା ନଥିଲା । କିନ୍ତୁ ତାଙ୍କର ମାନସିକ ସ୍ଥିତି ସେଇ ମାଙ୍କଡ଼ଟି ପାଖରେ ତ ଅଟକି ଯାଇଥିଲା । ବିଶ୍ୱାସଟିଏ ତାଙ୍କ ମନରେ ବେଳକୁବେଳ ଦାନା ବାନ୍ଧି ଚାଲିଥିଲା ଯେ ଭଗବାନଙ୍କ ପାଇଁ ଯୁଦ୍ଧ କରୁଥିବା ଲୋକର ମୃତ୍ୟୁ ହୋଇନପାରେ ।

ଏମିତି ଧାରଣାର ବଶବର୍ତ୍ତୀ ହୋଇ ସେ ମୃତ ମାଙ୍କଡ଼ଟି ସହିତ ବେଳେ ବେଳେ ଏକାତ୍ମ ହୋଇ ଯାଉଥିଲେ । ଜାଣିପାରୁନଥିଲେ ଯେ ସେ ଲପିତା ନାମକ ଝିଅଟିଏ ନାଁ ଯୁଦ୍ଧକ୍ଷେତ୍ରରେ ଗଛଡାଳକୁ ଅସ୍ତ୍ର ଭାବରେ ଧରି ଡେଇଁଡେଇଁ ଲଢୁଥିବା ମାଙ୍କଡ଼ଟିଏ ।

ତାଙ୍କୁ ସେ ଅନୁଭବ ଖୁବ୍ ଭଲ ଲାଗୁଥିଲା । ବେଳେ ବେଳେ ସେ ଘର ଭିତରେ ଅଗଣାରେ ମର୍କଟ ରୀତିରେ ଅଦ୍ଭୁତ ଭଙ୍ଗୀରେ କାହାସହିତ ଲଢ଼େଇ କରିଚାଲିଲେ ।

ସେ ସେପରି କରୁଥିବାର ଦୃଶ୍ୟ ବାପା ମାଙ୍କ ଆଖିରେ କେତେଥର ପଡ଼ିଲା । ସେମାନଙ୍କର ଧାରଣା ହେଉଥିଲା ବୋଧହୁଏ ସ୍କୁଲରେ ହେଉଥିବା କୌଣସି ଡ୍ରାମାରେ ସେ ମାଙ୍କଡ଼ର ଭୂମିକା କରୁଛନ୍ତି । କିନ୍ତୁ ଯେବେ ଜାଣିଲେ ଯେ ସେପରି କୋଉଠି କିଛି ହେଉନାହିଁ, ସେମାନେ ଟିକେ ଆଶ୍ଚର୍ଯ୍ୟ ହେଲେ । ଯୁଦ୍ଧାଭିନୟ ପରେ ପରେ ହଠାତ୍ ତାଙ୍କର କାନ୍ଦିବାର ଘଟଣା ସେମାନଙ୍କୁ ବିବ୍ରତ କଲା ।

ସୁଶାନ୍ତଙ୍କ ମନକୁ କଥାଟା ହଠାତ୍ ଲାଗି ଯାଇଥିଲା । ସେ ବାପା ମାଙ୍କ ଆଗରେ ସେଦିନର ଘଟଣାଟି କହିବାରୁ ସେମାନେ ମଧ୍ୟ ମନ୍ଦିରକୁ ଯାଇ ଭିତର କାନ୍ଥରେ ଟଙ୍ଗା ହୋଇଥିବା ସେ ଛବିଟି ଦେଖିଆସିଲେ । କିନ୍ତୁ ସେଥିରେ ଏମିତି କ'ଣ ଥିଲା ଏପ୍ରକାର ପ୍ରଭାବ ପକାଇବା ପରି ସେମାନେ ଆଦୌ ବୁଝିପାରିନଥିଲେ ।

କିନ୍ତୁ ନଅଦଶ ବର୍ଷର ଝିଅର ଏପ୍ରକାର ଭାବାନ୍ତର ସେମାନଙ୍କୁ ବେଶ୍ ଚିନ୍ତାରେ ପକାଇଥିଲା । ବାପା ନିଷ୍ପତ୍ତି ନେଇଗଲେ ଯେ ସେ ଭଡ଼ାଘର ତାଙ୍କୁ ବଦଳାଇବାକୁ ପଡ଼ିବ । ସେ ଘରେ ଥିଲାଯାଏ ଲପିତା ନିଶ୍ଚୟ ବାରମ୍ବାର ମନ୍ଦିର ଯିବେ ଓ ସେ ଛବିକୁ ଦେଖିଲେ ତାଙ୍କର ପ୍ରତିକ୍ରିୟା ବଢ଼ିବ ସିନା କମିବ ନାହିଁ ।

ନୂଆ ଭଡ଼ାଘର ଖୋଜାହେଲା । ଯେଉଁଠି ଘର ମିଳିଲା ତାହା ଥିଲା ସ୍କୁଲଠାରୁ ବେଶ୍ ଦୂର । ଯିବାଆସିବା ପାଇଁ ଅସୁବିଧା ହେଲେ ବି ଲପିତାଙ୍କୁ ମନ୍ଦିରଠାରୁ ଦୂରେଇ ରଖିବାର ଅନ୍ୟ ଉପାୟ ନଥିଲା । ସତକୁସତ ନୂଆ ଘର, ନୂଆ ପରିବେଶ ଓ ପାଖଆଖର ପିଲାଙ୍କ ସହିତ ସାଙ୍ଗ ହୋଇ ଲପିତା ଧୀରେ ଧୀରେ ମନ୍ଦିର ଯିବା ଓ ମାଙ୍କଡ଼ ହେବା କଥା ଭୁଲିଗଲେ ।

ସେ ବର୍ଷ ସୁଶାନ୍ତ ସ୍ଥାନୀୟ କଲେଜରୁ ଆଇ.ଏ. ପାଶ୍ କଲେ । ଲପିତାଙ୍କର ହେଲା ଦଶମ ଶ୍ରେଣୀ । ଦୁଇବର୍ଷ ପରେ ମାଟ୍ରିକ ପରୀକ୍ଷା । କିନ୍ତୁ ବାପାଙ୍କର ଭଦ୍ରକ ବଦଳି ହୋଇଗଲା । ଆଇ.ଏ. ପାଶ୍ କରିଥିବା ପୁଅକୁ ସାଙ୍ଗରେ ନେଇ ସେ ଭଦ୍ରକ କଲେଜରେ ପଢ଼ାଇ ପାରିବେ କିନ୍ତୁ ଖୁବ୍ ଭଲ ପଢୁଥିବା ଝିଅର ସ୍କୁଲ ବଦଳିଗଲେ ତା'ର ପାଠପଢ଼ା ଉପରେ ଖରାପ ପ୍ରଭାବ ପଡ଼ିପାରେ ଭାବି ବାପା ବ୍ୟସ୍ତ ହେଉଥାନ୍ତି ।

ଏହି ସମୟରେ ଆଗେଇ ଆସିଥିଲେ ଦାଦା । ସେ କହିଲେ, "ଭାଇ ଆପଣ କାହିଁକି ଚିନ୍ତା କରୁଛନ୍ତି । ଲପୁ ମୋ ପାଖରେ ଏଇ ଦୁଇଟା ବର୍ଷ ରହିଯିବ । ତା' ସ୍କୁଲ ବି ମୋ ଘରକୁ ଲାଗିଛି । କିଛି ଅସୁବିଧା ହେବନି ।"

ବାପା ତାଙ୍କ ଭାଇଙ୍କ କଥାରେ ଆଶସ୍ତ ହେଲେ । ଲପିତା ଭାଇଠାରୁ ଦୂରେଇ ରହିବା କଥା ଭାବିପାରୁନଥିଲେ । ଦୁହେଁ ଏତେବଡ଼ ହେବାପରେ ବି କଥା କଥାକେ ମାରପିଟ, ରାମ୍ପୁଡା କାମୁଡା; କିନ୍ତୁ କେହି କାହାଠାରୁ ଅଲଗା ହୋଇ ରହିବା ଏକଦମ୍ ଅସମ୍ଭବ ଥିଲା । ପରିସ୍ଥିତିର ଚାପ ଯେ କେତେ ଆବେଗ ଉଚ୍ଛ୍ୱାସକୁ ନିଷ୍ଠୁର ଭାବରେ ମାରି ଦେଇପାରେ ତାହା କେବଳ ସେ ଅନୁଭବ କରୁଥିଲେ । ତଥାପି ମନକୁ ସାନ୍ତ୍ୱନା ଦେଲେ ଯେ ଦାଦାଙ୍କର ତିନି ପୁଅ ଝିଅଙ୍କ ସାଙ୍ଗରେ ମିଳିମିଶି ଚଳିଯିବେ ।

ଦାଦାଙ୍କର ଏ ନିଷ୍ପତ୍ତିକୁ ଗ୍ରହଣ ନକରି ପାରିଥିବା ଖୁଡୀ ପ୍ରତିବାଦ କରିବାକୁ ସାହସ କରିପାରି ନଥିଲେ ସତ କିନ୍ତୁ ଲପିତାଙ୍କୁ ଶୁଣାଇବା ପରି ବାରମ୍ବାର କହୁଥିଲେ "ପୁଅପିଲା ହୋଇଥିଲେ ଅଲଗା କଥା ବଡ଼ିଲା ଝିଅର ଦାୟିତ୍ୱ ନେବା ନିଆଁକୁ ଅଣ୍ଟିରେ ପୂରାଇବା ପରି କଥା ।"

ଲପିତା ବୁଝିପାରୁନଥିଲେ ଖୁଡୀ ଏପରି ଆକ୍ଷେପ କରି କାହିଁକି କଥା କହୁଛନ୍ତି । ଏଣେ ଭାଇଭଉଣୀଙ୍କ ସାଙ୍ଗରେ ଟିକେ ଖେଳିଲେ ଖୁଡୀ କେମିତି ଛିଗୁଲାଇବା ପରି ସ୍ୱରରେ ତାଙ୍କ ପିଲାଙ୍କୁ ତାଗିଦା କରି କୁହନ୍ତି, "ହେଇଟି ବୁଝି ହୁସିଆର । ଲପୁ ଏଠି ପାଠ ପଢ଼ିବା ପାଇଁ ଅଛନ୍ତି । ତାଙ୍କ ପାଠ ଖରାପ ହେଲେ ସମସ୍ତେ ମତେ ଦୋଷ ଦେବେ ।"

ଲପିତା ଆପେ ଆପେ ସମସ୍ତଙ୍କଠାରୁ ଦୂରେଇ ଗଲେ । ତାଙ୍କର କୈଶୋର ଜୀବନର ଖୁସି ଆନନ୍ଦ ଓ ଚଞ୍ଚଳତା ସବୁ ଯେପରି କୁଆଡ଼େ ଉଭାଇଗଲା । ସେ ସ୍କୁଲ ଯିବା ଛଡ଼ା ଅନ୍ୟ ସବୁ ସମୟରେ ପାଠ ବହିରେ ମୁଣ୍ଡ ମାଡ଼ି ବସି ରହୁଥିଲେ ।

ତାଙ୍କ ଉପରେ ଖୁବ୍ ସୁଧାର ଓ ଭଲପିଲାର ମୋହର ଏପରି ମାରିଦିଆଗଲା ଯେ ସେ ଚାହିଁଲେ ବି ଅନ୍ୟ କିଛି ହୋଇପାରିଲେନି ।

ମାଟ୍ରିକରେ ଖୁବ୍ ଭଲ ନମ୍ବର ରଖିଲେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ସମସ୍ତେ ଖୁସିରେ ଆତ୍ମହରା ହେବାବେଳେ ଖୁଡୀ ଏକା ଖୁସି ହୋଇପାରୁନଥିଲେ । ସେ ଭାବୁଥିଲେ ଏହାପରେ ବି ଲପିତା ତାଙ୍କରି ଘରେ ରହି କଲେଜରେ ପାଠ ପଢ଼ିବେ ।

ଲପିତା ବୁଝୁଥିଲେ ତାଙ୍କ ମନକଥା । ତେଣୁ ସେ ମଧ୍ୟ ସେଠି ଆଉ ରହିବାକୁ ଚାହୁଁନଥିଲେ । କିନ୍ତୁ ପ୍ରକୃତ କଥାଟା ବାପା ମା ଜାଣିଲେ ଦାଦା ହୁଏତ ଜାଣିଯିବେ ଓ ଘରେ ସେଥିପାଇଁ ମହା ଅନର୍ଥ ସୃଷ୍ଟି ହେବ । କିନ୍ତୁ ଭାଇକୁ କହିବାରେ ଅସୁବିଧା ନାହିଁ । ସେ ଭାଇଆଗରେ ସବୁକଥା ବୁଝାଇ କହିଲେ ଏଇଥିପାଇଁ ଯେ ଭାଇ ନିଶ୍ଚୟ କିଛି ଉପାୟ

ବାହାର କରିପାରିବ ଯେଉଁଥିରେ କି କାହା ମନରେ ଆଘାତ ଲାଗିବନି । ବିଶେଷକରି ଖୁଡୀଙ୍କୁ କେହି ଏଥିପାଇଁ ଦୋଷାରୋପ କରୁ ସେ ଚାହୁଁନଥିଲେ ।

ଭାଇ ବୁଝିପାରିଲେ କଥାଟି । ସେ ସେତେ ବେଳକୁ ବି.ଏ. ପାଶ୍ କରି ରେଭେନ୍‌ସା କଲେଜରେ ନାଁ ଲେଖାଇ ହଷ୍ଟେଲରେ ରହୁଥାନ୍ତି । ସେ ବାପାଙ୍କୁ ବୁଝାଇଦେଲେ ଯେ ଲିପିତା ଯେଉଁ ମହିଳା କଲେଜରେ ସାଇନ୍‌ସ ପଢ଼ିବ ସେଇଟା ଦାଦାଙ୍କ ଘରଠାରୁ ବହୁତ ଦୂର । ତା'ଛଡ଼ା ବିଜ୍ଞାନ ଶ୍ରେଣୀ ସବୁ ସକାଳେ ଆରମ୍ଭ ହେଉଥିବାରୁ ଲିପିତା ହଷ୍ଟେଲରେ ରହିବା ଠିକ୍ ହେବ ।

ତାହାହିଁ ହେଲା । ଲିପିତା ଆଇଏସସି ପାଶ୍ କରି ଡାକ୍ତରୀ ପଢ଼ିବା ପାଇଁ ପ୍ରସ୍ତୁତ ହେବାବେଳେ ତାଙ୍କ ପାଇଁ ବାହାଘର ପ୍ରସ୍ତାବ ଆସିଲା । ଖୁବ୍ ଭଲ ପ୍ରସ୍ତାବ ବୋଲି ବାପା ମା'ଙ୍କର ମନେ ହୋଇଥିଲା । ସେମାନେ ସେ ଦିଗରେ ତତ୍ପରତା ପ୍ରକାଶ କରିବାରୁ ଭାଇ ଖୁବ୍ ଅସନ୍ତୁଷ୍ଟ ହୋଇଥିଲେ । ଡାକ୍ତରୀ ନହେଲା ନାଇଁ ଅନ୍ତତଃ ଭଲ ପଢୁଥିବା ଭଉଣୀଟା ଗ୍ରାଜୁଏଟ ହେଉ ବୋଲି ସେ ଇଚ୍ଛା କରୁଥିଲେ । ତା'ଛଡ଼ା ଲିପିତା ପାଇଁ ସ୍ଥିର ହୋଇଥିବା ପାତ୍ର ଇଂଜିନିୟର ରାଜେନ୍ଦ୍ର ଦାସ ତାଙ୍କ ମନକୁ ଆଦୌ ଯାଉନଥିଲେ ।

କିନ୍ତୁ ପାତ୍ରଟି କାହିଁକି ପସନ୍ଦ ହେଉନାହିଁ ପ୍ରଶ୍ନର ସେ ନିର୍ଦ୍ଦିଷ୍ଟ ଉତ୍ତର ଦେଇପାରୁନଥିଲେ । ତାଙ୍କର କେମିତି ମନେ ହେଉଥିଲା ସେ ପାତ୍ର ଲିପିତା ପାଇଁ ଠିକ୍ ନୁହେଁ । କିନ୍ତୁ କାରଣ ଓ ତର୍କ ଉପରେ ନିର୍ଭର କରୁଥିବା ନିଷ୍ପତ୍ତି ହୃଦୟର ଭାଷାକୁ ନିର୍ବୋଧତା ଓ ପିଲାଳିଆମି କହି ଉଡ଼ାଇଦିଏ । ଏ କ୍ଷେତ୍ରରେ ତାହାହିଁ ହେଲା ।

ଭାଇ ଅନ୍ୟ ଉପାୟ ନପାଇ ତାଙ୍କର ଶେଷ ଚେଷ୍ଟା ସ୍ୱରୂପ ଲିପିତାକୁ ବୁଝାଇଥିଲେ ଯେ ସେ ନିଜେ ଏ ବାହାଘର ପ୍ରସ୍ତାବକୁ ନାହିଁକରୁ । ପାଠପଢ଼ା ଉପରେ ଗୁରୁତ୍ୱ ଦେଉ । ସେଥିପାଇଁ ଘରେ ଖୁବ୍ ଅଶାନ୍ତିକର ପରିସ୍ଥିତି ଲାଗିରହିଲା । ବାପ ପୁଅ କଥା ହେଉନଥିଲେ । ବାପା ଦେଖେଇଶିଖେଇ ମା'କୁ କହୁଥିଲେ "ଇଏ ଯେମିତି ସତରେ ବୁଝିସୁଝି ଭଉଣୀର ବାହାଘରଟା କରି ପକେଇବ । ମୋ ଶକ୍ତି ଯେତିକି ପାଉଛି ସେଇଥିରେ ମୁଁ କରୁଛି । ସହଯୋଗ କରିବେ କ'ଣ ଓଲଟା ଗଣ୍ଡଗୋଳ କରାଯାଉଛି ।"

ମା' ତାର ପାଠପଢ଼ା ବିଷୟରେ କହୁ କହୁ ବାପା ଚିହିଁକି ଉଠି କହିଥିଲେ, "ପାଠପଢ଼ାକୁ କିଏ ମନା କରୁଛି । ଝିଅ କ'ଣ ବାହାହୋଇ ପଢୁନାହାନ୍ତି । ତା' ଶାଶୂଘର ଯଦି ଚାହିଁବେ ସେ ପଢ଼ିବ । ଏତେ ଭଲ ପ୍ରସ୍ତାବଟା ହାତଛଡ଼ା ହୋଇଗଲେ ଆଉ ସେମିତି ଗୋଟେ ମିଳିବ କି ନାହିଁ କିଏ ଜାଣେ ।"

ଲପିତା ଜାଣନ୍ତି ବାପା କିଛି ଭୁଲ କହୁନାହାନ୍ତି । ତାଙ୍କ ସମୟରେ ଝିଅମାନେ ମାଟ୍ରିକ ଯାଏ ପଢ଼ିବା ବି ବଡ଼ କଥା ଥିଲା । କଲେଜ ବା କେତେଜଣ ଆସୁଥିଲେ । ଯେଉଁଠି ତାଙ୍କ ବାପା ନିଜେ ତାଙ୍କୁ ଆଉ ନ ପଢ଼ାଇ ଶାଶୂ ଘରକୁ ବିଦା କରିବାକୁ ଚାହୁଁଛନ୍ତି ସେ ତା'ର ପ୍ରତିବାଦ କରି ଅଯଥା ଅଶାନ୍ତି ବା କାହିଁକି ସୃଷ୍ଟି କରିବେ !

ଲପିତା ପୂରା ନୀରବ ରହିଲେ । ବାପା ବା ଭାଇଙ୍କର କଥାର କୌଣସି ପ୍ରଭାବ ତାଙ୍କ ଉପରେ ନଥିଲା । ସେ ଧରିନେଇଥିଲେ ଯେ ଯାହା ହୋବକୁ ଅଛି ତାହା ହିଁ ହେବ; କେହି କିଛି ବଦଳାଇ ପାରିବେନି ।

ତାଙ୍କର ମୌନତା ଭାଇଙ୍କୁ ପୂରା ନୀରବ କରିଦେଲା । ବାପା ଏଥିରେ ଖୁବ୍ ଉତ୍ସାହିତ ହୋଇପଡ଼ିଲେ । ଲପିତାଙ୍କର ବାହାଘର ସୁରୁଖୁରୁରେ ହୋଇଗଲା । କିନ୍ତୁ ଦିନ କେଇଟା ଭିତରେ ତାଙ୍କର ବୁଝିବାରେ ବାକି ରହିଲା ନାହିଁ ଯେ ତାଙ୍କ ଭାଇଙ୍କର କଥା କେତେ ଯଥାର୍ଥ ଥିଲା । ସେ ବିଷୟରେ ସେ କେଉଁଠି ମୁହଁ ଫିଟାଇଲେ ନାହିଁ । ବରଂ ଧରିନେଲେ ଯେଉଁ ଜୀବନ ତାଙ୍କୁ ବଞ୍ଚିବାକୁ ଦିଆଯାଇଛି ସେ ତାକୁ ଠିକ୍‌ଭାବରେ ବଞ୍ଚିବାକୁ ଚେଷ୍ଟା କରିବେ । ସେଇ ଧାରାରେ ସେ ହୁଏତ ଅତିକ୍ରମି ଯିବେ ଅନେକ କିଛି ।

ସାରା ଜୀବନ ସେ ରହିଲେ ସେଇ ଗୋଟିଏ ଚେଷ୍ଟାରେ । ଗୋଟିଏ ବୋଲି ପୁଅ, ପାଠ ପଢ଼ିଲା । ଚାକିରୀ କଲା । ବାହାହେଲା କିନ୍ତୁ ମା'ର ସବୁ କଥାକୁ ମାନିଯିବାର ସ୍ୱଭାବ ସେ ବୁଝିପାରିଲା ନାହିଁ । ତେଣୁ ପୁଅ ବିନୁ ବେଳେ ବେଳେ ତାଙ୍କୁ ଥଟ୍ଟା କରି କୁହେ, "ମା'ର କ'ଣ ଅଛି ସେତ ସତ୍ୟନାରାୟଣ ଖଟୁଲି ଏଠୁ ନେଇ ସେଠି ଥୁଅ କି ସେଠୁ ନେଇ ଏଠି ଥୁଅ । ଏକା କଥା ।"

ଲପିତା ହସିଦିଅନ୍ତି ବିନୁ କଥାରେ । କହିବାକୁ ଇଚ୍ଛା ହୁଏ "ସମୟ ଓ ପରିସ୍ଥିତିର ସ୍ରୋତରେ ବିନା ବିରୋଧରେ ନିଜକୁ ଛାଡ଼ିଦେଇ ମୁଁ ସବୁଥିରୁ କେତେ ଅଲଗା ହୋଇଯାଇଛି, ତୁ କ'ଣ ବୁଝିବୁ ।"

ନିଜ ଭିତରେ ନିଜେ ବୁଡ଼ି ରହିଥିବା ଲପିତାଙ୍କର ଅନ୍ୟମନସ୍କତା ତାଙ୍କର ରୁଟିନବନ୍ଧା ନିତିଦିନିଆ ସଂସାର ଉପରେ ପ୍ରଭାବ ପକାଉନଥିଲା । ସବୁ ଚାଲିଥିଲା ଯନ୍ତ୍ରବତ୍, ଶଗଡ଼ ଗୁଳାରେ ଜୀବନ ଗଡ଼ି ଚାଲିଥିଲା ଯଥାରୀତି ।

ପାଞ୍ଚ ବର୍ଷର ନାତି ଖୁବ୍ ଚିତ୍କାର କରୁଛି ପାଣି ଭିତରକୁ ପଶିବ ବୋଲି । ଏଣେ ମାଡ଼ିଆସୁଥିବା ଢେ଼ଉକୁ ଦେଖି ଡରରେ ବାପାକୁ ଜାବୁଡ଼ି ଧରୁଛି । ଲପିତା ହସୁ ହସୁ ଅଦ୍ଭୁତ ଏକ କୋହରେ ରୁନ୍ଧି ହୋଇପଡୁଥିଲେ । ଆହା ପୁଅକୁ ସାଙ୍ଗରେ ଆଣି ସ୍ୱାମୀଙ୍କ

ସହ ଥରଟିଏ ପାଇଁ କ'ଣ ସେ ସମୁଦ୍ର ଢେ଼ଉରେ ତାକୁ ଖେଳେଇ ପାରିନଥାନ୍ତେ, ସେ କ'ଣ ଏମିତି ଥରେ ସ୍ୱାମୀଙ୍କ ହାତଧରି ବେଳାଭୂମି ଉପରେ ବସି ସମୁଦ୍ରଢେ଼ଉର ଏକ ଲୀଳାଚପଳତାକୁ ଉପଭୋଗ କରିପାରିନଥାନ୍ତେ ! ଭାଗ୍ୟକୁ ମାନିଗଲେ ବୋଲି କ'ଣ ଭାଗ୍ୟ ତାଙ୍କୁ ଏତିକି ଟିକେ ବି ଖୁସି ଦେବାକୁ ଚାହିଁଲାନି । ଆଜି ବି ପୁଅ ତା' ସ୍ତ୍ରୀ ପିଲାଙ୍କ ସହ ବାପା ମାଙ୍କର ଏକତ୍ର ଉପସ୍ଥିତିର ଆନନ୍ଦ ପାଇପାରିଲା ନାହିଁ । ଘରୁ ବାହାରିବା ପୂର୍ବରୁ ପୁଅ ତା' ବାପାଙ୍କୁ ବାରମ୍ବାର ଅନୁରୋଧ କରିଥିଲା ସାଙ୍ଗରେ ଆସିବା ପାଇଁ; କିନ୍ତୁ ସେଇ ଏକା ଉତ୍ତର "ମତେ କୁଆଡ଼େ ଯିବାପାଇଁ ଭଲ ଲାଗେନି ।"

ବିନୁ ନୀରବ ରହିଲା । ବୋହୂ ଓ ନାତି ଯାଉଥିଲେ କହିବାପାଇଁ । ସେ ତାଙ୍କୁ ଇଙ୍ଗିତରେ ବାରଣ କଲା । ସେ ଭଲ ଭାବରେ ବୁଝିଥିଲା ଯେ ବାପା ଯିବେନି । କାରଣ ସେ କେବେ ବି ତାଙ୍କୁ କୁଆଡ଼େ ଯିବାର ଦେଖିନାହିଁ । ଘରୁ ଅଫିସ, ଅଫିସରୁ ଘର । ତା'ପରେ ସବୁ ସମୟତକ ଘର ଭିତରେ । ସେ ନିଜେ କୁଆଡ଼େ ଯାଆନ୍ତି ନାହିଁ ବା ସ୍ତ୍ରୀ କୁଆଡ଼େ ଯିବାକୁ ଚାହୁଁଛି ପଚାରନ୍ତି ନାହିଁ ।

ସେ ତ ଜନ୍ମ ହୋଇଥିଲା ଓ ବଢ଼ିଥିଲା ସେଇମିତି ଏକ ପରିବେଶରେ । ଟିକେ ବଡ଼ ହୋଇଯିବା ପରେ ନିଜ ସାଙ୍ଗସାଥିଙ୍କ ସାଙ୍ଗରେ ବୁଲାବୁଲି ହସଖୁସିରେ କଟିଲା ତାର ସମୟ । ଘରକୁ ଆସିଲେ ମା' ବାପା ଦୁହିଁଙ୍କର ଉପସ୍ଥିତି ସତ୍ତ୍ୱେ ଏକ ପ୍ରକାର ମାଡ଼ି ପଡ଼ିବାର ନୀରବତା । ତା'ର ସେସବୁ ଅଭ୍ୟାସରେ ପଡ଼ି ଯାଇଥିଲା ।

କିନ୍ତୁ ଲପିତାଙ୍କୁ ଅଭ୍ୟସ୍ତ ହେବାକୁ ଲାଗିଥିଲା ଅନେକ ଦିନ । ବିବାହ ଓ ସ୍ୱାମୀଙ୍କୁ ନେଇ ସାଧାରଣ ଝିଅର ସ୍ୱପ୍ନ ଯାହା ଥାଏ ତାଙ୍କର ମଧ୍ୟ ଥିଲା । କିନ୍ତୁ ସେଥିରୁ କାଣିଚାଏ ମଧ୍ୟ ପୂରଣ ହେଲାନାହିଁ । କୌଣସି ଦୂର ଦୂରାନ୍ତର ସ୍ଥାନକୁ ଯିବା ତ ଦୂର କଥା ପୁରୀକୁ ସାଙ୍ଗ ହୋଇ ଆସିବା ମଧ୍ୟ ସମ୍ଭବ ହେଲାନି । ଯେବେ ବି ସେ କୋଉଠିକି ଯିବା କଥା ଉଠାନ୍ତି ରାଜେନ୍ଦ୍ରଙ୍କର ସେଇ ସମାନ ଉତ୍ତର, ''ମତେ କୁଆଡ଼େ ଯିବାକୁ ଭଲ ଲାଗେନି ।''

ବାହାଘର ପରେ ଶ୍ୱଶୁରଘରକୁ ମଧ୍ୟ ତାଙ୍କର ଯିବାର ହେଲାନି । ବାପ ଘରେ ସମସ୍ତେ କଥାଟା ବୁଝି ସାରିଥିଲେ ତାଙ୍କର ଦାମ୍ପତ୍ୟ କିପରି ଚାଲିଥିବ; କିନ୍ତୁ କ'ଣ କିଏ କହିବ ! ଭାଇଙ୍କ ଆଗରେ କେବଳ ସେ ମୁହଁ ଖୋଲନ୍ତି । ଛଳ ଛଳ ଆଖିରେ ଶୁଣନ୍ତି ସେ। ଭାଇ ଭଉଣୀର ଦୁଃଖ ବୁଝନ୍ତି । କିନ୍ତୁ କ'ଣ ବା କହିବେ ! ଲୋକଟାତ କାହାକୁ ମାରୁନି ଧରୁନି, କଳିକଜିଆ କରୁନି, ଖାଇବା ପିଇବା ପିନ୍ଧିବାରେ ଅଭାବ ରଖୁନି ଯେ ତା' ବିରୋଧରେ କିଛି ଅଭିଯୋଗ କରାଯାଇ ପାରିବ ! କାହାକୁ ବା କୁହାଯାଇ ପାରିବ

ସଙ୍ଗୀଟିଏ ଥାଇ ବି ଜଣେ ସମ୍ପୂର୍ଣ୍ଣ ନିଃସଙ୍ଗ ଜୀବନ ବଞ୍ଚୁଥିବାର ଦୁଃଖ କ'ଣ ହୋଇପାରେ । ରକ୍ତମାଂସର ମଣିଷଟିଏ ସାମାନ୍ୟ ଟିକେ ଆନନ୍ଦ ଉଲ୍ଲାସରୁ ବଞ୍ଚିତ ହୋଇ କିପରି କାଠ କଣ୍ଢେଇଟିଏରେ ପରିଣତ ହୋଇଯାଏ !

ଲପିତା ପିଲାଦିନେ କୋଉ କଥାରେ ଟିକେ ରୁଷିଗଲେ ଆଈ କହୁଥିଲା "ରୁଷିଛି ନାଁ ଖଣ୍ଡିଆ କାନ୍ଥକୁ ଭୁଷୁଛି ।" କଥାଟା ପୂରାପୂରି ସତ ଥିଲା । ଅନେକ ବାର ଖଣ୍ଡିଆ କାନ୍ଥରେ ମୁଣ୍ଡ ବାଡ଼େଇ ବାଡ଼େଇ ରକ୍ତାକ୍ତ ହେବା ସାର ହୋଇଥିଲା । ତେଣିକି ତାଙ୍କ ମୁଣ୍ଡ ଏତେ ଦନ୍ଥରା ହୋଇଗଲା ଯେ ଓଲଟା ସେଠି ଘଷି ହେବାକୁ ଚେଷ୍ଟା କରୁଥିବା ଲୋକର କଷ୍ଟ ପାଇବା ସାରହେଲା !

ବାହ୍ୟ ଜଗତରୁ ବାହାରି ଆସି ସେ ଅନ୍ୟ ଏକ ଜଗତ ଭିତରେ ବଂଚିବାର ପ୍ରୟାସ କରୁକରୁ କେତେବେଳେ ସତରେ ଅନ୍ୟମାନଙ୍କଠାରୁ ଭିନ୍ନ ହୋଇଯାଇଥିଲେ ଜାଣି ପାରିନଥିଲେ । ପୁଅ ସ୍କୁଲ ପରେ ବାହାରେ ହଷ୍ଟେଲରେ ରହି ପଢ଼ିଲା । ପାଠପଢ଼ା ପରେ ଚାକିରି ସେଇ ବାହାରେ । ବାହାହେବା ପରେ ମଧ୍ୟ ରହିଲା ଘରଠାରୁ ଦୂରରେ । ଘରେ ଆନନ୍ଦ ଶୂନ୍ୟ ପରିବେଶ, ଭାରାକ୍ରାନ୍ତ ନୀରବତା । ସମ୍ପୂର୍ଣ୍ଣ ନିସ୍ପୃହ ବାପା ଓ କୋଉ ଜଗତରେ ରହୁଥିବା ଅନ୍ୟମନସ୍କ ମା' ପାଇଁ ତା'ର ଘର ପ୍ରତି ଆକର୍ଷଣ ଆଦୌ ନଥିଲା । ବେଳେ ବେଳେ ଦିନେ ଦି' ଦିନ ପାଇଁ ଆସେ । ତା' ସ୍ତ୍ରୀ, ପିଲାଙ୍କୁ ନେଇ ଖୁସି ରହେ, ଫେରିଯାଏ ।

ବିନୁ ତା'ର ଚାକିରି କରୁଥିବା ସ୍ଥାନକୁ ମା' ବାପାଙ୍କୁ ଡାକେନାହିଁ । ସେ ଜାଣେ ବାପାଙ୍କର ଉତ୍ତର କ'ଣ ହେବ ଓ କେଉଁ ଅଲିଖିତ ସର୍ତ୍ତରେ ବନ୍ଧା ପଡ଼ିଥିବା ମା' କିପରି ହଲଚଲ ହୋଇପାରିବ ନାହିଁ ।

ଏଥର ପୁରୀ ଆସି ବୁଲିଯିବା ପାଇଁ ପୁଅ କହିବା ବେଳେ ଲପିତା ବିନା କୁଣ୍ଠାରେ ବାହାରି ପଡ଼ିଥିଲେ । ସ୍ୱାମୀଙ୍କର ପ୍ରତିକ୍ରିୟା ଲକ୍ଷ୍ୟ କରିବାର ସାମାନ୍ୟ ଚେଷ୍ଟା ମଧ୍ୟ କରିନଥିଲେ । ପୁଅ ବୋହୂ ନାତି ସମସ୍ତେ ଖୁସି ହୋଇଥିଲେ ତାଙ୍କ ଉପସ୍ଥିତିରେ ।

କିନ୍ତୁ ଆଣ୍ଠୁ ସମସ୍ୟା ତାଙ୍କୁ ସମୁଦ୍ର ପାଣିରେ ପଶିବାକୁ ଦେଲାନି । ସେଇ ଚୌକିଟି ଉପରେ ବସି ସେ ସେମିତି ଚାହିଁଥିଲେ ସମୁଦ୍ରକୁ ଓ ସମୁଦ୍ରର ଢେ଼ଉ ସହ ଖେଳୁଥିବା ଲୋକଙ୍କର ଚଞ୍ଚଳତାକୁ । କାନରେ ବାଜୁଥିଲା ସମୁଦ୍ରର ଘୋ ଘୋ ଶବ୍ଦ ସହ ବେଳାଭୂମିରେ ମଣିଷଙ୍କର କୋଳାହଳ ।

କ'ଣ ହେଲା କେଜାଣି, ହଠାତ୍ ତାଙ୍କ ସମ୍ମୁଖର ଦୃଶ୍ୟପଟ୍ଟ କେମିତି ବଦଳିଗଲା । ସମୁଦ୍ର ପାଲଟିଗଲା ଏକ ବିସ୍ତୃତ ପ୍ରାନ୍ତରରେ । ଏପର୍ଯ୍ୟନ୍ତ ଶବ୍ଦାୟିତ ହେଉଥିବା ପରିବେଶ ହଠାତ୍ ନିସ୍ତବ୍ଧ ହୋଇଗଲା ଓ ପରମୁହୂର୍ତ୍ତରେ ମୁଖରିତ ହେଲା ଭିନ୍ନ ସମାଗମରେ ।

କୋଉ ଦୂର ଅତୀତରେ କାଳୀ ମନ୍ଦିର ପରିସରରେ ଲପିତା ଦେଖିଥିବା ଚିତ୍ରଟି ଦୃଶ୍ୟାୟିତ ହୋଇଉଠିଲା ତାଙ୍କ ଆଗରେ । ରାମ ରାବଣଙ୍କ ଘମାଘୋଟ ଲଢ଼େଇ ସହ ରାକ୍ଷସ ଓ ବାନର ସେନାଙ୍କର ପରସ୍ପରକୁ ଆକ୍ରମଣ ଓ ପ୍ରତି ଆକ୍ରମଣରେ କମ୍ପି ଉଠୁଥିଲା ରଣକ୍ଷେତ୍ର । ଅସ୍ତ୍ରଶସ୍ତ୍ରର ଆଘାତ ପ୍ରତ୍ୟାଘାତର ଶବ୍ଦ ଓ ଯୋଦ୍ଧାମାନଙ୍କର ରଣ ହୁଙ୍କାରରେ ମହା କୋଳାହଳ ସୃଷ୍ଟି ହେଉଥିଲା ।

ଲପିତା କେତେବେଳେ ବାନର ସେନା ମଧ୍ୟରୁ ଜଣେ ହୋଇଯାଇଥିଲେ । ହାତରେ ଥିଲା ତାଙ୍କର ଗଛର ଭଙ୍ଗା ଡାଳଟିଏ । ନିଜର ଶକ୍ତିମତେ ସେ ତାକୁ ବିଭିନ୍ନ ପ୍ରକାରେ ବୁଲାଇବୁଲାଇ ରାକ୍ଷସମାନଙ୍କୁ ଆକ୍ରମଣ କରିଚାଲିଥିଲେ । କେତେବେଳେ ସେ ଲମ୍ଫ ଦେଇ କାହିଁ ଶୂନ୍ୟକୁ ଉଠି ଯାଉଥିଲେ ତ କେତେବେଳେ ବିଜୁଳି ବେଗରେ ତଳକୁ ଖସିଆସି ପ୍ରତିପକ୍ଷକୁ ଆଘାତ କରୁଥିଲେ । ରାକ୍ଷସ ମାନଙ୍କର ଆଘାତରେ ବାନରମାନେ ଟଳି ପଡୁଥିବା ବେଳେ ସେ ସେମାନଙ୍କୁ  ଆଶ୍ୱାସନା ଦେଇ କହୁଥିଲେ "ରାମଙ୍କ ପାଇଁ ଲଢୁଛ ଡର ନାହିଁ । ଏ ମୃତ୍ୟୁ, ମୃତ୍ୟୁ ନୁହେଁ । ରାମଙ୍କ ସ୍ପର୍ଶରେ ପୁଣି ଜୀଇଁ ଉଠି ଲଢ଼ିବ ରାମରାବଣ ଯୁଦ୍ଧ ଶେଷ ହେବା ଯାଏ ।"

ଏକ ଅଦ୍ଭୁତ ପରାକ୍ରମରେ ସେ ଡାଳ ଖଣ୍ଡଟିକୁ ବୁଲାଇ ଚାଲିଥିଲେ ।

ମା' କଣ ବସି ବସି ସମୁଦ୍ର କୂଳର ଥଣ୍ଡା ପବନରେ ତତେ ନିଦ ଲାଗିଗଲାକି ?' ପୁଅର ସ୍ୱର ।

"ଜେଜେମା ! ପାଣିକୁ ତ ଗୋଡ଼ ବଢ଼ାଇଲୁନି କି କୂଆଡ଼େ ଉଠି ବୁଲାବୁଲି କଲୁନି । ଏଠିକି କ'ଣ ଶୋଇବାକୁ ଆସିଥିଲୁ ?" ନାତିର ସ୍ୱର ।

"ମା, ଉଠି ପଡ଼ନ୍ତୁ, ଯିବା ।" ବୋହୂର ସ୍ୱର ।

ଲପିତାଙ୍କୁ ଏ ସମସ୍ତ ସ୍ୱର କାହିଁ କେଉଁ ଜଗତରୁ ଖୁବ୍ ଅସ୍ପଷ୍ଟ ଭାବରେ ଭାସି ଆସୁଥିବା ପରି ମନେ ହେଉଥିଲା । ଲପିତା ସଚେତନ ହେବାକୁ ଚେଷ୍ଟା କରୁଥିଲେ । କିନ୍ତୁ ସେ ବୁଝି ପାରୁନଥିଲେ ସେ ରଣକ୍ଷେତ୍ରରେ ଡାଳ ଖଣ୍ଡେ ଧରି ଡେଇଁ ବୁଲୁଥିବା ମାଙ୍କଡ଼ଟିଏ ନା ପୁଅ ବୋହୂ ନାତିଙ୍କର ଜିନିଷପତ୍ର ଜଗି ସମୁଦ୍ର କୂଳରେ ବସିଥିବା ଆଣ୍ଠୁ ଗଣ୍ଠି ପୀଡ଼ାରେ ପ୍ରାୟ ଚାଲିବାକୁ ଅସମର୍ଥ ହୋଇଯାଇଥିବା ବୟସ୍କା ନାରୀଟିଏ !

ସେ କେତେ ସମୟ ଧରି ଦେଖୁଥିବା ରାମରାବଣ ଓ ରାକ୍ଷସବାନର ଯୁଦ୍ଧର ଦୃଶ୍ୟ ସତ୍ୟ ନାଁ ଏବେ ଗୁଡାଏ ମଣିଷଙ୍କର ଲକ୍ଷ୍ୟହୀନ ଚଳପ୍ରଚଳ ହେବାଟା ସତ୍ୟ !

ସମୁଦ୍ର ସତ୍ୟ ନାଁ ରଣକ୍ଷେତ୍ର !

ସେ ବେଳାଭୂମିରେ ନାଁ ଯୁଦ୍ଧ ଭୂମିରେ !

ସେ ରାମଙ୍କ ପାଇଁ ଲଢୁଥିବା ବାନରଟିଏ ନାଁ ଯନ୍ତ୍ରବତ ଘରକରଣା କରୁଥିବା ନାରୀଟିଏ !

କୋଉ ସତ୍ତାଟି ତାଙ୍କର ସତ୍ୟ !

କେହି ତାଙ୍କୁ ଜୋର୍‌ରେ ହଲାଇ ଦେଲା । ସେ ଚମକି ପଡ଼ି ଉଠି ବସିଲେ ।

ପୁଅ ବିନୁ ହସି ହସି କହୁଥିଲା "ମା, ଘରେ ପରା ତତେ ବିଛଣାରେ ବି ନିଦ ହୁଏନି ବୋଲି କହୁ । ଏଠି ଆମେ ତୋ ପାଖରୁ ବ୍ୟାଗ ନେଇ ଲୁଗାପଟା ବଦଳାବଦଳି କରି ଆସିଲୁଣି, ତୁ ଏଇ ପ୍ଲାଷ୍ଟିକ ଚୌକୀରେ ବସି ସେତିକି ବେଳୁ ଘୋର ନିଦରେ ଶୋଇଛୁନା ! ଚାଲ ମନ୍ଦିର ଯିବା, ଠାକୁରଙ୍କୁ ଦର୍ଶନ କରିବୁ ପରା । ଉଠ୍, ମୁଁ ତତେ ଧରି ଧରି ନେଇଯିବି ।''

ଲପିତା ଶୂନ୍ୟଦୃଷ୍ଟିରେ ଚାହିଁଥିଲେ । ସେ ବୁଝି ପାରୁନଥିଲେ ପୁଅ କୋଉ ମନ୍ଦିରକୁ ଯିବା କଥା, କୋଉ ଠାକୁରଙ୍କୁ ଦର୍ଶନ କରିବା କଥା କହୁଛି ! ଏବେଏବେ ଯାହାଙ୍କ ସହିତ ସେ ଯୁଦ୍ଧକ୍ଷେତ୍ରରେ ଓହ୍ଲାଇଥିଲେ, ଭଙ୍ଗାଡାଳ ବୁଲାଉଥିବା ବେଳେ ବି ଯାହାଙ୍କର ସ୍ନିଗ୍‌ଧ ଶ୍ୟାମଳକାନ୍ତି ତାଙ୍କ ଆଖିରେ ଅମୃତ ବୋଳି ଦେଇ ହୃଦୟକୁ ଦିବ୍ୟ ପ୍ରଶାନ୍ତିରେ ଭରି ଦେଉଥିଲା, ସିଏ କିଏ ଥିଲେ ! କିଏ ଥିଲେ ସେ !



# ଦିଅଁଖୋଜା

ଈଶାନୀ ଗାଁର କଡ଼େକଡ଼େ ବହିଯାଉଥାଏ କଜଳପାତି ନଈ । ବର୍ଷା ଋତୁରେ କୂଳ ଲଂଘେ ନାହିଁ କି ବନ୍ଧ ଭାଙ୍ଗେ ନାହିଁ ।

ତାକୁ ଦେଖିଲେ ଲାଗେ ସତେ ଯେମିତି କେଉଁ ଅନାହତ ସଙ୍ଗୀତର ସୁର୍‌ରେ ସେ ମୁଗ୍ଧ ବିଭୋର ହୋଇ ଏକ ମୃଦୁ ମଧୁର ଛନ୍ଦରେ ବହିଚାଲିଛି ।

ବର୍ଷାଦିନେ ଗତି ତା'ର ଟିକେ ପ୍ରଖର ହୋଇଯାଏ । ଶରୀର ଟିକେ ସ୍ଫୀତ ହୋଇଉଠେ । ପୁଣି କେଇଟି ଦିନପରେ କଜଳପାତି ନଈଟି ଫେରିପାଏ ତା'ର ସୁଠାମ ରୂପ, ସୁଢ଼ଳ ଗତି ।

ନଈ କେବେ ଶୂନ୍ୟଗର୍ଭା ହୁଏନି । ତେଣୁ ଗାଁ ପିଲାଙ୍କର ଅତଡ଼ା ଉପରୁ ନଦୀଗର୍ଭକୁ ଲମ୍ଫଦେବା, ସନ୍ତରଣର ବିଭିନ୍ନ କୌଶଳ ଶିଖିବା ବର୍ଷସାରା ଚାଲିଥାଏ ।

ଏବର୍ଷ କିଛି ଅଦ୍ଭୁତ ଘଟଣା ଘଟିଗଲା । କଜଳପାତି ନଈ କୋଉଠି ବନ୍ଧ ନ ଭାଙ୍ଗିଲେ ବି ଅଚାନକ ତା' ଭିତରକୁ କୋଉଠୁ ମାଡ଼ିଆସିଥିଲା ବିପୁଳ ପରିମାଣର ବଢ଼ିପାଣି । ନିଜ ଭିତରେ ତାକୁ ସେ ସମ୍ଭାଳି ପାରିନଥିଲା । ବନ୍ଧ ଉଛୁଳାଇ ଗାଁ ଭିତରକୁ ପଶିଆସିବାକୁ ଲାଗିଲା ।

ତାକୁ ଦେଖିବା ବେଳେ ମନେ ହେଉଥିଲା ସତେ ଯେପରି ସହସ୍ର ଫଣା ନାଗ କୋଉ ଅତଳତଳରୁ ସୁ ସୁ ଗର୍ଜନ କରି ବନ୍ଧ ଉପରକୁ ମୁଣ୍ଡ ଟେକି ଗାଁ ଭିତରକୁ ମାଡ଼ିଆସୁଛି ।

ଈଶାନୀ ଗାଁର ଅଧିବାସୀମାନେ ବଢ଼ିପାଣି ଗାଁରେ ପଶିବା ସମ୍ପର୍କରେ ସଚେତନ ନଥିଲେ । ବିଗତ ଷାଠିଏ ସତୁରୀ ବର୍ଷ ଭିତରେ କଜଳପାତି ପରି ଶାନ୍ତ ସୁନ୍ଦର ଛନ୍ଦମୟୀ ନଈଟିର ଭୟଙ୍କର ରୂପ ସହ କାହାର ପରିଚୟ ନଥିଲା । କିନ୍ତୁ ଅଶୀବର୍ଷରୁ ଊର୍ଦ୍ଧ୍ୱ ଯେଉଁ କେତୋଟି ଲୋକ ଗାଁରେ ବଞ୍ଚିଥିଲେ ଏକଦା ତାଙ୍କ ପିଲାଦିନେ ଏକଦା ଏମିତି ଥରେ ବଢ଼ିପାଣି ପଶିଆସିବା କଥା ସେମାନଙ୍କର ସାମାନ୍ୟ କିଛି ମନେ ଥିଲା ।

ତେଣୁ ଏଥରର ବଢ଼ି ସମସ୍ତଙ୍କ ପାଇଁ ନୂଆ ଥିଲା । କିନ୍ତୁ ଭୟର ବିଶେଷ କାରଣ ନଥିଲା । ଗାଁରେ ଏ ଭିତରେ ଗଢ଼ି ଉଠିଥିଲା ଅନେକ କୋଠାଘର, ନଦୀବନ୍ଧ ବି ବେଶ୍ ମଜଭୂତ ଥିଲା । ଘରେ ଖାଦ୍ୟ ପଦାର୍ଥ ମଧ୍ୟ ମହଜୁଦ୍ ଥିଲା ଓ ଗାଁଟି ସହରର ଖୁବ୍ ପାଖରେ ଥିବାରୁ ସରକାରୀ ସାହାଯ୍ୟ ଯଥାଶୀଘ୍ର ପହଞ୍ଚିବାର ସମ୍ଭାବନା ଥିଲା ।

ଏସବୁ ସତ୍ତ୍ୱେ ବନ୍ଧ ଉଛୁଳା ପାଣିର ମାତ୍ରା ଅଧିକ ହେବାକୁ ଲାଗିଥିବାରୁ ସମସ୍ତେ ଆତଙ୍କିତ ହେବାକୁ ଆରମ୍ଭ କରିଥିଲେ । ତଳେ ଥିବା ଜିନିଷପତ୍ର ସବୁକୁ ଉପରକୁ ଉଠାଇ ରଖିବା କାମରେ ଯିଏ ଯାହା ଘରେ ବ୍ୟସ୍ତ ଥିଲେ ।

ନିଜର ଦୋମହଲା ଘରର ଝରକା ଦେଇ ବାହାରକୁ ଚାହୁଁଥିଲେ ପ୍ରତାପ ବାବୁ । ତାଙ୍କର ଆଖିପଡ଼ିଲା ଦିଅଁଙ୍କ ଘରର ଚାରିକଡ଼ରୁ ବଢ଼ି ପାଣି ଘେରିଗଲାଣି । ପିଣ୍ଡା ବୁଡ଼ିବାବୁଡ଼ିବା ଅବସ୍ଥାକୁ ଆସିଗଲାଣି । କିନ୍ତୁ ମନ୍ଦିରର ପୂଜକ ନରହରି ନନା ପିଣ୍ଡା ଉପରେ ଏପଟ ସେପଟ ହେଉଛନ୍ତି । ଗୋପିନାଥଙ୍କ ମନ୍ଦିର ପ୍ରତାପ ବାବୁଙ୍କର ବଂଶର ।

କିନ୍ତୁ ଗାଁଟା ଯାକର ଲୋକେ ପୂଜା ଉପାସନା କରନ୍ତି । ବାରମାସରେ ଠାକୁରଙ୍କର ତେର ପର୍ବ ଯଥାବିଧି ପାଳନ ହୁଏ । ଗାଁ ଲୋକେ ପର୍ବପର୍ବାଣିର ଖର୍ଚ୍ଚ ବାବଦକୁ କିଛି କିଛି ଅର୍ଥ ମଧ୍ୟ ଦାନ କରନ୍ତି । କିନ୍ତୁ ଠାକୁରଙ୍କର ପ୍ରତ୍ୟହ ନୀତିର ପ୍ରଧାନ ଦାୟିତ୍ୱ ପ୍ରତାପ ବାବୁ ଓ ତାଙ୍କ କୁଟୁମ୍ବର ଲୋକଙ୍କର । ସେମାନଙ୍କ ମଧ୍ୟରୁ କିଏ କୁଆଡ଼େ ସହର ବଜାରରେ ଯାଇ ରହିଲେଣି । ତଥାପି ଠାକୁରଙ୍କର ଖର୍ଚ୍ଚବାର୍ଚ୍ଚ ପାଇଁ ଯିଏ ଯାହାର ସାଧ୍ୟମତେ ଦିଅନ୍ତି ।

କିନ୍ତୁ ଠାକୁରଙ୍କର ଦୈନନ୍ଦିନ ନୀତି ମଧ୍ୟାହ୍ନ ଓ ରାତ୍ରିକାଳୀନ ପ୍ରସାଦ ପାଇଁ ନିର୍ଦ୍ଦିଷ୍ଟ ମାତ୍ରାର ଚାଉଳ, ଡାଲି, ପନିପରିବା, କ୍ଷୀର ଘିଅ ଚିନି ପ୍ରଭୃତି ଯୋଗାଡ଼ କରନ୍ତି ପ୍ରତାପଙ୍କର

ପରିବାର । ସେ ନିଜେ ଅଶୀବର୍ଷ ପାରିଗଲେଣି । ତାଙ୍କର ଏକମାତ୍ର ପୁଅ ସହରରେ ଚାକିରି କଲେବି ଗାଁ ଛାଡ଼ି ଯାଇପାରୁନି । କାରଣ ବାପାଙ୍କୁ ସେ ଛାଡ଼ିପାରିବେନି କି ବାପା ଦିଅଁଙ୍କୁ ଛାଡ଼ିଯିବେନି । ତେଣୁ ତାଙ୍କରି ପରିବାର ଦିଅଁଙ୍କର ସବୁ ଦେଖାଶୁଣା କରେ ।

ସେ ଉପରୁ ଥାଇ ଡାକ ପକାଇଲେ, "ହୋ ନନା ସେଠି ଆଉ କ'ଣ କରୁଛ ? ପାଣି ମାଡ଼ିଆସୁଛି । ଶୀଘ୍ର ଘରକୁ ପଳାଅ ନହେଲେ ଆଉ ଯାଇପାରିବନି ।"

ତଥାପି ନରହରି ନନା କ'ଣ କରିବେ ବୁଝି ପାରୁନଥାନ୍ତି ।

- କ'ଣ ହେଲା ହୋ ? ପଚାରିଲେ ପ୍ରତାପ ବାବୁ ।

- ନାଇଁଯେ ଆଜ୍ଞା, ଠାକୁରଙ୍କୁ ଏକା ଛାଡ଼ିକରି ଯିବାକୁ ମନ ହେଉନି ।

- ଏକା କ'ଣ କିହୋ ? ସେ ତିନି ଭାଇଭଉଣୀ ପରା ଏକାଠି ଅଛନ୍ତି । ତୁମେ ବରଂ ଘରକୁ ଯାଅ । ସେଠି ତୁମ ବୁଢ଼ୀମା, ସ୍ତ୍ରୀ ଓ ପିଲାମାନେ ବ୍ୟସ୍ତ ହେଉଥିବେ । ହଁ, ନନା ଯିବା ପୂର୍ବରୁ ଦିଅଁଙ୍କ ଘର କବାଟଟା ଭଲକରି ଦେଖି ତାଲା ପକାଇଦେବ । ପାଣି ଯଦି ବେଶି ବଢ଼ିବ, କବାଟ ଖୋଲାଥିଲେ କିଏ କୁଆଡ଼େ ଭାସିଯିବେ ।

- ଆଜ୍ଞା କବାଟର ତଳଫାଙ୍କ ଦେଇ ପାଣି ଗମ୍ଭୀରା ଭିତରକୁ ପଶିଯିବ ଯେ-

- ହଁ, ଆଉ କ'ଣକରିବା । କବାଟ ବନ୍ଦ ଥିଲେ ଠାକୁରେ ତା'ରି ଭିତରେ ଅନ୍ତତଃ ରହିଯିବେ ।

ଆଠବର୍ଷର ନାତିଟୋକା ଜେଜେଙ୍କ ପାଖରେ ଠିଆହୋଇ କଥା ଶୁଣୁଥିଲା । ହଠାତ୍ ତାଳିଟାଏ ମାରି ଖୁସିରେ କହିଲା "ବାଃ ଠାକୁରଙ୍କର କି ମଜା ! ଭିତରେ ସୁଇମିଙ୍ଗ ପୁଲରେ ପହଁରିବେ ନା ଜେଜେ ।"

ପଛପଟୁ ପ୍ରତାପଙ୍କ ସ୍ତ୍ରୀ ନିଶାମଣି ନାତିକୁ ତାଗିଦା କରିକହିଲେ "ହଇରେ ବଗୁଲିଆ ଟୋକା, ଠାକୁରଙ୍କୁ ସେମିତି କଥା କୁହନ୍ତି ?"

ନାତି ଟିକେ ଥତମତ ହୋଇଗଲା । କିନ୍ତୁ ସେ ବୁଝିପାରିଲା ନାହିଁ ଯେ ସେ କ'ଣ ଭୁଲ ଭଥାଟାଏ କହିଦେଲା । ତାକୁ ଖାଇବାପାଇଁ ଡାକି ଆସିଥିବା ନିଶାମଣି ତା' ହାତଧରି ଭିତରକୁ ନେଇଗଲେ । ସେ ଜାଣନ୍ତି ପୁଅବୋହୂ ଚାରିଦିନ ପାଇଁ ଗାଁରୁ ବାହାରକୁ ଯାଇଥିଲେ । ଏ ବଢ଼ିପାଣି ଯେ ହଠାତ୍ ଏମିତି ଗାଁ ଭିତରକୁ ପଶିଆସିବ କାହାର ଧାରଣା ନଥିଲା । ତେଣୁ ପାଣି ନ କମିବା ପର୍ଯ୍ୟନ୍ତ ସେମାନେ ଘରକୁ ଫେରିପାରିବେନି । ତେଣୁ ଖାଇବା ପିଇବାରେ ସବୁବେଳେ ଝଂଝଟ କରୁଥିବା ନାତି ବୁଲୁକୁ ସମ୍ଭାଳିବାକୁ ପଡ଼ିବ ।

ଜେଜେମା ନାତି ଭିତରକୁ ଚାଲିଗଲେ । ପ୍ରତାପ ବାବୁ ସେମିତି ଝରକା ପାଖରେ ଠିଆହୋଇ ବାହାରକୁ ଚାହିଁଥାନ୍ତି । ନରହରି ନନା କଚ୍ଛା ଭିଡ଼ି ଦିଅଁଙ୍କ ଘର ପିଣ୍ଡାରୁ ପାଣିକୁ ଓହ୍ଲାଇ ଠାକୁରଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆଟିଏ ମାରିଲେ । ଏଥର ଖାଲଖମା ଠଉରେଇ ଚାଲିଲେ ତାଙ୍କ ଘର ଦିଗରେ ।

ପ୍ରତାପଙ୍କର ମନେ ପଡ଼ିଯାଉଥିଲା ତାଙ୍କ ପିଲାଦିନର ଘଟଣା । ଏବର କୋଠାଘର ଜାଗାରେ ତାଙ୍କର ଥିଲା ମାଟି ତିଆରି ଚାଳଛପର ଘର । ଉଚ୍ଚା ପିଣ୍ଡାଘର ପାଖକୁ ଦିଅଁଙ୍କର ଛୋଟକାଟର ଘର । ନୁଆଁଣିଆ ଚାଳଛପର । କୋଉ ପୁରୁଷରୁ ସେଇଘରେ ରାଧାକୃଷ୍ଣଙ୍କର ପିତଳମୂର୍ତ୍ତି ପୂଜା ପାଉଥିଲେ । କିନ୍ତୁ ସେ ଶୁଣିଥିଲେ ତାଙ୍କ ଜେଜେ କାଳେ ଥରେ ପୁରୀ ଯାଇଥିଲେ । ସେଇଠାରୁ ନେଇ ଆସିଥିଲେ ଜଗନ୍ନାଥ ବଳଭଦ୍ର ସୁଭଦ୍ରାଙ୍କର ତିନୋଟି ମୂର୍ତ୍ତି । ଠାକୁରଙ୍କର ମୂର୍ତ୍ତି ଦେଖି ଘରେ ସମସ୍ତେ ଖୁସି ହେଲେ । କିନ୍ତୁ ଯେଉଁଦିନ ଜେଜେ ଦିଅଁଙ୍କ ଘରେ ପୂଜା ପାଉଥିବା ରାଧାକୃଷ୍ଣଙ୍କ ମୂର୍ତ୍ତିକୁ ତଳଥାକକୁ ଆଣି ଉପର ସ୍ଥାନରେ ଏ ତିନିମୂର୍ତ୍ତିଙ୍କୁ ସ୍ଥାପନା କଲେ ଘରେ ଅନ୍ୟମାନେ ଅସନ୍ତୁଷ୍ଟ ହେଲେ । ସେମିତି କରିବା ଠିକ୍ ହେଲାନି ବୋଲି ମୃଦୁ ପ୍ରତିବାଦ କଲେ ।

ଜେଜେ କାଳେ କହିଥିଲେ "ଆରେ ଠାକୁରଙ୍କ ଭିତରେ ବଡ଼ସାନ କ'ଣ । ପିତଳ ମୂର୍ତ୍ତି ଭାଙ୍ଗିଯିବନା ଭାସିଯିବ ! ଯିଏ କାଠମୂର୍ତ୍ତି ସେ ଟିକେ ଉପର ଆସ୍ଥାନରେ ଭଲରେ ବସନ୍ତୁ । ଏମାନେ ତ ଆଉ ରାଧାକୃଷ୍ଣଙ୍କ ପରି ଯୁଗଳ ମୂର୍ତ୍ତି ନୁହନ୍ତି । ତିନି ଭାଇ ଭଉଣୀ ଅଲଗା ଅଲଗା ବସିଛନ୍ତି । ଅଧିକ ଜାଗା ଦରକାର କି ନାହିଁ ।''

ଆ'ପରେ ଆଉ କିଏ ବା କ'ଣ କରିଥାନ୍ତେ ! ସେହିଦିନଠାରୁ ସବୁଦିଅଁ ନିଜନିଜ ଆସ୍ଥାନରେ ବସି ଯଥାରୀତି ପୂଜା ପାଇଥିଲେ । ଗୋପିନାଥଙ୍କ ନାମରେ ପରିଚିତ ଥିବା ମନ୍ଦିରଟିର ଗର୍ଭଗୃହରେ ଉଚ୍ଚଆସନରେ ବସି ବଡ଼ବଡ଼ ଚକାଆଖିରେ ଚାହୁଁଥିବା କଳାଠାକୁର ଧୀରେଧୀରେ ଏପରି ପ୍ରାଧାନ୍ୟ ବିସ୍ତାର କଲେ ଯେ ଲୋକେ ତାକୁ ପତିତପାବନଙ୍କ ମନ୍ଦିର ବୋଲି କହିବାକୁ ଆରମ୍ଭ କରିଦେଲେ ।

ନଈକୂଳିଆ ଗାଁରେ ପାଣିପଶେ । କିନ୍ତୁ ଗାଁ ପଟରେ ମାଟି ବନ୍ଧ ହେଲେ ବି ମଜଭୁତ ଥିବାରୁ ବନ୍ଧ କେବେ ଭାଙ୍ଗେନି । ବଢ଼ିପାଣି ଅଳ୍ପ ପଶିଆସିଲେ ଲୋକେ କିଛି କିଛି ଦିନ ଜଳବନ୍ଦୀ ହୋଇ ରହିଯାନ୍ତି । ପୁଣି ଗାଁର ଜୀବନ ସ୍ୱାଭାବିକ ଭାବରେ ଚଳଚଞ୍ଚଳ ହୋଇଉଠେ ।

ତାଙ୍କର ଜଳଜଳ ମନେ ଅଛି । ସେ ବର୍ଷ କୋଉଠି କେଜାଣି ଆଗମୁଣ୍ଡରେ ଘାଇ ଭାଙ୍ଗିଲା ଯେ କେହି କିଛି ବୁଝିବା ପୂର୍ବରୁ ବଢ଼ିପାଣି ଗାଁ ଭିତରକୁ ହୁହୁ ହୋଇ ମାଡ଼ିଆସିଲା ।

ଗାଁ ଲୋକଙ୍କ ଭିତରେ ହାହାକାର ପଡ଼ିଗଲା । କେବଳ ପିଲାଛୁଆଙ୍କ ଜୀବନ ବଂଚେଇ, ଘରର ପୋଷା ଗାଈଗୋରୁଙ୍କୁ ଧରି ଲୋକେ ପାଖ ମୁଣ୍ଡିଆକୁ ପଳେଇଗଲେ ।

ପ୍ରତାପଙ୍କର ମନେ ଅଛି ତାଙ୍କୁ ସେତେବେଳେ ଦଶ ଏଗାର ବର୍ଷ । ସେ ମଧ୍ୟ ତାଙ୍କ ବାପା ମା ଦୁଇଭଉଣୀଙ୍କ ସହିତ ମୁଣ୍ଡିଆକୁ ପଳାଇଥିଲେ । ଭୋକ ଉପାସରେ ଗାଁ ଗୋଟାକର ଲୋକେ ତହଲ ବିକଳ । ଉପାୟ ନାହିଁ ।

ଏପରି ଅବସ୍ଥାରେ ଦିଅଁଙ୍କ କଥା କାହାର ବା ମନେ ଅଛି । ଦୁଇଦିନ ବିତିଗଲାଣି । ପାଣି କମି ଆସୁଥାଏ । ଲୋକେ ମୁଣ୍ଡିଆରୁ ଓହ୍ଲାଇ ଘରମୁହାଁ ହେଲେ । ପାଣି ପିଣ୍ଡା ଉପରକୁ ଚଢ଼ିଆସି ଫେରିଯିବା ପରେ ଘର ଭିତରେ ବାହାରେ ପଟୁ ଚଢ଼ିଯାଇଛି । ଘରେ ପଶି ତାଙ୍କ ବାପା ମା ଓ ଦୁଇ ବଡ଼ ଭଉଣୀ କ'ଣ ସଜାଡ଼ିବେ, କ'ଣ ସଫା କରିବେ ବୁଝିନପାରି ବ୍ୟସ୍ତ ହେଉଥାନ୍ତି ।

ପ୍ରତାପଙ୍କର ମନେଅଛି ସଙ୍ଗାରେ ଥିବା ଭୁଜାଉଖୁଡ଼ାରୁ ଥୋଡ଼ାଏ ଖାଇଦେଇ ସେ ବାହାରକୁ ବାହାରି ଆସିଥିଲେ । ଏବେ ଆଣ୍ଠୁଏ ସରିକି ପାଣିଥିବା ଜାଗାରେ ପହଁରୁଥିବା ଛୋଟ ଛୋଟ ମାଛଙ୍କୁ ଧରିବା ପାଇଁ ସେ ନିଜର ପିନ୍ଧା ଗାମୁଛାକୁ ଖୋଲି ଜାଲ ପରି ପକାଉଥାନ୍ତି ।

ମାଛ ବା କୋଉ ଧରାପଡ଼ିବେ ! ତାଙ୍କ ପିଛା କରୁ କରୁ ପ୍ରତାପ ପହଞ୍ଚିଯାଇଥିଲେ ଦିଅଁଙ୍କ ଘରର ପିଣ୍ଡା ପାଖରେ । ତାଙ୍କ ଆଖି ପଡ଼ିଗଲା ଦିଅଁଙ୍କର ମୁକୁଳା କବାଟ ଉପରେ । ସେ ମାଛଧରା ଛାଡ଼ି ଦିଅଁଘର ପିଣ୍ଡା ଉପରକୁ ଚଢ଼ି ଭିତରକୁ ଅନାଇଲେ ଓ ତା'ପରେପରେ ରଡ଼ିଛାଡ଼ି ବାପାଙ୍କୁ ଡାକ ପକାଇଥିଲେ ।

ତାଙ୍କର ଚିତ୍କାର ଶୁଣି ଘର ଭିତରେ ଥାଇ ଜିନିଷପତ୍ର ସଜାଡ଼ି ରଖୁଥିବା ସମସ୍ତେ "କ'ଣ ହେଲା ? କ'ଣ ହେଲା ?'' କହି ବାହାରି ଆସିଲେ । କାଦୁଅ ସରସର ହୋଇ ପାଣି କାଟିକାଟି ଧାଇଁ ଆସିଥିଲେ ତାଙ୍କର ବାପା ନାରଣ ମହାପାତ୍ର । ପୁଅର କିଛି ଘଟିଗଲା ଭାବି ସେ ବ୍ୟସ୍ତ ହୋଇ କିଛି ପଚାରୁଥିବାବେଳେ ପ୍ରତାପ ଠାକୁରଘର ଭିତରକୁ ହାତ ଦେଖେଇ ଦେଲେ ।

ନାରଣ କିଛି ବୁଝିପାରୁନଥିବା ଦେଖି ପ୍ରତାପ ପାଟିକରି କହିଲେ "ବାପା କଳାଦିଅଁ ତ ଆସ୍ଥାନରେ ନାହାନ୍ତି । କୁଆଡ଼େ ଭାସିଗଲେ କି କ'ଣ ?"

ତାଙ୍କ ବାପା ଗୋଟେ କୁଦାରେ ଦିଅଁଘର ପିଣ୍ଡାକୁ ଚଢ଼ିଆସି ଘର ଭିତରକୁ ଉଣ୍ଡି ପକାଉଥାନ୍ତି । ଭିତରେ ବେଶି ଅନ୍ଧାର ଓ ଅଳ୍ପ ଆଲୁଅ ଭିତରେ ବି ସେ ଠିକ୍ ଦେଖିପାରିଲେ

ଧଳାଠାକୁର ଓ ତାଙ୍କର ହଳଦୀମୁହାଁ ଭଉଣୀ ଯେଉଁଠି ବସିଥିଲେ ସେଇଠି ଅଛନ୍ତି । ତଳେ ରାଧାକୃଷ୍ଣଙ୍କର ପିତଳ ମୂର୍ତ୍ତି ମଧ୍ୟ ଯଥାସ୍ଥାନରେ ରହିଛି । ଏକା ନାହାନ୍ତି କଳାଠାକୁର ।

ବାପା ତାଙ୍କର ସେ ଛୋଟ ଘରଟି ଭିତରକୁ ପଶିଯାଇ ସବୁଆଡ଼ ବାରବାର ଅଣ୍ଡାଳି ପକାଉଥାନ୍ତି । କିନ୍ତୁ କାହାନ୍ତି ସେ !

ପ୍ରତାପଙ୍କ ବାପା ମୁଣ୍ଡରେ ବଜ୍ର ପଡ଼ିବା ପରି ହୋଇ ସେଇଠି ଲଥ୍ କରି ବସିପଡ଼ିଥାନ୍ତି । ତାଙ୍କ ପାଟିରୁ କିଛି କଥା ବାହାରୁ ନଥାଏ । ସେତେବେଳକୁ ପ୍ରତାପଙ୍କ ମା ଓ ଭଉଣୀ ଦି'ଜଣ ବି ସେଠାରେ ପହଞ୍ଚି ଯାଇଥାନ୍ତି । କଥାଟା ବୁଝିବାରେ କାହାରି ଆଉ ଅସୁବିଧା ହେଲାନି । ଠାକୁର ଘରର କବାଟ ନିଶ୍ଚୟ ମୁକୁଳା ଥିଲା । ପାଣି ପଶିବାରୁ ଯିଏ ଯୁଆଡ଼େ ନିଜ ଧନଜୀବନ ବଞ୍ଚାଇବାକୁ ପଳାଇ ଯାଇଥିଲେ । ଦିଅଁଙ୍କ କଥା ଭାବୁଛି କିଏ !

ମହାପାତ୍ର ଘରେ କାନ୍ଦବୋବାଳି ଶୁଣି କିଛି ଗାଁ ଲୋକ କ'ଣ ହୋଇଛି ବୁଝିବାକୁ ଆସି ଘଟଣାଟା ଜାଣି ବ୍ୟସ୍ତ ହୋଇପଡ଼ିଲେ । ମହାପାତ୍ର ବଂଶର ଦିଅଁଘର ହେଲେ ବି ତ ସେ ସାରା ଗାଁର ଠାକୁର ନା !

କିନ୍ତୁ କୋଉଠି ଖୋଜିବେ ତାଙ୍କୁ । ବରଂ ଘରଟାକୁ ଟିକେ ସଜାଡ଼ି ଦେଇଆସିଲେ ପଛେ ଖୋଜାଖୋଜି କରାଯିବ । ଆସିଥିବା ଦୁଇ ଚାରିଜଣ ଗ୍ରାମବାସୀ ନିଜନିଜ ଘରକୁ ଫେରିଗଲେ ।

ଦିଅଁଙ୍କୁ ନ ପାଇବା ଯାଏ ପ୍ରତାପଙ୍କ ବାପା ଘରକୁ ଫେରିବେନି କହି ବାଡ଼ିଟାଏ ଧରି ପାଣିକାଦୁଅ ଘାଣ୍ଟି ଘାଣ୍ଟି ନଇ ଆଡ଼ିକି ଚାଲିଥାନ୍ତି । ପ୍ରତାପ ମଧ୍ୟ ବାପାଙ୍କ ପଛେପଛେ । ବାପ ପୁଅ କିଆବୁଦା, ଖାଲଖମା, ପାଣିରେ ଭାସି ଏଠିସେଠି ଲାଗିଥିବା ପାଳଗଦା ସବୁ ଅଣ୍ଡାଳି ପକାଉଥାନ୍ତି ।

ପ୍ରତାପ ସେଦିନ ଖୁବ୍ ଜଣେ ବିଜ୍ଞ ବ୍ୟକ୍ତି ପରି କହିଥିଲେ, "ବାପା ଆ'ର ଠାକୁର ଦି'ଜଣ ତ ଯୋଉଠି ବସିଥିଲେ ସେଇଠି ଅଛନ୍ତି । ଇଏ କୁଆଡ଼େ ଗଲେ ! ପାଣି ଭସେଇ ନେଇଥିଲେ ତିନିଜଣଙ୍କୁ ତ ନେଇଥାନ୍ତା ନା ! କଳାଦିଅଁତ ବେଶି ବଡ଼ ଦିଶୁଥିଲେ, ଆଙ୍କୁ କେମିତି ପାଣି ନେଲା ଯେ !"

ତାଙ୍କ ବାପା କିଛି ଉତ୍ତର ଦେଲେନି ।

ମଝିଆକାଶରେ ସୂର୍ଯ୍ୟ ଦାଉଦାଉ ହୋଇ ଜଳୁଥାନ୍ତି । ପାଣି ଖରାଟା ଦେହକୁ ଚାଇଁଚାଇଁ ମାରୁଥାଏ । ଏଣେ ପେଟ ଭୋକରେ ଜଳୁଥାଏ । ତିନି ଦିନର ଉପାସ

ଭୋକରେ ଦେହରେ ପ୍ରାଣ ଅଛି କି ନାହିଁ ଜଣାପଡୁନି । ସେଇଥିରେ ବି ନାରଣ ପାଣି କାଦୁଅ ଅଣ୍ଡାଳି ଚାଲିଥାନ୍ତି ।

ତେଣୁ ବାପାଙ୍କୁ ଦିଅଁଖୋଜା କାମରୁ ଅଟକାଇବା ପାଇଁ ସେ ବାପାଙ୍କୁ ହସି ହସି କହିଲେ "ବାପା, ଠାକୁର ବୋଧେ ପାଣିରେ ପହଁରିବାକୁ ନିଜେ ପଳାଇଛନ୍ତି । ଚାଲ ଆମେ ଘରକୁ ଯିବା ।"

ଏ କଥାର ବି କିଛି ଉତ୍ତର ଦେଲେନି ନାରଣ । କିନ୍ତୁ ନିଜର ଦୁର୍ବଳ ଦେହକୁ ଟାଣି ଓଟାରି ଗଛଲଟା ଆଡ଼େଇ ଚାଲିଥାନ୍ତି । କିନ୍ତୁ ପ୍ରତାପଙ୍କର କ୍ଲାନ୍ତି  ନାହିଁ । ପିଲା ବୟସ । ପାଣିକାଦୁଅରେ ଘାଣ୍ଟିହେବାର ଆନନ୍ଦ ତ ସହଜରେ ମିଳେନି । ଆଜି ତାଙ୍କୁ କେହି ବାରଣ କରିବାର ନାହିଁ । ତା'ଛଡ଼ା ସେତ ଦିଅଁଙ୍କୁ ଖୋଜୁଛନ୍ତି ନା ।

ହଠାତ୍ ପ୍ରତାପଙ୍କର ଆଖିପଡ଼ିଗଲା ପାଖରେ ଥିବା କଣ୍ଟେଇକୋଳି ବୁଦା ଦେହରେ ଝୁଲୁଛି ଜରିଲଗା ହଳଦିଆ କନା ଖଣ୍ଡେ ।

"ବାପା, ଦିଅଁଙ୍କ କନା ଏଠି ଲାଗିଛି" କହି ସେ ହୁରି ପକାଇଲେ ।

ଟିକେ ପଛକୁ ରହିଯାଇଥିବା ନାରଣ ବେଗେ ବେଗେ ଆସିବାକୁ ଚେଷ୍ଟା କରୁଥିବାବେଳେ ପ୍ରତାପ କହିଲେ "ବାପା, ଦିଅଁ ଏଇଠି କୋଉଠି ଅଛନ୍ତି । ତାଙ୍କ ଲୁଗାକନାରୁ ଖଣ୍ଡେ ଚିରି କରି ଏଇଠି ଲାଗିଛି । ସିଏ ନିଶ୍ଚୟ ଏଇଠି କୋଉ ବୁଦାଫୁଦାରେ ରହିଯାଇଛନ୍ତି ।"

ନାରଣଙ୍କ ଦେହକୁ କାହିଁ କୋଉଠୁ ମାଡ଼ି ଆସିଥିଲା ଅମାପ ବଳ । ଏଥର ବାପପୁଅ ଦୁହେଁ ପରମ ଉତ୍ସାହରେ କଣ୍ଟାବୁଦା ଆଡ଼େଇ ଖୋଜି ଚାଲିଲେ ।

ହଠାତ୍ ନାରଣ ଡାକ ଛାଡ଼ିଲେ, "ପତୁ ଧାଇଁଆତ, ଦେଖିତ ପୁଅ ସେ କିଆବୁଦା ଭିତରେ କ'ଣ ସେଟା ଦିଶୁଛି ।"

ପ୍ରତାପ ମାଡ଼ିଗଲେ ଆଗକୁ । ଧରିଥିବା ବାଡ଼ିରେ ପତ୍ରଗୁଡ଼ାକ ଆଡ଼େଇ ଦେଇ ଖୁସିରେ କୁହାଟ ଛାଡ଼ିଲେ "ବାପା, ଦେଖ ଦେଖ, କଳାଠାକୁର କେମିତି ହାତକୁ ଜାକି ଶୀତରେ ଥରୁଛନ୍ତି । ତାଙ୍କ ଦେହରୁ ଲୁଗାପଟା କୁଆଡ଼େ ବାହାରି ଯାଇଛି ।''

ନାରଣ ଆଉ କଣ୍ଟାଝଣ୍ଟା ନମାନି ଡେଇଁ ପଡ଼ିଥିଲେ ସେଇ କିଆବୁଦାକୁ । ପତ୍ରଡ଼ଙ୍କା ନଙ୍ଗଳା ଦିଅଁଙ୍କୁ ଭିତରୁ ଟାଣି ଆଣି ବହେ ଗେଲ କରିପକାଇଥିଲେ ।

ପ୍ରତାପ ଆଶ୍ଚର୍ଯ୍ୟ ହୋଇ ଚାହିଁଥାନ୍ତି । ଠାକୁରଙ୍କର ଗମ୍ଭୀରାକୁ ବାପା ବ୍ରାହ୍ମଣ ନନାଙ୍କ ବ୍ୟତୀତ କାହାରିକୁ ପଶିବାକୁ ଦିଅନ୍ତି ନାହିଁ । ଦିଅଁଙ୍କୁ ଛୁଇଁବାତ ଦୂରର କଥା । ଆଜି ସେଇ ବାପା ଦିଅଁଙ୍କୁ ଧରି ଗେଲ କରୁଛନ୍ତି କାନ୍ଦୁଛନ୍ତି, ହସୁଛନ୍ତି !

ତାଙ୍କର ପୂରା ମନେ ଅଛି ବାପା ତାଙ୍କର ଓଦା ଗାମୁଛାରେ ଦିଅଁଙ୍କୁ ଏଣେ ପୋଛିପକାଇ କହୁଥାନ୍ତି, "କାହିଁକି ତୁ ଏଡ଼େ ଅମାନିଆ କହିଲୁ ? ତୋ ବଡ଼ଭାଇ ଭଉଣୀତ ଯୋଉଠି ବସିବା କଥା ବସିଛନ୍ତି । ତୁ କାହିଁକି ପାଣିକୁ ଡେଇଁଥିଲୁକି ? ଧଳା ଅଂଶ ବୋଲି ଯୋଉ ଆଖି ଟିକକ ତା' ଉପରେ ବି କଳା ଚଢ଼ିଗଲାଣି । ଦେହରେ ଲୁଗା ଖଣ୍ଡକ ବି ନାହିଁ । କଣ୍ଟା ବୁଦାରେ ତିନି ଚାରିଦିନ ହେଲାଣି ବସିଛୁ ! ଚାଲଚାଲ ।"

ତା'ପରେ ବାପା ଦିଅଁଙ୍କୁ କାନ୍ଧରେ ବସେଇ କୀର୍ତ୍ତନିଆ ଢଙ୍ଗରେ ନାଚିବା ପରି ହୋଇ ଚାଲିଥାନ୍ତି । ପ୍ରତାପ ମଧ୍ୟ ତାଙ୍କୁ ଅନୁକରଣ କରି ଗଡ଼ଟାଏ ଜିତିବା ଭଙ୍ଗୀରେ ପଛେ ପଛେ ଆସୁଥାନ୍ତି ।

ଦୂରରୁ ଦିଶିଲା ତାଙ୍କ ମା ଓ ଦୁଇଭଉଣୀ ତାଙ୍କ ଘର ପିଣ୍ଡାରେ ଠିଆହୋଇ ଚାତକ ପରି ଚାହିଁଛନ୍ତି । ବାପା ତାଙ୍କର ଗମ୍ଭୀରା ଘରକୁ ପଶି ଦିଅଁଙ୍କୁ ତାଙ୍କ ଜାଗାରେ ବସାଇଦେଲେ । ଏଥର ଧଳାଠାକୁରଙ୍କୁ ଚାହିଁ ଖୁବ୍ ତାଗିଦା କରି କହିଲେ, "ବଡ଼ଭାଇ ହେଇଚ ସାନଟାକୁ ସମ୍ଭାଳି ପାରୁନ ? ତୁମେ ଥାଉଥାଉ ସେ କେତେବେଳେ ଏଠୁ ଖସିପଳାଇଲା । କଣ୍ଟା ବୁଦାରେ ପଶି କେତେ କଷ୍ଟ ପାଉଥିଲା, ଦେଖିନ ତ ବୁଝିବ କିପରି ? ଏଥର ସମ୍ଭାଳି କରି ରଖ ।"

ବାପା ଘର ଭିତରୁ ବାହାରି ଆସିବା ବେଳକୁ ମା ଓ ଭଉଣୀ ଦିହେଁ ସେଠି ପହଞ୍ଚି ଯାଇଥାନ୍ତି । ହଜେଇ ଦେଇଥିବା ଅମୂଲ୍ୟ ଧନ ଫେରିପାଇବାର ଆନନ୍ଦରେ ସମସ୍ତେ ଆତ୍ମହରା ।

କିନ୍ତୁ ମା ତମତମ ହୋଇ ଚାଳରୁ ଭିଡ଼ି ଆଣିଥିବା ଝୋଟ କତା ଦଉଡ଼ି ଖଣ୍ଡେ ବାପାଙ୍କୁ ବଢ଼େଇଦେଇ କହିଥିଲା, "ସେ କାଳିଆକୁ ତା ଆସ୍ଥାନ ସାଙ୍ଗରେ ବାନ୍ଧି ପକାଅ । ନାକେଦମ କଲାଣି ସଭିଙ୍କି ।"

ବାପା ହସି ହସି କହିଥିଲେ "ବୁଝିଲ ପତୁବୋଉ ତାକୁ ଆଉ ବାନ୍ଧିବା କ'ଣ ! ସେତ ଆମ ସାଙ୍ଗରେ କେବେଠାରୁ ବନ୍ଧା ହୋଇଛି । ପାଣି ତା' ପାଖକୁ ମାଡ଼ି ଆସୁଥିବାର ଦେଖି ଟିକେ ସମ୍ଭାଳି ପାରିନଥିବ । ଯମୁନା ମନେ ପଡ଼ିଯାଇଥିବ ବୋଲି ବାହାରିକି ପଳାଇ ଯାଇଥିଲା । ଆମ କଥା ମନେ ପଡ଼ିଯିବାରୁ ରହିଗଲା କିଆବୁଦାରେ । ନହେଲେ ବଢ଼ିପାଣିର ଯୋଉ ତୋଡ଼ ସେଥିରେ କୁଆଡ଼େ ନା କୁଆଡ଼େ ପଳାଇଥାନ୍ତା ତେଣିକି ଫେରିବାକୁ ବାଟ ପାଇନଥାନ୍ତା । ଭାବ ତ କ'ଣ ହେଇଥାନ୍ତା ଆମ ଅବସ୍ଥା !"

ବାପାଙ୍କର କଣ୍ଠରୁଦ୍ଧ ହୋଇଗଲା । ସମସ୍ତଙ୍କ ଆଖିରୁ ଅଝରଝର ଲୁହ ଝରୁଥାଏ । ବାପା ପ୍ରଥମେ ନିଜକୁ ସମ୍ଭାଳି ନେଇ କହିଥିଲେ "ହଉ ଚୁଡାଗୁଡ଼ ଟିକେ ଚକଟି ସେମାନଙ୍କୁ ଆଗ ଦି'ଟା ଖୁଆଇ ଦିଅ । ତେଣିକି ଆମ ପାଇଁ କ'ଣ ବ୍ୟବସ୍ଥା କର । ଭାରି ଭୋକ କଲାଣି ।"

ପ୍ରତାପଙ୍କର ମନେ ଅଛି ସେଦିନ ସେସବୁ କଥା କହୁଥିବା ଓ ଶୁଣୁଥିବା ଲୋକଙ୍କ ଭିତରେ ସଂଶୟଟିଏ ସୃଷ୍ଟି ହୋଇନଥିଲା ଯେ ସେମାନେ ଜଣେ ମଣିଷ ବିଷୟରେ ନାଁ ଠାକୁରଙ୍କ ବିଷୟରେ କଥା ହେଉଛନ୍ତି ।

ସେ ଘଟଣା ପରଠାରୁ ଠାକୁରଙ୍କ ଘର ଇଟାସିମେଣ୍ଟରେ ଟାଣ କରି ତିଆରି କରାଯାଇଥିଲା । ଚାରିପାଖରୁ ଘରକୁ ଘେରେଇ ରହିଥିଲା ଉଚ୍ଚାପିଣ୍ଡା । ବହୁବର୍ଷ ଯାଏ ସେମାନେ କିନ୍ତୁ ସେଇ ମାଟି ଘରେ ରହୁଥିଲେ ।

ଏ ଭିତରେ ବିତିଗଲାଣି ପାଖାପାଖି ସତୁରି ବର୍ଷ । ଏତେ ବର୍ଷ ଭିତରେ ସେଦିନର ବଢ଼ି ପରି ଆଉ ବଢ଼ି ସେ ଦେଖ୍ ନାହାନ୍ତି । ଗାଁରେ କୋଠଘର ଭର୍ତ୍ତି ହୋଇଗଲାଣି । ତାଙ୍କ ନିଜର ମଧ୍ୟ ହୋଇଯାଇଛି ଦୁଇମହଲା କୋଠାଘର । ପ୍ରତି ଘରେ ଏବେ ମୋଟର ସାଇକେଲ । ସକାଳ ହେଲେ ଗାଁରୁ ବାଇକର ସୁଅ ଛୁଟେ ସହରକୁ । କିଏ ଚାକିରି କରୁଛି, କିଏ ବ୍ୟବସାୟ କରୁଛି, କିଏ ସହରର କୋଉ କଲେଜରେ ପାଠ ପଢୁଛି । ଏମିତି ଏମିତି କେତେ କାମରେ ଗାଁରୁ ବାହାରିଯାନ୍ତି ଅନେକ ଲୋକ । ପୁଣି ସନ୍ଧ୍ୟାକୁ ଆରମ୍ଭ ହୁଏ ଫେରିବା ପର୍ବ । ପ୍ରତି ଘରେ ରହିଯାନ୍ତି ବୁଢ଼ାବୁଢ଼ୀ, ସ୍ତ୍ରୀଲୋକ ଓ ପିଲାମାନେ ।

ତାଙ୍କ ପୁଅ ଦିଲୀପ ଏବେ ବେଶ୍ ବଡ଼ ଦୋକାନ କରିଛି ସହରରେ । ତା'ସ୍ତ୍ରୀର ଭାରି ଇଚ୍ଛା ଗାଁ ଛାଡ଼ି ସହରକୁ ଚାଲିଯିବାକୁ । ସେ ଜାଣନ୍ତି ଦିଲୀପ ମଧ୍ୟ ତାହା ହିଁ ଚାହେଁ । କିନ୍ତୁ ସେ ଭଲକରି ଜାଣେ ତା'ର ବୁଢ଼ା ବାପାମା ଗୋପିନାଥଙ୍କୁ ଛାଡ଼ି କୁଆଡ଼େ ଯିବେନି । ସେଥିପାଇଁ ଗାଁ ଛାଡ଼ିବା ତା' ପକ୍ଷରେ ସମ୍ଭବ ନୁହେଁ ବୋଲି ତା' ସ୍ତ୍ରୀକୁ ନିଶ୍ଚୟ ଜଣାଇ ଦେଇଛି । ଅବଶ୍ୟ ଏଥିପାଇଁ ତାଙ୍କ ଘରେ କଥା କଟାକଟି ବା ଅଶାନ୍ତି ହୁଏନାହିଁ । ପୁଅକୁ ପାଖ ଗାଁରେ ଖୋଲିଥିବା ଇଂରାଜୀ ମିଡିୟମ ସ୍କୁଲରେ ନାଁ ଲେଖେଇ ଦେଇ ବୋହୂ ଆପାତତଃ ଖୁସି ଅଛି । କାରଣ ସେ ଭାବୁଛି ଯେ ଆଉ ଟିକେ ପୁଅ ତା'ର ବଡ଼ ହୋଇଗଲେ ସହରର କୋଉ ଭଲ ଇଂରାଜୀ ସ୍କୁଲର ହଷ୍ଟେଲରେ ରଖି ପାଠ ପଢ଼ାଇ ପାରିବ ।

ପ୍ରତାପଙ୍କର ଧ୍ୟାନ ପୁଣି ଫେରିଆସିଲା ବଢ଼ିପାଣି ଘେରରେ ପଡ଼ିଥିବା ଗାଁ ଆଡ଼ିକି । ଏପର୍ଯ୍ୟନ୍ତ ସବୁ ଠିକ୍‌ଠାକ୍ ଚାଲିଥିଲା । ତେଣୁ ଏବର୍ଷ ଯେ ଅଚାନକ ଏତେ ପାଣି ନଈରେ

ଆସିଯିବ, କେହି ଧାରଣା କରିପାରିନଥିଲେ । ବାଟରେ ରାସ୍ତା ଭାଙ୍ଗି ଯାଇଥିବାରୁ ଦିଲୀପ ଓ ତା ସ୍ତ୍ରୀ ଗାଁକୁ ଫେରି ପାରୁନାହାନ୍ତି । ସେ ଦୁହେଁ ଯାଇଥିଲେ ଭଦ୍ରକ ବୋହୂର ମା ଖୁବ୍ ଅସୁସ୍ଥ ଖବର ପାଇ ।

ଏବେ ଘରେ ଦୁଇ ବୁଢ଼ାବୁଢ଼ୀ ଓ ନାତିଟୋକା । ତଳଘରର ପିଣ୍ଡା ଉପରଯାଏ ପାଣି ଲାଗିଗଲାଣି । ତିନିହେଁ ଉପର ଘରକୁ ଉଠି ଯାଇଛନ୍ତି ।

ରାତିଟା ବଡ଼ ଉଦ୍‌ବେଗରେ କଟିଲା । ବଢ଼ିପାଣି କେତେ ପଶିଛି କେଜାଣି । ସକାଳ ହେଲେ ଯାଇ ଜଣାପଡ଼ିବ ।

ସକାଳ ହେଲା । ଆକାଶରେ ମେଘ ଘୋଟିଥିବାରୁ ବେଳ ଜଣାପଡୁନି । ପାଣି ଆଉ ବେଶି ବଢ଼ିନି । ଦିଅଁଙ୍କର ପିଣ୍ଡା ବୁଡ଼ିଯାଇଛି, ହେଲେ ତାଙ୍କ ଗମ୍ଭୀରା ଭିତରକୁ ପଶିନି ।

ପ୍ରତାପ ବାବୁ ଆଶ୍ୱସ୍ତ ହେଲେ । ଆଉ ଘରେ ଜେଜେମା ଓ ନାତିଙ୍କ ପାଟି ଶୁଣାଯାଉଛି । ଚୁଡ଼ା କି ଛତୁଆ ଖାଇବାକୁ ବୁଲୁ ରାଜି ହେଉନି । କିନ୍ତୁ ନିଶାମଣି ଆସି ଏତେ ବୁଢ଼ୀ ହେଲେଣି । ଆଖିକୁ ଆଉ ଠିକ୍ ଦିଶୁନି । ତଳେ ରୋଷେଇ ଘର । ଅଳ୍ପ ପାଣି ପଶିଛି । ହେଲେ ସେ ବା କୋଉ ଗ୍ୟାସ୍ ଚୁଲି ଲଗାଇ ରାନ୍ଧି ପାରିବେ !

ବୁଲୁ ପାଇଁ ତା' ବାପା ସବୁଦିନ ସହରରୁ ଫେରିବା ବେଳେ ଆଣୁଥିବା କି ପ୍ୟାକେଟ ସବୁ ଖୋଲି ସେ ଆନନ୍ଦରେ ଖାଇ ଚାଲିଛି । ଆଜି ତାକୁ ବାରଣ କରିବାକୁ ତା' ମା ଘରେ ନାହିଁ । ସେ ଭଲରେ ଜାଣେ ଜେଜେମା ଗ୍ୟାସ ଚୁଲି ଲଗାଇ କିଛି ରାନ୍ଧି ପାରିବନି । ଘରେ ତା' ମା ନଥିଲେ ଦୁଇଓଳି ଗୋପିନାଥଙ୍କ ମନ୍ଦିର ନୀତିରୁ ସେମାନଙ୍କ ପାଇଁ ଆସୁଥିବା ପ୍ରସାଦରେ ଚଳିଯାନ୍ତି । ଆଜି ଆଉ କ'ଣ ହେବ ! ଯାହା ଅଛି ସେଇଥିରେ ତ ଚଳିବାକୁ ହେବନା ।

ନିଶାମଣି ଆସି ପ୍ରତାପଙ୍କୁ ପଚାରିଲେ "କ'ଣ ଦିଟା ଖାଇଦିଅ । ଚୁଡ଼ା ଅଛି ଛତୁଆ ଅଛି । ଡବାରେ ସବୁ କ'ଣ ଖାଇବା ଜିନିଷ ଅଛି । ଆଣିବି କି ?"

ପ୍ରତାପ ମୁଣ୍ଡ ହଲାଇ ମନାକଲେ । ସେ ଭାବୁଥାନ୍ତି ଦିଅଁଙ୍କ କଥା । ଗତକାଲି ସକାଳେ ନରହରି ନନା ଯାହା ଭୋଗ ଦେଇଥିଲେ ସେତିକି । ଦିନ ସାରା, ରାତିଟାଏ ଆଉ କିଛି ତାଙ୍କ ପାଖରେ ଲାଗିନି । ତାଙ୍କ ବାପା ବଂଚିଥିବା ଯାଏ ଠାକୁରଙ୍କ ନୀତିରେ ଦିନେ ହେଳା ହୋଇନି । କିନ୍ତୁ ଏବେ ସେ କ'ଣ କରିବେ !

ଦିନ ଥିଲା ସେ ଦିଅଁଙ୍କୁ ଖୋଜିବାକୁ ଯାଇ ବିଲପାଟ କଣ୍ଟାଝଣ୍ଟା ପାଣିକାଦୁଅ ସବୁ ଏକାକାର କରିଦେଇଥିଲେ । ଅଥଚ ଆଜି ମାତ୍ର କେଇ ହାତ ଦୂରରେ ସେ ଅଛନ୍ତି । କିନ୍ତୁ ସେ ତାଙ୍କ ପାଖରେ ପହଞ୍ଚି ପାରୁନାହାନ୍ତି !

ମୋବାଇଲଟି ରିଙ୍ଗ୍ ହେବାରୁ ତାଙ୍କର ଧ୍ୟାନ ଭାଙ୍ଗିଗଲା । ଦେଖିଲେ ପୁଅ ଦିଲୁ ଫୋନ କରିଛି । ସେ ଫୋନ ଅନ୍ କରୁକରୁ ସେପଟରୁ ଶୁଣାଗଲା "ବାପା ତୁମ୍ଭେମାନେ କେମିତି ଅଛ ? ବୁଲୁ ତ ପାଣି ଦେଖି ଡରୁଥିବ । ଯୋଗ ଏମିତି ଯେ ଏ ବେଳରେ ଆମେ ଦୁହେଁ ଘରେ ନାହୁଁ ।"

ପ୍ରତାପ କହିଲେ, "ନାଇଁ ଆମେ ତ ଉପର ଘରେ ଅଛୁ । ତଳ ଘର ଯାହା ହୋଇଛି ତୁମେ ଆସିଲେ ବୁଝିବ । ବୁଲୁ ପାଇଁ ଚିନ୍ତା କରନା । ନଇ କୂଳିଆ ପିଲା । ବଢ଼ି ଆଗରୁ ନ ଦେଖିଲେ ବି ପାଣିକୁ ଡରିବନି । ତେବେ... ।"

ତାଙ୍କ କଣ୍ଠ ଟିକେ ଥରିଗଲା । ପୁଅ ସେପଟରୁ ପଚାରିଲା "କ'ଣ ହେଲା । ଟିକେ ବ୍ୟସ୍ତ ହେବାପରି ଜଣାପଡୁଛ ।"

- "ନାଇଁରେ ଦିଲୁ, ଠାକୁର କାଲିଠାରୁ ଉପାସରେ ବସିଛନ୍ତି ।"

ସେପଟରୁ ଦିଲୁ ଠିକ୍‌ରେ ଶୁଣି ନପାରି ବଡ଼ ପାଟିରେ ପଚାରିଲା, "ଏଁ କିଏ ବସିଛନ୍ତି ଉପାସରେ ?"

- ''ଦିଅଁ ଦିଅଁ ବସିଛନ୍ତି ଓପାସରେ । ମୁଁ ତ ତଳକୁ ଓହ୍ଲାଇ ଯାଇପାରୁନି । ଅଣ୍ଟାଏ ପାଣି ହେବ ।''

ସେପଟରୁ ଶୁଣାଗଲା ଦିଲୁର ହସ । "କି କଥା କହୁଛ ବାପା । ଦିଅଁଙ୍କର ପୁଣି ଓପାସ କଣମ ! ତୁମେ ତଳକୁ ଓହ୍ଲାଇ ପାଣିକୁ ଯିବନି । ଗୋଡ଼ ତ ତୁମର ଠିକ୍‌ରେ ପଡୁନି । ପୁଣି ତୁମେ ଯଦି ଯାଅ ବୁଲୁବି ତୁମ ପଛେ ପଛେ ଯିବ । କାହାର ଯଦି କ'ଣ ହୋଇଯିବ ମୁଁ କିଛି କରିପାରିବିନି ।"

ଫୋନ୍ କଟିଗଲା । କିନ୍ତୁ କଥାର ଶେଷଆଡ଼କୁ ତା ସ୍ୱର ବେଶ୍ ଶକ୍ତ ଜଣାପଡୁଥିଲା । ପ୍ରତାପ ଭାବିଲେ ସତକଥା ଏ ନାତିଟୋକା ଯେପରି ଚଙ୍ଗଚଙ୍ଗ ହେଉଛି, ତଳ ଘରକୁ ଯାଇ କାଗଜ ଡଙ୍ଗା ଭସାଇବାକୁ ଯେଉଁ ଜିଦ୍ କରୁଛି ସେତେବେଳେ ସେ ଯଦି ପାଣିରେ ପଶିବାକୁ ଚେଷ୍ଟା କରିବେ ସେ କ'ଣ ଆଉ ସମ୍ଭଳା ପଡ଼ିବ ! ପୁଅ ମନା କରିବା ସତ୍ତ୍ୱେ ସେ ଯଦି ପାଣିରେ ପଶି ଦିଅଁଙ୍କ ଘରକୁ ଯାଆନ୍ତି ଓ କିଛି ଅଘଟଣ ଘଟିଯାଏ ତେବେ ପୁଅ ଆଉ କ'ଣ ତାଙ୍କୁ ରଖେଇ ଦେବ ।

ପ୍ରତାପ ମୁହଁ ଶୁଖାଇ ବସିଥାନ୍ତି । ତାଙ୍କର ଶାରୀରିକ ଅସାମର୍ଥ୍ୟ ତାଙ୍କୁ ସ୍ଥାଣୁ କରି ଦେଇଥାଏ । ନାତିଟୋକା ଏ ଝରକାରୁ ସେ ଝରକା ହେଉଥାଏ । କୋଉଠି ଡେକ୍‌ଚିଟେ କି ଡ଼ାଲଟାଏ ଭାସିଯାଉଛି, କୋଉଠି ହାଣ୍ଡିମାଠିଆ ପାଣିରେ ଚକାଚକା ଭଉଁରି ଖେଳୁଛନ୍ତି ଦେଖି ସେ ଖୁସିରେ ଚିତ୍କାର କରି ନାଚିଯାଉଥାଏ । ପାଖ ପଡୋଶୀଙ୍କର ଅଗଣାରେ ଥିବା ପାରାଭାଡ଼ିରେ ପାଣି ପଶିଯିବାରୁ ଚଢ଼େଇ ସବୁ ଉଡ଼ିଆସି ତାଙ୍କର ଛାତ ଉପରେ ବସିଥିବାର ଦେଖି ଜେଜେମା ସାଙ୍ଗରେ ଲାଗି ମୁଗ ଚାଉଳ ତାଙ୍କ ଆଡ଼କୁ ଫିଙ୍ଗି ଚାଲିଥାଏ ।

ନିଶାମଣି ସ୍ୱାମୀଙ୍କର ମନଦୁଃଖର କାରଣ ବୁଝୁଥାନ୍ତି । ତାଙ୍କର ବା କୋଉ ଅବସ୍ଥା ଅଛି ଯେ ସେ ଦିଅଁଙ୍କ ଘରେ ଯାଇ ଦୀପଟେ ଜାଳି ପାରିବେ ! କିନ୍ତୁ ପ୍ରତାପଙ୍କର ହାଇ ବ୍ଲଡପ୍ରେସର ଥିବାରୁ କିଛି ଟିକେ ଖାଇ ଔଷଧଟା ଖାଇଦେବାକୁ ସେ ତାଙ୍କୁ ବାଧ୍ୟ ବି କରିପାରୁନଥାନ୍ତି ।

ଚୁଡାଚକଟା ସେମିତି ଥୁଆ ହୋଇଛି । ପ୍ରତାପ ତାଙ୍କ ଶୋଇବା ଘରକୁ ଉଠିଗଲେ । ସ୍ୱାମୀ ନ ଖାଇବାରୁ ନିଶାମଣି ମଧ୍ୟ ପାଟିକୁ କିଛି ନେଇପାରିଲେ ନାହିଁ ।

କେତେବେଳ ଏ ଭିତରେ ବିତିଗଲାଣି କେଜାଣି, ହଠାତ୍ ଦିଅଁଙ୍କ ଘରେ ଘଣ୍ଟି ବାଜିବାର ଶୁଣି ପ୍ରତାପ ଶୋଇବା ଘରୁ ପଡ଼ି ଉଠି ଆସି ଝରକା ପାଖରେ ପହଞ୍ଚିଗଲେ । ଦିଅଁଙ୍କ ଘରକୁ ଚାହିଁ ଦେଖିଲେ ନରହରି ନନା ଜବର କଚ୍ଛାଟାଏ ମାରି ହାତରେ କଦଳୀପତ୍ରରେ କ'ଣ ଧରି ଠାକୁର ଘର ଭିତରକୁ ପଶୁଛନ୍ତି ।

ସେ ଖୁସିରେ ଆତ୍ମହରା ହୋଇ ଡାକ ପକାଇ କହିଲେ, "ହୋ ନନା, ଏତେ ପାଣିରେ କେମିତି ପଶିକି ଆସିଲ ମ ? ପୁଣି ଏତେ ଦୂରରୁ ?"

ନରହରି ନନା ପଛକୁ ଫେରି ପ୍ରତାପଙ୍କ ଝରକାଆଡ଼େ ଚାହିଁ କହିଲେ, "ନ ଆସିକି କ'ଣ ଆଉ ରହି ପାରିଥାନ୍ତି ଆଜ୍ଞା । ଦିଅଁ ଏମିତି ଉପାସରେ ବସିଥିବେ ଏ ଦେହ ସହିବଟି ! ପାଟିକି ପାଣି ଯିବଟି ! ଗତକାଲି ସକାଳେ ଯାହା ଟିକେ ଭୋଗ ଲାଗିଥିଲା, ପୁଣି ଆସି ସକାଳ ହେଲା । ଯୋଉଠି ଦୁଇସେର ଚାଉଳର ଅନ୍ନ ଅଧସେର ଡାଲିରେ ପନିପରିବା ପଡ଼ି ଡାଲମା, ଖଟା, କ୍ଷୀରିରେ ଦୁଇ ଓଳି ନୀତି ହେଉଥିଲା, ସେସବୁ ତ ଏବେ ବନ୍ଦ ।  କ'ଣ ଆଉ କରିବା ! ଅକାଳେ ନିୟମ ନାସ୍ତି । ସେଥିପାଇଁ ଚୁଡାଗୁଡ ଟିକେ ସକାଳୁ ସକାଳୁ ଦିଅଁଙ୍କ ପାଖରେ ଭୋଗ ଚଢ଼େଇ ଦେଲେ ଆଜି ଦିନକ ପାଇଁ ଏ ମନଟା ବୁଝିଯିବତ !

ବୁଝିଲେ ଆଜ୍ଞା, ଆମ ଘରତ ଆପଣ ଦେଖିଛନ୍ତି । ଟିକେ କୁଦ ଉପରକୁ ହୋଇଥିବାରୁ ପାଣି ସେଯାଏ ଯାଇନି । ରନ୍ଧାରନ୍ଧି ଘରେ ଆମର ହୋଇପାରିବ । ମୁଁ କିନ୍ତୁ

ମନା କରିଦେଇଛି ଦିଅଁ ମୋର ଅନ୍ନ ଗ୍ରହଣ ନ କରିବା ପର୍ଯ୍ୟନ୍ତ ଘରେ ଚୁଲି ଜଳିବନି । ଯୋଉ ଚୂଡ଼ା ଚକଟାରେ ଦିଅଁ ଯେତେଦିନ ଚଳିବେ ଆମେ ମଧ୍ୟ ସେତିକିଦିନ ସେଇଥିରେ ଚଳିବା । ଆମ ବ୍ରାହ୍ମଣୀର ବି ସେଇ ଏକା ମତ । ହଉ ଆଜ୍ଞା ଦିଅଁଙ୍କ ନୀତିଟା ବଢ଼ାଇଦିଏ ।"

ନରହରି ନନା ଗମ୍ଭୀରା ଭିତରକୁ ଗଲେ । ଘଣ୍ଟି ଶବ୍ଦ ସହ ନନାଙ୍କର ମନ୍ତ୍ର ଉଚ୍ଚାରଣ ଓ ତାଳିମାରିବା ଶବ୍ଦ ପ୍ରତାପକୁ ଶୁଭିଯାଉଥାଏ । ସେ ଝରକା ରେଲିଂ ଧରି ଦିଅଁଙ୍କ ଘରକୁ ସେମିତି ଏକା ଆଖିରେ ଚାହିଁଥାନ୍ତି । ତାଙ୍କ କାନରେ ତାଙ୍କ ବାପାଙ୍କର ସ୍ୱର ଗୁଂଜରିତ ହେଉଥାଏ ଓ କୋଉ ଅତୀତରେ ଏମିତି ପାଣିରେ ପଶି କାଦୁଅ ଘାଣ୍ଟି ଅମାନିଆ ଦିଅଁଙ୍କୁ କିଆବୁଦାରୁ ଉଦ୍ଧାର କରି ଆଣି ନାଚି ନାଚି ଫେରୁଥିବାର ଦୃଶ୍ୟ ତାଙ୍କୁ ଦିଶିଯାଉଥାଏ ।

ଦିଅଁ ଘରର କବାଟ ପଡ଼ିବାର ଶବ୍ଦରେ ତାଙ୍କର ଅନ୍ୟମନସ୍କତା ଭାଙ୍ଗିଗଲା । ନରହରି ନନା ଫେରିଯାଉଛନ୍ତି । ମୁହଁରେ ତାଙ୍କର ଅପୂର୍ବ ପ୍ରସନ୍ନତା ବାରି ହେଇପଡୁଥାଏ ।

ପ୍ରତାପଙ୍କ ମନ ମଧ୍ୟ ଆଶ୍ୱସ୍ତିରେ ଭରିଗଲା । ସେ ତାଙ୍କ ବାପାଙ୍କର ବିଶ୍ୱାସକୁ ନରହରି ନନାଙ୍କ ଭିତରେ ଅନୁଭବ କରିପାରୁଥିଲେ ଓ ତା' ସହିତ ନିଜର ବିଶ୍ୱାସ ଶ୍ରଦ୍ଧାକୁ ମଧ୍ୟ ପରଖି ନେଉଥିଲେ । ସତରେ କ'ଣ ସେ ଠାକୁରଙ୍କ ସହିତ ସେ ଦୁହିଁଙ୍କ ପରି ଏତେ ଗଭୀର ଆତ୍ମୀୟତା ଅନୁଭବ କରିପାରନ୍ତି ନା କେବଳ ଉପଚାର ସର୍ବସ୍ୱ ହୋଇ ଅଭ୍ୟାସଗତ ଆଚରଣ କରନ୍ତି । ଏ ପ୍ରଶ୍ନଟି ତାଙ୍କୁ ବ୍ୟାକୁଳ କରିପକାଇଲା ।

ନିଜ ଭିତରେ ନିଜେ ବୁଡ଼ିଗଲେ ପ୍ରତାପ । ତାଙ୍କ ଭିତରେ ଏକ ବିଚିତ୍ର ପ୍ରଶ୍ନୋତ୍ତର ଚାଲିଥାଏ । କିଏ କହୁଥାଏ ଠାକୁରତ ପରଂବ୍ରହ୍ମ, ପୁରୁଷୋତ୍ତମ, ସର୍ବବ୍ୟାପୀ । ସେ ତ ସର୍ବତ୍ର ବିରାଜମାନ । ସମଗ୍ର ବିଶ୍ୱରେ ସେ ସୂକ୍ଷ୍ମ ରୂପରେ ଅଦୃଶ୍ୟ ଭାବରେ ବିଦ୍ୟମାନ । ତାଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ବିଗ୍ରହ ଭିତରେ ଖୋଜିବାର ଆବଶ୍ୟକତା କ'ଣ ! ସେ କେଉଁ ବ୍ୟକ୍ତିବିଶେଷର ନୁହନ୍ତି, ସମସ୍ତଙ୍କର ।

ଅନ୍ୟ ଏକ ସ୍ୱର ଖୁବ୍ କୋମଳ ଭାବରେ କହୁଥିଲା "ସେ ହୁଅନ୍ତୁ ସମସ୍ତଙ୍କର, ସେଥିରେ କିଛି ଯାଏ ଆସେନା । ମୁଁ କିନ୍ତୁ ଜାଣେ ସେ ମୋର, ମୋର ଅତି ଆପଣାର । ହୁଅନ୍ତୁ ସେ ବିଶ୍ୱରୂପୀ, ମୁଁ ଯେ ତାଙ୍କୁ ମୋର ଏଇ ଦୁଇ ଛୋଟ ବାହୁରେ ବି କୁଣ୍ଢେଇ ଧରିପାରେ । ମୁଁ ଜାଣେ ସେ ବି ମୋ ପାଖରେ ଧରାଦେବାକୁ ଉଚ୍ଛନ୍ନ ହୁଅନ୍ତି । ମୋ ଦୁଇ ବାହୁକୁ ଧରି ନିଜ ଚାରିକଡ଼େ ସେ ନିଜେ ବେଢ଼େଇ ଦିଅନ୍ତି ।

କିଏ କହିପାରେ ଭଗବାନଙ୍କ ପାଇଁ ଭୋଜନର ଆବଶ୍ୟକତା କ'ଣ ? କିନ୍ତୁ ମୁଁ ଜାଣେ ମୋ ହାତର ଖୁଦ ମୁଠାକୁ ସେ ଚାହିଁଥାନ୍ତି ।

ହେଇପାରେ କାହାପାଇଁ ତାଙ୍କର ସ୍ଥାନ କେବଳ ମଣିଷର ହୃଦୟରେ । ତାଙ୍କୁ ବାହାରେ ଖୋଜିବା କେବଳ ନିର୍ବୋଧତା ଭିନ୍ନ ଅନ୍ୟ କିଛି ନୁହେଁ ।

କିନ୍ତୁ ବେଳେ ବେଳେ ସେ ମଣିଷର କାନ୍ଧରେ ବସି ତାକୁ କିପରି ହଟହଟା କରନ୍ତି ସେ କଥା କ'ଣ କୋଉ ଶାସ୍ତ୍ର ପୁରାଣକାର କହିଛନ୍ତି କି ! କେମିତି ବା କହିବେ ! ଯିଏ ସିନା ତାଙ୍କୁ କାନ୍ଧରେ ବସାଇ ପାଣି କାଦୁଅ ଚକଟି, କଣ୍ଟାଝଣ୍ଟାରେ ଲହୁ ଲୁହାଣ ହୋଇ ତିନିଦିନର ଭୋକକୁ ପେଟରେ ଧରି ଆନନ୍ଦରେ ନାଚିଗାଇ ଆସିଛି, ସେ ସିନା କହିବ । କିନ୍ତୁ ସେକଥା କହିବାକୁ କ'ଣ ସେ ଜାଣିଥିବା ଭାଷା ଯଥେଷ୍ଟ ହେବକି !

ସେଦିନ ତାଙ୍କ ବାପାଙ୍କର ଅନ୍ତରତଳେ ଯେଉଁ କେତୋଟି ଶବ୍ଦ ଆପେଆପେ ଯୋଡ଼ି ହୋଇଯାଇ ଆନନ୍ଦ ଓ କାରୁଣ୍ୟର ମିଶ୍ରରାଗରେ ଝରିଆସିଥିଲେ ଆଜି ଏତେ ବର୍ଷ ପରେ ହଠାତ୍ ସେଥିରୁ କେଇଟି ଧାଡ଼ି ତାଙ୍କ ପାକୁଆ ପାଟିରେ ଧ୍ୱନିତ ହେବାକୁ ଆରମ୍ଭ କଲେ-

ଆରେ ମୋର କାଳିଆ ଧନ
ତୁଉ ପରା ମୋ ଜୀବନ
ଛାଡ଼ି ମତେ ଯିବୁନିରେ ଯିବୁନିରେ ଯିବୁନି ।

ପାଖରେ ଖେଳୁଥିବା ବୁଲୁ କାହିଁ କେତେବେଳୁ ଝରକାର ରେଲିଂ ଧରି ମନ୍ଦିର ଆଡ଼େ ଚାହିଁଥିବା ଜେଜ ହଠାତ୍ ଗୀତ ଗାଇବାକୁ ଆରମ୍ଭ କରିଥିବାର ଦେଖି କାବା ହୋଇ କିଛି ସମୟ ଚାହିଁଲା । ପର ମୁହୂର୍ତ୍ତରେ ଘର ଭିତରେ ଥିବା ନିଶାମଣିଙ୍କ ଉଦ୍ଦେଶ୍ୟରେ ଡାକ ପକାଇଲା, "ଜେଜମା, ଦେଖତ ଜେଜେ କେମିତି ଗୀତ ଗାଉଛନ୍ତି, ଏଣେ ପୁଣି କାନ୍ଦୁଛନ୍ତି ।"

ନାତିର ପାଟିରେ ବି ପ୍ରତାପଙ୍କର ଧ୍ୟାନ ଭାଙ୍ଗିଲାନାହିଁ । ଗୀତର ଅଜଣା ସୁର ସହିତ ତାଙ୍କର ଅଶୀବର୍ଷର ଦୁଇ ବୁଢ଼ା ଆଖିରୁ ବନ୍ଧଭଙ୍ଗା ନଈର ଧାର ପରି ଲୁହର ଧାର ଲହଡ଼ି ମାରି ଝରି ଆସୁଥିଲା ।



# ଗ୍ରହଣ

ସକାଳୁ ଯଥାରୀତି ନିଦ ଭାଙ୍ଗିଗଲା । ମନେ ପଡିଗଲା ଯେ, ଆଜି କଲେଜ ଛୁଟି ଅଛି । ପୁଣି ଥରେ ଶୋଇ ପଡିବାକୁ ଇଛା ହେଲା । ଟିକିଏ ଏପଟ ସେପଟ ହେବା ଭିତରେ ପୁଣି କେତେବେଳେ ନିଦ ଲାଗି ଯାଇଥିଲା । ହୁଏତ ଆହୁରି ଡେରିକରି ଉଠିଥାନ୍ତି । କିନ୍ତୁ ବାହାରେ ଅଶୋକ ତା'ର ପୋଲାଣ୍ଡ ଇଂଜିନବାଲା କୋଉ ପୁରୁଣାକାଳିଆ ବାଇକ୍‌ଟାକୁ କିକ୍ ପରେ କିକ୍ ମାରିଚାଲିବା ଜନିତ ଶବ୍ଦ ଓ ଖୋଲା ଝରକା ଦେଇ ଆମ ଶୋଇବା ଘର ଭିତରକୁ ପଶିଆସୁଥିବା ପେଟ୍ରୋଲ ଧୂଆଁରେ ଅଣନିଃଶ୍ୱାସୀ ହୋଇ, ମୁଁ ଉଠିପଡିଲି । ଦେଖିଲି ମନୀଶ ତା'ଖଟରେ ନିଘୋଡ ନିଦରେ ଶୋଇଛି । ଘର ଉପରେ ବଜ୍ରପାତ ଘଟିଗଲେବି ଛୁଟିଦିନରେ ଦିନ ବାରଟା ପୂର୍ବରୁ ସେ କେବେବି ଉଠିବନି ।

ମୁଁ ବାହାରକୁ ଉଠି ଆସିବା ପୂର୍ବରୁ କାନ୍ଥରେ ଟଙ୍ଗା ହୋଇଥିବା କ୍ୟାଲେଣ୍ଡର ପୃଷ୍ଠା ଉପରେ ମୋର ଆଖି ପଡିଗଲା । ଅଗଷ୍ଟ ମାସ ବାଇଶି ତାରିଖର ଚାରିକଡରେ ନାଲିକାଳିରେ ଗୋଲ ବୁଲା ଯାଇଛି । ବଡ ଭାଇଙ୍କର ଜନ୍ମ ଦିନଟା କାଳେ ଭୁଲି ଯିବି ଭାବି ମୁଁ ହିଁ ତାରିଖର ଚାରିକଡେ ନାଲିଚିହ୍ନ କରିଥିଲି ।

ଘଣ୍ଟାରେ ବାଜିଲାଣି ଦଶଟା। ଖଟ ଉପରେ ବସି ବସି ଭାଇଙ୍କ କଥା ଭାବୁଥିଲି। ଭାଇ ମୋ ଠାରୁ ବାରବର୍ଷ ବଡ। ସତ କହିଲେ ସେ ମୋର ପୂରା ନିଜ ଭାଇ ନୁହନ୍ତି। ମୋ ବାପା'ଙ୍କର ବହୁ ବର୍ଷ ଯାଏ ପିଲାପିଲି ନ ହେବାରୁ ସେମାନେ ଦାଦାଙ୍କର ତୃତୀୟ ପୁତ୍ରର ଜନ୍ମ ପରେ ତାକୁ ନାହିନାଡ କରି କୋଳେଇ ନେଇଥିଲେ। ମୋ ବାପା ଓ ଦାଦା ଥିଲେ ଦୁଇ ଭାଇ। ଦୁଇ ଭାଇଙ୍କର ସମ୍ପତି ଗୋଟିଏ ଘରେ ରହିଲା ଭାବି ଖୁଡି କୁଆଡେ ବହୁତ ଖୁସି ହେଉଥିଲେ। ମୋ ବାପା'ମା କେବଳ ସନ୍ତାନଟିଏ ପାଇଥିବା ଖୁସିରେ ବୁଡି ରହିଥିଲେ।

ଦୀର୍ଘ ବାର ବର୍ଷ ଧରି ବାପା ମା ତାଙ୍କର ପାଳିତ ପୁତ୍ରଟି ଉପରେ ସମସ୍ତ ସ୍ନେହ ମମତା ଓଜାଡି ଦେଉଥିବା ବେଳେ ଅଭାବିତ ଭାବରେ ମୋର ଆସିବାର ସମ୍ଭାବନା ଦେଖା ଦେଇଥିଲା। ବାପା ମା ହତଚକିତ ହୋଇ ଯାଇଥିଲେ କିନ୍ତୁ ପରେ ପରେ ତାଙ୍କର ଆନନ୍ଦର ସୀମା ରହି ନଥିଲା। ଶୁଣିଛି ଖୁଡି କାଳେ ରାଗରେ ଜଳୁଥିଲେ। ତାଙ୍କ ପୁଅ ପ୍ରତି ଅବହେଳା ହେଉଥିବାର ଅଯଥା ଅଭିଯୋଗ ମାନ ଆଣୁଥିଲେ। କିନ୍ତୁ ତାଙ୍କର ଏ ଆଚରଣର ପ୍ରଭାବ ଦାଦା, ମୋ ବାପା ମା ଓ ସ୍ୱୟଂ ବଡଭାଇଙ୍କ ଉପରେ ଆଦୌ ପଡି ନଥିଲା। ବରଂ ତାଙ୍କର ସାନ ଭାଇ କି ଭଉଣୀଟେ ଆସିବ ଭାବି ସେ କୁଆଡେ ଖୁସିରେ ଫାଟି ପଡୁଥିଲେ।

ବଡଭାଇ ଜାଣିଥିଲେ ସେ ମୋ ବାପାମା ଙ୍କର ନିଜ ପୁଅ ନୁହଁନ୍ତି। କିନ୍ତୁ ସେଥିରେ ତାଙ୍କର କିଛି ଯା'ଆସ ନଥିଲା। ସେ ମୋ ବାପାମାଙ୍କୁ ଯେପରି ନିଜର ବୋଲି ଗ୍ରହଣ କରିଥିଲେ ଏମାନେ ମଧ ତାଙ୍କୁ ନିଜର ଜନ୍ମିତ ପୁତ୍ର ଭିନ୍ନ ଅନ୍ୟ କିଛି ଭାବୁ ନଥିଲେ।

ମୁଁ ମଧ ମୋ ଜନ୍ମର ବହୁବର୍ଷ ପର୍ଯ୍ୟନ୍ତ ଏସବୁ କଥା ଜାଣି ନଥିଲି। ଶୁଣିଛି ଭାଇ ମୋର ବହୁତ ଯତ୍ନ ନେଉଥିଲେ। ମତେ ମାତ୍ର ଆଠ ବର୍ଷ ବେଳକୁ ଭାଇ ବନାରସ ବିଶ୍ୱ ବିଦ୍ୟାଳୟରେ ଇଂରାଜୀରେ ପି.ଜି କରିବା ପାଇଁ ଚାଲିଗଲେ। ସେଇଠାରେ ଦୁଇବର୍ଷ ପରେ ପାଠପଢ଼ା ସାରି ସେହି ବିଶ୍ୱ ବିଦ୍ୟାଳୟରେ ଉଚ୍ଚତର ଗବେଷଣା କରିବାକୁ ନିଷ୍ପତି ନେଲେ। ବାପା ସେଇବର୍ଷ ସରକାରୀ ଚାକିରିରୁ ଅବସର ନେଇ ଗାଁକୁ ଯିବା କଥା ଭାବୁଥାନ୍ତି। ଗାଁରେ ଆମର ଭଲ ଜମିବାଡି ଥିଲା; କିନ୍ତୁ ସହରରେ ଘର ଖଣ୍ଡେ ନଥିଲା। ତା'ଛଡା ବାପାଙ୍କର ସ୍ୱଳ୍ପ ପେନ୍‌ସନରେ ସହରରେ ଘରଭଡା ନେଇ ରହିବା ଓ ଭାଇଙ୍କୁ ବନାରସରେ ରଖି ପାଠ ପଢ଼ାଇବାର ଖର୍ଚ୍ଚ ତୁଲାଇବା ସମ୍ଭବ ନଥିଲା। ତେଣୁ ଗାଁକୁ ଫେରିଯାଇ ଜମି ହାତରେ ଚାଷ କରିବାର ନିଷ୍ପତି ବାପା ନେଲେ। ଆମେ ଗାଁକୁ ଫେରିଗଲୁ। ବାପା ମୋ ବିଷୟରେ ଭାବୁଥିଲେ ମୁଁ ଗାଁ ସ୍କୁଲରେ ପଢ଼ାପଢ଼ି କରୁଥିବି, ଭାଇ ପଢ଼ାସାରି ଯେଉଁଠି ଆସି ଚାକିରି କରିବେ, ମୁଁ ସେଇଠି ଯାଇ ରହିବି। ତେଣିକି ମୋର ସବୁ ଦାୟିତ ଭାଇଙ୍କର।

ଏହା ଏକ ପ୍ରକାର ସ୍ୱର ହୋଇଥିବାରୁ ମୁଁ ଗାଁରେ ଥିଲେ ବି ସବୁବେଳେ ସ୍ୱପ୍ନ ଦେଖୁଥାଏ ସହରର। ଗାଁ ସ୍କୁଲରେ ଜମାରୁ ମନ ଲାଗୁନଥାଏ। ଭାବୁଥାଏ ଭାଇ କେମିତି ଶୀଘ୍ର ଆସି ଏଠି କେଉଁ ସହରରେ ଚାକିରି କରନ୍ତୁ। ମୁଁ ତାଙ୍କ ପାଖକୁ ପଳାଇବି।

ଭାଇଙ୍କୁ ସେଠି ତାଙ୍କ ପିଏଚ.ଡି କାମ ଓ ଅନ୍ୟାନ୍ୟ କାମ ସାରିବା ପାଇଁ ଲାଗିଗଲା ଆହୁରି ପାଞ୍ଚ ବର୍ଷ ସମୟ। ସେ ସେଠି ଥିବା ଭିତରେ ତାଙ୍କର ଜଣେ ସାଙ୍ଗର ଭଉଣୀକୁ ବିବାହ କରିବାକୁ ସ୍ଥିର କରିସାରିଥିଲେ। ଘରେ ମଧ୍ୟ ସେଥିପାଇଁ କୌଣସି ଆପତ୍ତି ଉଠି ନଥିଲା। କାରଣ ସେମାନେ ଏଠାକାର ଓଡିଆ ପରିବାର ରହୁଥିଲେ ବନାରସରେ। ଭାଇଙ୍କର ବାହାଘର ହୋଇଯିବା ପରେ ବି ସେଠି ଆହୁରି କିଛିଦିନ ରହି ଫେରିଲେ ଓଡିଶାକୁ। ଏଠାକାର ସ୍ଥାନୀୟ ରେଭେନ୍‌ସା କଲେଜରେ ଇଂରାଜୀ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦେଲେ।

ବାପା ଖୁବ୍ ନିଶ୍ଚିନ୍ତ ହୋଇଯିବା ପରି ଲାଗୁଥିଲେ। ସେ ବାରବାର କହୁଥିଲେ ଅଧ୍ୟାପକ ଭାଇ ପାଖରେ ରହି ପାଠପଢ଼ିଲେ ସାନଟା ମଣିଷ ହୋଇଯିବ। ସେଇ ବର୍ଷ ମୁଁ ମାଟ୍ରିକ୍ ପାଶ୍ କଲି। କିନ୍ତୁ ମୋର ଏତେ ଭଲ ନମ୍ବର ନଥିଲା, ଯେଉଁଥିରେ କି ମୁଁ ସେ କଲେଜରେ ନାଁ ଲେଖାଇ ପାରିବି। ତେଣୁ ପୁଣି ବାଧ୍ୟ ହୋଇ ପଢ଼ିଲି ଗାଁ ପାଖରେ ଥିବା କଲେଜରେ।

ଭାଇ ଭାଉଜ ଗାଁକୁ ଦିନେ ଓଳିଏ କଦବା କ୍ୱଚିତ ଆସନ୍ତି। ବରଂ ଗାଁରୁ ଚାଉଳ ଡାଲି, ପନିପରିବା ଓ ପିଠାପଣା ଧରି ବାପା ସେମାନଙ୍କ ପାଖକୁ ଯାଆନ୍ତି ବେଶି। କିନ୍ତୁ ବାପା ଭାଇଙ୍କ ବସାରେ ଦିନଟିଏରୁ କେବେ ବି ଅଧିକା ରହିବା କଥା ମୋର ମନେ ପଡୁନି। ମା ସେମାନଙ୍କ ପାଖକୁ ଖାଲି ବୁଲିଯିବା କଥା ମଧ୍ୟ ମୁହଁରେ କେବେ ଧରିନି। ଆଇ.ଏ ପରୀକ୍ଷାରେ ପାଶ୍ କରିବା ପରେ ମୋର ପୁଣି କଟକ ଆସିବା କଥା ଉଠିଲା। କିନ୍ତୁ ସେତେବେଳକୁ ଭାଉଜଙ୍କର ସାନ ଭଉଣୀ ତାଙ୍କ ପାଖରେ ରହି କଲେଜରେ ପଢୁଥାଏ। ତେଣୁ ତାର ସମବୟସ୍କ ପୁଅପିଲା ଜଣେ ସେଇଘରେ ରହିଲେ ନିଶ୍ଚୟ କିଛି ଅସୁବିଧା ହେବ କହି ମୋର ସହରରେ ଯାଇ ପଢ଼ିବା ପ୍ରସଙ୍ଗକୁ ବାତିଲ କରିଦିଆଗଲା।

ଏଥର କିନ୍ତୁ ମୁଁ ନିଶ୍ଚିତ କରିନେଇଥିଲି ଯେ ବି.ଏରେ ଭଲ କରିବି ଓ ଏମ୍.ଏ ପଢ଼ିବି କଟକରେ, ରେଭେନ୍‌ସା କଲେଜରେ। ମୁଁ ଜାଣେନି ମୋର ଭାଇଙ୍କ ବସାରେ ଯାଇ ରହିବା କଥାକୁ ମା ବାପା ଆଉ କାହିଁକି ମୁହଁରେ ଧରୁ ନଥିଲେ।

ମୁଁ ବି.ଏ ପରୀକ୍ଷାରେ ଡିଷ୍ଟିଂକସନ ରଖି ପାଶ୍ କଲି। ଆମ ଗାଁ କଲେଜରେ ଅନର୍ସ ପଢ଼ିବାର ବ୍ୟବସ୍ଥା ନଥିଲା। ତେବେ ମୋର ରଖିଥିବା ନମ୍ବର ଅର୍ଥନୀତିରେ ପିଜି କରିବା ପାଇଁ ଯଥେଷ୍ଟ ଥିଲା। ମୁଁ ସବୁବେଳେ ଭାବୁଥାଏ ଯେ ଭାଇ ନିଶ୍ଚୟ ଏଥର କହିବେ "ମୁଁ ତ କଲେଜ କ୍ୟାମ୍ପସରେ କ୍ୱାର୍ଟରରେ ରହୁଛି ତୁ ଏଥର ମୋ ପାଖରେ ରହିପଢ଼ିବୁ।''

କିନ୍ତୁ ମୋ ରେଜଲ୍ଟ ଶୁଣି "ହଉ ଭଲ ହେଲା" ବୋଲି ମାତ୍ର ଦୁଇଟି ଶବ୍ଦ ସେ ଉଚ୍ଚାରଣ କରିଥିଲେ।

ମୁଁ ତାଙ୍କ ଆଶା ଛାଡିଲି। କଲେଜରେ ଏମ୍.ଏ. ପାଇଁ ଫର୍ମ ପୂରଣ କରି ଅପେକ୍ଷା କରୁଥାଏ। ସିଟ୍ ମିଳିଲା, ମୁଁ ନାଁ ଲେଖେଇ ସାରି ରହିବାପାଇଁ ଜାଗା ଖୋଜିଲି। ଅନେକ ପିଲା ହଷ୍ଟେଲରେ ରହିବାକୁ ଜାଗା ନ ପାଇଁ ସହରର ବିଭିନ୍ନ ସ୍ଥାନରେ ମେସ୍ କରି ରହୁଥାନ୍ତି। ମତେ ମଧ୍ୟ ସାଙ୍ଗ ମିଳିଗଲେ। ମୁଁ ମଙ୍ଗଳାବାଗର କାଠଗୋଲା ସାହିରେ ଆଉ ତିନିଜଣ ପିଲାଙ୍କ ସହ ମେସ୍ କରି ରହିବାକୁ ସ୍ଥିର କଲି।

ସବୁ ଶୁଣି ବାପା କହିଲେ "ଠିକ୍ ଅଛି, ଅନ୍ୟପିଲାଙ୍କ ସହ ମିଳିମିଶି ଚଳିବୁ। ପାଠ ପଢ଼ାରେ ମନ ଦେବୁ।" ମା କହିଲା "ମାସରେ ଅନ୍ତତଃ ଦିନଟିଏ ପାଇଁ ହେଲେ ଘରକୁ ଆସିବୁ। ଭାଇ ବସା ଆଡେ ମଝିରେ ମଝିରେ ଯାଇ ବୁଲି ଆସୁଥିବୁ।" ଏକଥା କହିବାବେଳେ ତା'ସ୍ୱର ଭାରିଭାରି ଜଣ ପଡୁଥିଲା।

ଭାଇ ଭାଉଜ ସେହି ସହରରରେ ରହୁଥିବା ବେଳେ ମୋର ବାହାରେ ମେସ୍‌ରେ ଯାଇ ରହିବା କଥାଟା ଆମ ଗାଁ ଲୋକଙ୍କୁ ପସନ୍ଦ ହେଉ ନଥିଲା। ଗାଁର ସ୍ତ୍ରୀ ଲୋକମାନେ ମୋ ମା'କୁ ବେଶ୍ ଦେଖେଇଶିଖେଇ କହୁଥିଲେ। "ପୋଷାପୁଅ ଗୁଣ୍ଡାରୁଅ"! 'ବଥ ସିନା ବଥେଇବ ଆବୁ କ'ଣ ବଥେଇ ବକି ?' ପ୍ରଭୃତି ମନ୍ତବ୍ୟମାନ ଦେବାରେ ସେମାନେ ଆଦୌ କାର୍ପଣ୍ୟ କରୁ ନଥିଲେ।

ତେବେ ଆମ କୁଟୁମ୍ବର ଜଣେ ଜେଜେ ମତେ ଥରେ କହିଥିଲେ, "ବୁଝିଲୁନା ଶିଶିର, ତୋ ଭାଇ ଭାଉଜ ଏମିତି କରଛଡା କାହିଁକି ଦେଉଛନ୍ତି ଜାଣିଛୁନା ? ତୋ ବାପା ତାର ସେ ପୋଷ୍ୟପୁଅ ସତ୍ୟାନନ୍ଦକୁ ବନାରସରେ ରଖି ପାଠ ପଢ଼ାଇବା ପାଇଁ ବହୁତ ଟଙ୍କା ଖର୍ଚ୍ଚ କରିଛି, କୋଉଠୁ ଆଣିଥାନ୍ତା ଏତେ ଟଙ୍କା! ଜମି ଖଣ୍ଡେଖଣ୍ଡେ କରି ବିକ୍ରି କରି ସେଇଥିରେ ଚଳାଇଲା। ବାବୁ ସେଠି ପାଠପଢା ନାଁରେ ରହିଲେ ସାତବର୍ଷ। ସେଥିପାଇଁ ଟଙ୍କା କୋଉଠୁ ଆସୁଥିଲା ଥରେ ପଚାରିଲା ନାହିଁତ। ଓଲଟା ଜମି ଆଉ ନାହିଁ ଜାଣିବା ପରେ ପୁଅବୋହୂ ମୁହଁ ବୁଲାଇ ଦେଇଛନ୍ତି।" ତାଙ୍କ ସ୍ୱରରେ ବିରକ୍ତି ବାରି ହୋଇ ପଡୁଥିଲା।

ଏସବୁ କଥାର ପ୍ରଭାବ ମୋ ଉପରେ ପଡି ନଥିଲା। କାରଣ ଭାଇଙ୍କ ବସାରେ ରହି ପାଠ ପଢ଼ିବା କଥାଟା ସେତେବେଳକୁ ମୋ ପାଇଁ ସଂପୂର୍ଣ୍ଣ ଗୁରୁତ୍ୱ ହରାଇ ସାରିଥିଲା।

ମୁଁ କଲେଜରେ ଜଏନ୍ କଲି। ମେସ୍‌ରେ ରହିବାର କିଛିଦିନ ପରେ ଗଲି ଭାଇଙ୍କ ବସାକୁ। ସେ ମୋର ଅନ୍ୟତ୍ର ରହିବା କଥା ଶୁଣି ଆଶ୍ୱସ୍ତ ଜଣା ପଡିଲେ। ଭାଉଜଙ୍କର କୌଣସି ପ୍ରତିକ୍ରିୟା ନଥିଲା। କଲେଜ ବାରଣ୍ଡାରେ ଭାଇ ଯାଉଥିବାର ଦେଖିଲେ ମୁଁ ଲୁଚିଯାଏ। କଲେଜର ଜଣେ ପ୍ରଫେସର ଯେ ମୋର ଭାଇ, ଏକଥା ମୋ ସାଙ୍ଗସାଥି ବା କେହି ଅଧ୍ୟାପକ ମଧ୍ୟ ଜାଣି ନଥିଲେ। ଭାଇ ମଧ୍ୟ କାହାକୁ ମୋ ବିଷୟରେ କହିବା ଆବଶ୍ୟକ ମନେ କରି ନଥିଲେ।

ମୋ ପିଲାବେଳର ଆଠଟି ବର୍ଷ ତାଙ୍କ ସହିତ କଟିଥିଲା। ସେ ମୋ ସହିତ କ'ଣ କେମିତି ବ୍ୟବହାର କରୁଥିଲେ ମୋର ମନେ ପଡେନି। କିନ୍ତୁ ବାପା ମାଙ୍କ ପାଖରୁ ତାଙ୍କ ବଡପୁଅ କଥା ସବୁବେଳେ ଶୁଣିଶୁଣି ମୁଁ ତାଙ୍କୁ ବହୁତ ଭଲ ପାଉଥିଲି। ସମ୍ମାନ କରୁଥିଲି ଢେର ବେଶି। କିନ୍ତୁ ତାଙ୍କର ମୋ ପ୍ରତି ବୀତସ୍ପୃହ ହେବା ଓ ଭାଉଜଙ୍କର ଏକ ପ୍ରକାର ଉପେକ୍ଷା ଭାବ ସେମାନଙ୍କଠାରୁ ମତେ ଦୂରେଇ ରଖୁଥିଲା।

କିନ୍ତୁ ପ୍ରତିଥର ଗାଁକୁ ଗଲେ ମା ଭାଇଙ୍କ ଘର ପାଇଁ ସଜାଡୁଥିବା ପିଠାପଣା ଓ ପରିବାପତ୍ରର ବୋଝ ମତେ ହିଁ ଆଣି ତାଙ୍କ ଘରେ ଦେବାକୁ ପଡୁଥିଲା। ସେଇ ପଦେଅଧେ କଥାବାର୍ତ୍ତା ପରେ ମୁଁ ମେସ୍‌କୁ ଫେରି ଆସୁଥିଲି। ତାଙ୍କ ପାଖରେ ନ ରହିଲି ନାହିଁ, ତଥାପି ମତେ ତାଙ୍କ ଘରକୁ ବେଳେବେଳେ ଖାଇବାକୁ ଡାକିବେ ବୋଲି ଆଶା କରୁଥିଲି। ତା'ମଧ୍ୟ ହେଲା ନାହିଁ। ସେ କଥା ଭାବିବା ମଧ୍ୟ ମୁଁ ଭୁଲିଗଲି। ମେସ୍‌ରେ ଅନ୍ୟ ବନ୍ଧୁମାନଙ୍କ ସହିତ ବେଶ୍ ଭଲରେ ଚଳୁଥିଲି।

ଭାଇଙ୍କର ଜନ୍ମଦିନ କଥା ମା ମତେ ଏଥର ଗାଁକୁ ଗଲା ବେଳେ ମନେ ପକାଇ ଦେଇଥିଲା। ମୁଁ ଭାଇଙ୍କ ଜନ୍ମଦିନରେ ପ୍ରଥମକରି ତାଙ୍କ ପାଖକୁ ଫୁଲ ତୋଡା ଓ ମିଠା ନେଇ ଯିବାପାଇଁ ମନେ ମନେ ଯୋଜନା କରିଥାଏ। କାରଣ ଏଠି କାହା ଜନ୍ମ ଦିନ ହେଲେ ଅନ୍ୟମାନେ ସେପରି କରୁଥିବାର ମୁଁ ଦେଖିଥାଏ।

ତା'ଛଡା ଭାଇଙ୍କ ପାଖକୁ ମଝିରେ ମଝିରେ ଯିବାପାଇଁ ମୁଁ ମଧ୍ୟ ବାହାନା ଖୋଜୁଥାଏ। ସେ ବାହାରକୁ ମୋ ପ୍ରତି ଯେତେ ଉଦାସୀନ ଜଣା ପଡିଲେବି ମତେ ଲାଗେ ସେ ମତେ ଭଲ ପାଆନ୍ତି।

ମୋର ସେଇ ଧାରଣାକୁ ନେଇ ମୁଁ ବିଛଣାରୁ ଉଠିପଡି କାମଦାମ ସାରି ବାହାର ପଡିଲି। ବାଟରୁ ଫୁଲତୋଡାଟିଏ କିଣି ତାକୁ କାଗଜରେ ଗୁଡାଇ ଦେଇଥାଏ ଯେମିତି

କାହାରିକୁ ଜଣା ପଡିବନି। ମିଠା ପ୍ୟାକେଟକୁ ସାଇକେଲରେ ଝୁଲୁଥିବା ବ୍ୟାଗରେ ପୂରାଇ ଭାଇଙ୍କ ଘରେ ପହଞ୍ଚିବା ବେଳକୁ ଦିନ ବାରଟା ବାଜିଗଲା।

ମତେ ଦେଖି ଭାଇ ବହୁତ ଖୁସି ହୋଇଗଲେ। ଭାଉଜଙ୍କ ଉଦ୍ଦେଶ୍ୟରେ ପାଟିକରି କହିଲେ, "ଶୁଣୁଛ, କିଏ ଆସିଛି ଦେଖିଲଣି। କାଲିକା ପିଲା, ସେ ପୁଣି ମୋ ପାଇଁ ମିଠା ଫୁଲତୋଡା ନେଇ ଆସିଛି।''

ଭାଉଜ ଭିତରୁ ଆସିଲେ। ମୁଁ ନମସ୍କାର କଲି। ମତେ ଦେଖି ଖୁସି ହେବାତ ଦୂରର କଥା ସେ କେମିତି ଗୋଟେ ସ୍ୱରରେ କହିଲେ, "ଆଜି ଗ୍ରହଣ ଲାଗୁଛି ବୋଲି ଜାଣିନକି ?"

ମୁଁ ଜାଣିଥିଲି ଆଜି ସୂର୍ଯ୍ୟଗ୍ରହଣ ବୋଲି କଲେଜ ଛୁଟି ଅଛି। ତେଣୁ ମୁଣ୍ଡ ହଲାଇ 'ହଁ'କଲି।

ତା'ପରେ ସେ କହିଲେ, "ଆଜି ସଂକ୍ରାନ୍ତି ଅମାବାସ୍ୟାରେ ଗ୍ରହଣ ଲାଗିଛି। ପାକଛାଡ ହେଲାଣି ସକାଳ ପହରୁ।"

ମୁଁ ବୁଝି ପାରୁ ନଥିଲି ସେ ଏସବୁ କଥା କାହିଁକି କହୁଛନ୍ତି। ଭାଇ ବୋଧହୁଏ ତାଙ୍କର ଏସବୁ କଥା କହିବାର ଉଦ୍ଦେଶ୍ୟ ବୁଝି ଯାଇଥିଲେ। ସେ ଟିକେ ବ୍ୟସ୍ତ ହୋଇପଡି କହିଲେ, "ଘରେ କ'ଣ କିଛି ଖାଇବାକୁ ନାହିଁ। ଦ୍ୱିପହରଟାରେ ଆସିଛି ଖାଇବ କୋଉଠି ?"

ଭାଉଜଙ୍କର କଥାଟା ଏବେ ପୁରା ସ୍ପଷ୍ଟ ହୋଇଗଲା। ସେ ଟିକେ ରୁକ୍ଷ ସ୍ୱରରେ କହିଲେ, "ଆଜି ପରା ମୁଁ କିଛି ରୋଷେଇ କରିନି। ଚୁଡା କଦଳୀଚକଟା ଖାଇବାକୁ ପଡିବ। ଗ୍ରହଣ ଛାଡିଲେ ଯାଇ ଯୋଉ କଥା।"

ମୁଁ ସେହିକ୍ଷଣି କହିଲି, "ନାଁ ନାଁ ମୋ ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ। ଆମର ମେସ୍‌ରେ ରନ୍ଧା ହେଉଛି ମୁଁ ଗଲେ ଖାଇବି। ମୁଁ ଏମିତି ଭାଇଙ୍କୁ ତାଙ୍କ ଜନ୍ମ ଦିନରେ ଟିକେ ଦେଖା କରିବାକୁ ଆସିଥିଲି।"

ମୁଁ ପରିବେଶକୁ ସହଜ କରିବାକୁ ଯାଇ କହିଲି, "କାହିଁ ବବ୍‌ଲୁକୁ ତ ଦେଖୁନି, ନାହିଁ କି ଘରେ ?"

ଭାଉଜ ଉତ୍ତର ଦେଲେ, "ନାଇଁ ମ ଆଜି ଘରେ ରନ୍ଧା ହୋଇନି ତ, ଏଇ ପାଖରେ ଥିବା ତା'ସାଙ୍ଗ ତାକୁ ଆଜି ତାଙ୍କ ଘରକୁ ଖାଇବାକୁ ଡାକି ନେଇଛି ?"

ଆମ ଭିତରୁ ଆଉ କେହି କିଛି କହିବା ପୂର୍ବରୁ ଦାଣ୍ଡଗେଟ୍ ଖଡଖଡ ହେବା ଶୁଣି ଭାଉଜ ଆଗ ବାହାରକୁ ଉହୁଁକି ଚାହିଁଲେ ଓ ସେହିକ୍ଷଣି ମୁହଁକୁ ଛିଞ୍ଚାଡି କହିଲେ, "ଦେଖମ

ଏ ଚନ୍ଦୁ ନନାଙ୍କୁ, ଭଲ କରି ଜାଣିଛି ଆଜି ଘରେ ସଂକ୍ରାନ୍ତି ହୋମ ହେବନାହିଁ, ତଥାପି ଆସିଲାଣି। ବୁଝିଲ ଏ ବ୍ରାହ୍ମଣ ଭାରି ଲୋଭୀ। ଗ୍ରହଣ ବେଳେ ଦାନ ଦେଲେ ବହୁତ ପୁଣ୍ୟ ହେବ ବୋଲି କହି ଏହିକ୍ଷଣି କିଛି ଟଙ୍କା ଖସାଇ ନେବ। ଦେଖ, ସେ ମାଗିଲେ ତାକୁ ପାଂଚ ଟଙ୍କାରୁ ପଇସାଏ ଅଧିକା ଦେବନି। ମୁଁ ଭିତରକୁ ଯାଉଛି। ମତେ ଦେଖିଲେ ବେଶି ଗୋଡ ଲମ୍ବାଇବ। ଶୀଘ୍ର ତାକୁ ବିଦା କରିବ ବୁଝିଲ।" ଭାଉଜ ଏତକ କହି ଘର ଭିତରକୁ ଚାଲିଗଲେ।

ମତେ ଲାଗିଲା ଶେଷ ବାକ୍ୟଟା ଯେପରି ମୋ ଉଦ୍ଦେଶ୍ୟରେ କୁହାଗଲା। ମୁଁ ଯିବାକୁ ବାହାରୁଛି, ଭିତରକୁ ପଶି ଆସିଲେ ଧଳା ଧୋତିପିନ୍ଧା କାନ୍ଧରେ ନାଲି ଗାମୁଛାଟାଏ ପକାଇଥିବା ଜଣେ ମଧ ବୟସ୍କ ବ୍ରାହ୍ମଣ ଲୋକ। ମୁଁ ବୁଝିଗଲି ଏଇ ହେଉଛନ୍ତି ଚନ୍ଦୁ ନନା। ଯିଏ କି ଭାଇଙ୍କ ଘରେ ପ୍ରତିମାସରେ ସଂକ୍ରାନ୍ତି ହୋମ କରନ୍ତି। ଗ୍ରହଣରେ ହୋମ କରିବା ବାରଣ ଥିବାରୁ ଆଜି ତାଙ୍କର ଉପସ୍ଥିତି ଏମାନଙ୍କୁ ଅବାଂଛିତ ମନେ ହେଉଛି।

ଭାଇ ତାଙ୍କୁ ନମସ୍କାର କରି ବସିବାକୁ କହିଲେ। ମୁଁ ମଧ ତାଙ୍କୁ ନମସ୍କାର କରିବାରୁ ସେ ଆଶୀର୍ବାଦ କରୁକରୁ ପଚାରିଲେ "ଏ ବାବୁ ଜଣକ କିଏ ?"

ଭାଇ କହିଲେ, "ଇଏ ମୋ ସାନଭାଇ।"

ଚନ୍ଦୁନନା ଟିକେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ। ମୁଁ ସେ ଦୃଷ୍ଟିର ରହସ୍ୟ ବୁଝି ପାରିଲି। କାରଣ ଭାଇଙ୍କର ବର୍ଣ୍ଣ ଖୁଡୀଙ୍କର ରଙ୍ଗପରି ତୋଫା ଗୋରା ଓ ମୁଁ ମୋ ମା'ପରି ବେଶ୍ କଳା। ତାଙ୍କର ମଧମ ଧରଣର ଉଚ୍ଚତା, ହୃଷ୍ଟପୁଷ୍ଟ ସୁନ୍ଦର ଚେହେରା। ଆଉ ମୋର ନହନହକିଆ ପତଳା ଡେଙ୍ଗାଗଢ଼ଣ। ଆମ ଦୁହିଁଙ୍କ ଭିତରେ ଚେହେରାଗତ ସାମ୍ୟ ଟିକିଏ ବି ନଥିଲା। ତା'ଛଡା ବୟସଗତ ପାର୍ଥକ୍ୟବି ବେଶ୍ ଜଣା ପଡୁଥିବ। ତେଣୁ ନ ଜାଣିବା ଲୋକପାଇଁ ଆମ ସଂପର୍କ କଥା ଭାବିବାର ଆଦୌ ସମ୍ଭାବନା ନଥିଲା।

ବୋଧହୁଏ ସେଇଥିପାଇଁ ଚନ୍ଦୁନନା ପୁଣି ପଚାରିଲେ "କ'ଣ ଆପଣଙ୍କର ନିଜ ଭାଇ ! ଏ ବାବୁଙ୍କୁତ ଆଗରୁ କେବେ ଏ ଘରେ ଦେଖିନି।"

ଭାଇ ତାଙ୍କ କଥାର ଉତ୍ତର ନଦେଇ କହିଲେ "କ'ଣ ନନା ଆଜି ତ ସଂକ୍ରାନ୍ତି ହୋମ ହେବନି, କୁଆଡେ ଚାଲି ଆସିଲ କି ?"

ଚନ୍ଦୁନନା ଏକ ଅମାୟିକ ହସ ହସି କହିଲେ "ବୁଝିଲେ ସତ୍ୟାନନ୍ଦ ବାବୁ ଆଜି ଗୋଟେ ବିଶେଷ ଦିନ। ଆଜି ସୋମବତୀ ଅମାବାସ୍ୟା, ସଂକ୍ରାନ୍ତି ଓ ସୂର୍ଯ୍ୟ ଗ୍ରହଣ ଏକା ସାଙ୍ଗରେ ପଡିଛି।"

"ସୋମବତୀ ଅବାବାସ୍ୟା କ'ଣ ?" ସେଇ ଗୋଟିକ ଶବ୍ଦର ଅର୍ଥ ନବୁଝିପାରି ମୁଁ ପଚାରିଦେଲି।

ଚନ୍ଦ୍ରନନା ହସି ହସି କହିଲେ, "ସୋମବାର ଦିନ ଅମାବାସ୍ୟା ପଡିଲେ ତାକୁ ସୋମବତୀ ଅମାବାସ୍ୟା କୁହନ୍ତି। ଏମିତିରେ ଏ ଦିନଟିତ ଖୁବ୍ ଫଳପ୍ରଦ। ସେଥିରେ ଯଦି ସଂକ୍ରାନ୍ତି ପଡି ସୂର୍ଯ୍ୟ ଗ୍ରହଣ ଯୁକ୍ତ ହୁଏ ତାହା କେତେକଙ୍କ ପାଇଁ ବିଭିନ୍ନ କାରଣରୁ ବହୁତ ଲାଭ ଦାୟକ ହୁଏ। ଏମିତି ଦିନ ଭାଗ୍ୟରେ ଥିଲେ ମିଳେ।"

ଭାଇ ଆଉ କଥା ନବଢ଼ାଇ ତାଙ୍କୁ ବିଦା କରିବା ଉଦ୍ଦେଶ୍ୟରେ ଘର ଭିତରକୁ ସତର୍କ ଦୃଷ୍ଟି ପହଁରାଇ ନେଇ ପକେଟରୁ ପଚାଶ ଟଙ୍କିଆ ନୋଟ୍‌ଟେ କାଢ଼ି ଚନ୍ଦ୍ରନନାଙ୍କ ଆଡକୁ ବଢ଼ାଇ ଦେଲେ। ନାନା ଟିକେ ପଛକୁ ଘୁଂଚିଯାଇ କହିଲେ, "ନାଇଁ ଆଜ୍ଞା, ଆପଣଙ୍କଠାରୁ ବିନା କାରଣରେ ଟଙ୍କା କାହିଁକି ନେବି ! ତା'ଛଡା ଆଜିପରା ଦିନରେ ଆଦୌ ନୁହେଁ। ଏଇ କଜେଲ ଛକରେ ଆସି-ଦୁଇ ତିନିଜଣ ସାଧକ ପହଞ୍ଚିବେ, ଆମେ ସାଙ୍ଗହୋଇ ବାହାରିବୁ। ମୁଁ ଟିକେ ଶୀଘ୍ର ଆସି ଯାଇଥିବାରୁ ଭାବିଲି ସଂକ୍ରନ୍ତି ହୋମ ନହେଲା ନାହିଁ ବାବୁଙ୍କ ଘରଆଡୁ ଟିକେ ବୁଲିଆସେ। ସେମାନଙ୍କର ତ ଆସିବାକୁ ଟିକେ ଡେରି ହେଉଛି।"

ତାଙ୍କ କଥା ଭିତରୁ ମୁଁ ସାଧକ ଶବ୍ଦ ପାଖରେ ଅଟକି ଯାଇଥାଏ। ପଚାରିବି କି ନାହିଁ ଭାବୁଭାବୁ ପଚାରିଦେଲି "ଆଛା ନନା, ଏଇ ଯେ ସାଧକମାନଙ୍କ କଥା କହିଲେ, ସେମାନେ ସବୁ କିଏ, କୁଆଡେ ବାହାରିବ ?"

ଭାଇ ମତେ ଟିକେ କେମିତି ଚାହିଁଲେ। କଥାର ଚେର ଲମ୍ବାଇବାକୁ ସେ ଆଦୌ ଚାହୁଁ ନଥିଲେ। କିନ୍ତୁ ମୋର କୌତୂହଳ ଲକ୍ଷ୍ୟକରି ନନା କହିଲେ, "ନାଇଁମ ସେମିତି କେହି ବଡ ସାଧକ ନୁହନ୍ତି। ଏଇସବୁ ଛୋଟମୋଟ ଟୁଣୁକାଟୁଣୁକି କରନ୍ତି, ଝଡାଫୁଙ୍କା କରନ୍ତି।" ନନା ଆଉ ଅଧିକ କିଛି କହିବାକୁ ଚାହିଁଲେ ନାହିଁ।

ଚନ୍ଦ୍ରନନାଙ୍କ ସହିତ ମୋର ଏଇମାତ୍ର ପରିଚୟ ଘଟିଥିବାରୁ ମୁଁ ତାଙ୍କୁ ଅଧିକା କଛି ପଚାରିବା ଠିକ୍ ନୁହେଁ ଭାବି ଚୁପ୍ ରହିଲି। ତା'ଛଡା ଆମର ସେଠି ଅଧିକା ସମୟ ରହିବାଟା ଭାଇ ବୋଧେ ପସନ୍ଦ କରୁ ନଥିଲେ, ଏଣେ 'ଯାଅ' ବୋଲି ମଧ୍ୟ ସିଧା କହି ପାରୁନଥିଲେ।

ଏତିକିବେଳେ ଭାଉଜ ଭିତରୁ ଡାକିଲେ, "ଶୁଣୁଛ ତୁମ ଫୋନ୍ ଆସିଛି।" ଭାଇ ତରବର ହୋଇ ଘର ଭିତରକୁ ଚାଲିଗଲେ। ଅବଶ୍ୟ କୌଣସି ଫୋନ୍ ରିଙ୍ଗ ହେବା ମୁଁ

ଶୁଣିପାରି ନଥିଲି । କିନ୍ତୁ ଚନ୍ଦନନାଙ୍କର ମୋବାଇଲ ବାଜି ଉଠିଲା । ସେ ଯାହା କଥାହେଲେ ମୁଁ ସେଥିରୁ ଏତିକି ବୁଝିଲି ଯେ ସେ ଯେଉଁମାନଙ୍କୁ ଅପେକ୍ଷା କରୁଥିଲେ ସେମାନେ ଆସି ଗଲେଣି । ତେବେ ସେମାନଙ୍କୁ ଯେଉଁ ଲୋକ ବାଟ ଦେଖାଇ ନେବାକଥା ସେ ଏ ପର୍ଯ୍ୟନ୍ତ ଆସିନି ।

ନନା ସେମାନଙ୍କୁ ବ୍ୟସ୍ତ ନହେବା ପାଇଁ କହି ଯିବାକୁ ବାହାରିଲେ । ଭାଇ ଭିତରେ ଥିବାରୁ ସେ ଯାଉଛନ୍ତି ବୋଲି ଭାଇଙ୍କୁ କହି ଦେବାକୁ ମତେ କହି ବାହାରିବା ବେଳକୁ ମୁଁ ତାଙ୍କୁ ପଚାରି ଦେଲି "ନନା, ଆପଣମାନେ କୁଆଡେ ଯିବେ କି ? ବାଟ ଦେଖେଇବା ପାଇଁ ଲୋକ ଦରକାର ହେଉଛି ?"

ମୋର କୌତୂହଳ ଦେଖି ନନା ହସି ହସି କହିଲେ, "ସାନବାବୁ, ଇଏ କଟକ ସହର, ଏଠି ରହୁଥିବା ଲୋକଙ୍କୁ ଏ ସହରର ସବୁ ଗଳିକନ୍ଦି ଓ ଆଉ ଆଖପାଖ ଜାଗା ଯେତେ କାହାକୁ ଅଜଣା ନଥାଏ । କିନ୍ତୁ ଆମେ ଆଜି ଯେଉଁ ସବୁ ଜାଗାକୁ ଯିବାକଥା ଭାବୁଛୁ, ସେ ସବୁ ଜାଗା ସେଇ ଜଣକ କେବଳ ଦେଖିଛି ।"

"କୋଉ ଜାଗାକୁ ନନା ?" ମୁଁ ବୋଧହୁଏ ଅଧିକ ଉତ୍ସୁକ ହୋଇ ପଡିଥିଲି ।

"ଶୁଣବାବୁ ସେସବୁ  କଥାରେ ତୁମର ଆଗ୍ରହ ହେବନି । ତେବେ ଏତେ ପଚାରୁଛ ଯଦି ଶୁଣ । ଆଜି ଏଇ ସୋମବତୀ ଅମାବାସ୍ୟା ସଂକ୍ରାନ୍ତି ଦିନ ଯେଉଁ କିଛି ସମୟ ପାଇଁ ସୂର୍ଯ୍ୟଙ୍କୁ ଗ୍ରହଣ ଲାଗିବ, ସେଇ ସମୟରେ ଆମେ ଯାଇ କିଛି ଗଛଲତାକୁ ବରଣ କରିଆସିବୁ ।"

-ମାନେ ? ଗଛଲତାକୁ ବରଣ ! ଇଏ କି କଥା !

-ହଁ ବାବୁ କିଛି ଗଛ ଲତା, ଧରନ୍ତୁ ଧଳା ଅରଖ, ଧଳା ମନ୍ଦାର ଅଙ୍କରାନ୍ତି, ଭୂଇଁ ଅଁଳା ଓ କଳା ତୁଳସୀ ପ୍ରଭୃତି ଏମିତି କିଛି ଗଛବୃଛଙ୍କୁ ଏହି ସମୟରେ ଖୋଜିଥାଉ ।

-ଏଁ ଇଏ କି କଥା ? ଯେଉଁ ସବୁ ଗଛବୃଛଙ୍କ କଥା କହିଲେ, ଏ ସବୁ ତ ଯୋଉଠି ଖୋଜିଲେ ମିଳିବ । ତାକୁ ଖୋଜିବାକୁ ଯିବା କଣ ଦରକାର ?

-ନାଁ କଥା ତା'ନୁହେଁ । ଆପଣ ସାଧାରଣ ଭାବରେ ଯେଉଁସବୁ ଗଛ ନାଁ ଜାଣିଛନ୍ତି ସେତିକି କହିଲି । ଅନ୍ୟ ସବୁ ଆପଣ ଜାଣିନାହାନ୍ତି । ଯେଉଁ ସବୁ ଗଛର ନାଁ କହିଲି ସେ ସବୁ ସବୁଠି ମିଳିଲେବି ଆମେ ଯାହାକୁ ବରଣ କରିବୁ ସେସବୁ ନିର୍ଦ୍ଦିଷ୍ଟ ଜାଗାରେ ଥିବା ଦରକାର । ମନେକରନ୍ତୁ କଳା ତୁଳସୀ ଶ୍ମଶାନର ଦକ୍ଷିଣ ଦିଗରେ ଥିବ, ପୁଣି ତା' ଡାଳ କି ପତ୍ର କେହି ଛିଣ୍ଡାଇ ନଥିବେ । ଧଳା ଅରଖ ବହୁତ ପୁରୁଣା ହୋଇଥିବା ଦରକାର, ଏମିତି ସବୁ ।"...

ନନା ଆଉ ଅଧିକା କିଛି କହିବାକୁ ଚାହୁଁନଥିଲେ। ଭାଇ ଭିତରୁ ଆସୁ ନଥିବାରୁ ନନା ଏଥର ଯିବାକୁ ଉଠିଲେ। ମୁଁ ମଧ ତାଙ୍କ ସହ ଚାଲିଚାଲି ବାହାରକୁ ଆସିଲି। ମୁଁ ଜାଣେ ଅଯଥା କୌତୂହଳ ଦେଖାଇ ଅନ୍ୟକୁ ବ୍ୟସ୍ତ କରିବା ଠିକ୍ କଥା ନୁହେଁ। କିନ୍ତୁ ନନାଙ୍କ କଥାରେ ମୁଁ ଏତେ ପ୍ରଭାବିତ ହୋଇ ସାରିଥିଲି ଯେ ଘଟଣାଟା ନ ବୁଝି ପାରିଲେ ଯେମିତି ମୋର ଶାନ୍ତି ନାହିଁ।

ମୁଁ ଏଥର ଏକ ପ୍ରକାର ଜିଦ୍ କରି କହିଲି, "ନନା, ପ୍ଲିଜ୍, ମତେ ଖାଲି ଟିକେ ବୁଝାଇ କୁହନ୍ତୁ ନା ଏଇ ସବୁ ଗଛ ବୃଛଙ୍କୁ ବରଣ କରିବା କଥାଟା କ'ଣ ? କହିବାରେ କିଛି ବାରଣ ଅଛିକି ?"

ନନା ଏଥର ମୋ ପିଠି ଟିକେ ଥାପୁଡାଇ ଦେଇ କହିଲେ "ଦେଖୁଛି କଥାଟା ନ ଜାଣିଲେ ତମେ ମତେ ଆଉ ଛାଡିବନି। ଦେଖ କଥାରେ ବାରଣ ନାହିଁ, କିନ୍ତୁ ଏହା ଏକ ଗୋପନ ବିଦ୍ୟା। ମୁଁ ଖାଲି ତୁମ ଜାଣିବା ପାଇଁ କିଛି କହି ଦେଉଛି। ସୋମବତୀ ଅମାବାସ୍ୟା ସଂକ୍ରାନ୍ତି ଦିନରେ ସୂର୍ଯ୍ୟଗ୍ରହଣ ଲାଗିଥିବା ବେଳେ ପୃଥିବୀ ଉପରେ ପଡୁଥିବା କିରଣରୁ କେତେକ ନିର୍ଦ୍ଦିଷ୍ଟ ବୃକ୍ଷଲତା ତାଙ୍କ ଚେରରେ ଅଦ୍ଭୁତ ପ୍ରକାରର ଶକ୍ତି ସଂଗ୍ରହ କରିଥାନ୍ତି। ସେସବୁ ଔଷଧପତ୍ର ପାଇଁ ବ୍ୟବହାରରେ, ତନ୍ତ୍ର ସାଧନାରେ, ଭୂତ ପ୍ରେତ କବଳରୁ ରକ୍ଷା କରିବା ଓ ଗ୍ରହଦୋଷ ନାଶ କରିବାରେ ସହାୟତା କରେ। ସେ'କଥା ସେ ଦିଗରେ ସାଧନା କରୁଥିବା ଲୋକ ଜାଣେ। କିନ୍ତୁ ଗ୍ରହଣ ସମୟ ଭିତରେ ସେ ସବୁ ସଂଗ୍ରହ କରିବା ସମ୍ଭବ ନୁହେଁ। ତା'ଛଡା ସେଇ ସମୟରେ ତା'ର ଆବଶ୍ୟକତା ନ ଥାଇ ତାକୁ ନେଇ ଆସିଲେ ସେ କ'ଣ ରହିବ, ନଷ୍ଟ ହୋଇ ଯିବନା।"

ଆମେ ଦୁହେଁ ଚାଲିଚାଲି ହୋଇ ଯାଇ ଗେଟ୍ ପାଖରେ ପହଞ୍ଚିଗଲୁଣି। କିନ୍ତୁ ମୋ ପ୍ରଶ୍ନ ତ ସରିନି। ମୁଁ ତାଙ୍କୁ ନଛାଡେ। ପିଲାଦିନରୁ ମୋର ଏଇ ଝିଟିପିଟିଆ ସ୍ୱଭାବ ଲାଗି ମୁଁ ବହୁତ ଥର ଗାଳି ଖାଇଥିବି। ହେଲେ ମୋ ମନ ନ ବୁଝିବା ଯାଏ ମୁଁ ମୋ ପ୍ରଶ୍ନ ପଚରାରୁ ନିବୃତ୍ତ ହୁଏନି। ତେଣୁ ମୁଁ ତାଙ୍କ ପାଖକୁ ଲାଗିଯାଇ କିଛି ଗୋପନ ମନ୍ତ୍ରଣା କରିବା ପରି କହିଲି "ଆଚ୍ଛା ଚେର ସବୁକୁ ଠିକ୍ ରଖିବା ପାଇଁ କ'ଣ ତେବେ କରାଯିବ ?"

ନନା ଏଥର ହସି ହସି ଖୁବ୍ ସହଜ ଭାବରେ କହିଲେ, "ସେଇଥି ପାଇଁ ତ ବାହାରୁଛୁ। କଞ୍ଚାକ୍ଷୀର, ଅରୁଆ ଚାଉଳ, ଦୁବ-ବରକୋଳି ପତ୍ର ଆଉ ଅନ୍ୟ କିଛି ଜିନିଷ ଅଛି ସେସବୁ ନେଇ ଗଛଲତା ଥିବା ଜାଗାରେ ପହଁଞ୍ଚିବୁ। ତା'ମୂଳରେ ସେ ସବୁ ଅର୍ପଣ କରି ନିର୍ଦ୍ଦିଷ୍ଟ ମନ୍ତ୍ରପାଠ କରି ତାକୁ ବରଣ କରି ଯିଏ ଯାହାର ପ୍ରାର୍ଥନା କରି କହିବେ, "ହେ

ଗଛ ଦିଅଁ ମୋ ମାଗୁଣି ଘେନା କର। ତୁମକୁ ମନ୍ତ୍ରରେ, ଅର୍ଘ୍ୟରେ ସନ୍ତୁଷ୍ଟ କଲି। ଏଇ ବର୍ଷକ ଭିତରେ ଆବଶ୍ୟକ ପଡିବାବେଳେ ତୁମ ନିକଟରୁ ଯେଉଁ ଚେର ସବୁ ମାଗିକି ନେବି, ଆଜି ତୁମେ ଯେଉଁ ଶକ୍ତି ଲାଭ କରିଛ, ତାହା ସେ ବେଳରେ ମତେ ଯେପରି ପ୍ରାପ୍ତ ହୁଏ। ତେଣିକି ଯିଏ ତାକୁ ଔଷଧ ପାଇଁ କହିଥିବ ବା ଯିଏ ତନ୍ତ୍ର ସାଧନା ପାଇଁ ବରଣ କରିଥିବ ସେ କେବଳ ସେହି ଉଦ୍ଦେଶ୍ୟରେ ନେଇ ପାରିବ। ନହେଲେ ସେ ଫଳପ୍ରଦ ହେବନି।"

ମୁଁ ତାଙ୍କ କଥା ଶୁଣି କାବା ହୋଇ କହିଲି, "ଆଚ୍ଛା ନନା, ଆପଣ କ'ଣ ସତରେ ବିଶ୍ୱାସ କରୁଛନ୍ତି ଯେ ସେ ସବୁ ଗଛଲତା ଆପଣଙ୍କ କ'ଥା ବୁଝି ପାରିବେ ? ସତରେ ଯଦି କିଛି ପ୍ରାକୃତିକ ଧାରାରେ ତାଙ୍କ ଭିତରେ ଶକ୍ତି ସଂଚାରିତ ହୋଇଥାଏ ତାକୁ କଣ ସେମାନେ ସଚେତନ ଭାବରେ ସଂରକ୍ଷିତ କରି ପାରିବେ ! ତା'ଛଡା ବର୍ଷକ ଭିତରେ ତାକୁ ବରଣ କରିଥବା ବ୍ୟକ୍ତିକୁ କ'ଣ ସେ ଚିହ୍ନି ପାରିବେ, ପୁଣି କିଏ ଔଷଧ ପାଇଁ ମାଗିଥିଲା ବା କିଏ ଭୂତପ୍ରେତ ତଡ଼ିବାକୁ ମାଗିଥିଲା ମନେରଖି ସେହି ଅନୁସାରେ କାମ କରିବେ ?" ମୁଁ ତ ଏକଥାଟା କିଛି ବୁଝି ପାରୁନି।"

ନନା ଦେଖିଲେ ମୁଁ ବୋଧେ ଦୁଷ୍ଟ ଗ୍ରହ ରୂପେ ମହଣ୍ଣି ତାଙ୍କର ବାଟ ଓଗାଳୁଛି। ସେ ଗେଟ୍ ଖୋଲି ବାହାରକୁ ବାହାରି ଯାଉଯାଉ କହିଲେ "ଶୁଣ ବାବୁ ତୁମେ ବୁଝିଲେ କେତେ ନବୁଝିଲେ କେତେ ! ଗଛଲତା କେମିତି ଚିହ୍ନନ୍ତି, କେମିତି କାହାପାଇଁ ତାଙ୍କ ଚେରରେ ଶକ୍ତି ସଂଚୟ କରି ରଖନ୍ତି ମୁଁ କହି ପାରିବିନି। କିନ୍ତୁ ତାହାହିଁ ଘଟି ଆସୁଛି। ତା'କେମିତି ହେଉଛି, କିପରି ଏହା ସମ୍ଭବ ହେଉଛି ଏସବୁ କଥାକୁ ନେଇ ଆମ ମନରେ ଅଯଥା ପ୍ରଶ୍ନ ନାହିଁ କି କୌଣସି ସନ୍ଦେହ ନାହିଁ। କାରଣ ଆମେ ଜାଣୁ ଯୁଗଯୁଗ ଧରି ଏହା ହୋଇ ଆସୁଛି ଓ ହେବ। ଆଉ ଘଣ୍ଟାକ ପରେ ଗ୍ରହଣ ଆରମ୍ଭ ହେବ ମୁଁ ଚାଲିଲି।"

ନନା ଗେଟ୍ ବାହାରେ ଥିବା ତାଙ୍କ ବାଇକ୍ ଷ୍ଟାର୍ଟ କଲେ। ମୁଁ ତାଙ୍କ ପାଖକୁ ଦଉଡି ଯାଇ କହିଲି "ନନା ମୁଁ ତୁମ ସାଙ୍ଗରେ ଟିକେ ଯାଆନ୍ତି।"

ସେ ବାଇକ ଗଡେଇ ଆଗକୁ ଯିବା ପୂର୍ବରୁ ହସିଦେଇ କହିଲେ, "ଇଏ କ'ଣ କ୍ରିକେଟ୍ ଖେଳ ନା ସିନେମା ଦେଖା ଯେ ତୁମକୁ ସାଙ୍ଗରେ ନେଇଯିବି ! ଗଲେ ବି କ'ଣ ଦେଖିବ ତୁମେ ? ଜଣେ ଧଳା ଅରଖ ଗଛ ମୂଳେ କ୍ଷୀରଚାଉଳ ଦେଉଛି। ଏଥିରେ ବା ଦେଖିବାର କ'ଣ ଅଛି ! କିନ୍ତୁ ଯୋଉ ବିଶ୍ୱାସରେ ସେ ଉକ୍ତ କାର୍ଯ୍ୟଟି କରୁଛି, ଯେଉଁପରି ଭାବରେ ସୂକ୍ଷ୍ମ ସ୍ତରରେ ସେ ଗଛଲତା ସହିତ ସଂପର୍କ ସ୍ଥାପନ କରୁଛି ତା'ର ଚେରତ

ତୁମେ ପାଇବନି ନା। ହଉ ଆରମାସ ସଂକ୍ରାନ୍ତିରେ ଯଦି ଆସିବ କଥା ହେବା।"

ନନା ବାଇକ ଛୁଟାଇ ଚାଲିଗଲେ। ମୁଁ ମଧ୍ୟ ଭାଇଙ୍କୁ କହି ଆସିବା ପାଇଁ ପଛକୁ ଚାହିଁବା ବେଳକୁ ଭାଇ ପିଣ୍ଡାରେ ଠିଆ ହୋଇଛନ୍ତି। ମତେ ସାଇକେଲ ପାଖକୁ ଯାଉଥିବାର ଦେଖି କହିଲେ "ନନା କଣ ଚାଲି ଗଲେକି ? ଆଚ୍ଛା ତୁ ବି କଣ ବାହାରିଲୁଣି ?

ପଛରୁ ଭାଉଜଙ୍କର ସ୍ୱର ଶୁଣାଗଲା, "ଶିଶିରଙ୍କୁ କାହିଁକି ଅଟକାଉଛ। ସେ କ'ଣ ଚୁଡାଚକଟା ଖାଇବେ।"

ଭାଇ ନୀରବ ରହିଲେ। ମୁଁ ସାଇକେଲ ହତା ଭିତରୁ ନେଇ ଗେଟ ବାହାରକୁ ଆସିବା ବେଳେ ଭାଇ ମଧ୍ୟ ମୋ ପଛେ ପଛେ ଗେଟ୍ ଯାଏ ଚାଲି ଆସିଥିଲେ। ମୁଁ ତାଙ୍କୁ ନମସ୍କାର କରି ସାଇକେଲ୍‌ରେ ଚଢୁଛି ଠିକ୍ ପଛରେ ଗୋଟେ କାର୍ ରହିବାର ଶବ୍ଦ ଶୁଣି ପଛକୁ ଚାହିଁ ଦେଲି।

ମତେ ସମ୍ବୋଧନ କରି ଜଣେ କେହି କହିଲା, "ଆରେ ଶିଶିର ଯେ।"

କାର୍‌ର ଡୋର୍ ଖୋଲି ବାହାରକୁ ବାହାରି ଆସିଲେ ଭାଉଜଙ୍କର ସାନଭାଇ ସରୋଜ ଦାସ। ତାଙ୍କ ପରେପରେ ତାଙ୍କ ସ୍ତ୍ରୀ, ତାଙ୍କର ଦୁଇପିଲାଙ୍କ ସହ ବବ୍‌ଲୁ ମଧ୍ୟ ଗାଡିରୁ ବାହାରି ଆସିଲା । ପିଲାମାନେ ଖୋଲା ଗେଟ୍ ଦେଇ ଭିତରକୁ ଦଉଡି ପଳାଇଲେ। ସରୋଜ ଭାଇଙ୍କ ସ୍ତ୍ରୀଙ୍କ ହାତରେ ଥିଲା ଫୁଲତୋଡା ଓ ମିଠା ପ୍ୟାକେଟ୍। ସରୋଜ ଭାଇ ଓ ତାଙ୍କ ସ୍ତ୍ରୀ ମୋ ଭାଇଙ୍କୁ ଜନ୍ମ ଦିନର ଶୁଭେଚ୍ଛା ଜଣାଇଲେ। ମୋର ହଠାତ୍ ସେଠୁ ପଳାଇ ଯିବାଟା ଠିକ୍ ହେବନି ଭାବି ମୁଁ ସାଇକେଲଟା ଧରି ଟିକେ ଠିଆ ହୋଇ ଯିବାକୁ ବାଧ୍ୟ ହେଲି।

ସରୋଜ ଭାଇ ହସି ହସି କହିଲେ "ଅପା ବାରମ୍ବାର କହିଥିଲା ଶୀଘ୍ର ଆସିବାକୁ। ଗ୍ରହଣ ଲାଗିବା ପୂର୍ବରୁ ଭାଇଙ୍କ ଜନ୍ମଦିନ ଭୋଜିଟା ଯେମିତି ସରିଯାଏ। ଆମର ଆସୁଆସୁ ଟିକେ ଡେରି ହୋଇଗଲା। ଆଚ୍ଛା ଶିଶିର ତୁମେ କ'ଣ ଖାଇପିଇ ବାହାରିଲଣି ?"

ମୁଁ ଆସ୍ତେ କରି କହିଲି, "କ'ଣ ଚୁଡାଚକଟା ଭୋଜି !"

ସରୋଜ ଭାଇ ଶୁଣିପାରିଲେନି ଭିତରକୁ ଚାଲିଗଲେ। କିନ୍ତୁ ମୋ ଭାଇ ମୋର ସେ ଧୀର ପଦକ କଥା ଶୁଣି ପାରିଥିଲେ ନିଶ୍ଚୟ। କାରଣ ସେଇ ମୁହୂର୍ତ୍ତକ ଭିତରେ ତାଙ୍କର ଧପଧପ ଗୋରା ମୁହଁ ପୂରା କଳା ପଡି ଯାଇଥିଲା।

ମତେ ଲାଗିଲା ତାଙ୍କ ଜୀବନରେ ଏପରି ଗ୍ରହଣଟିଏ ସ୍ଥାୟୀ ହୋଇ ରହିଛି ଯେ ସେଥିରୁ ତାଙ୍କର ମୁକ୍ତି ନାହିଁ। ବିକଳ ଲାଗିଲା ତାଙ୍କୁ ଦେଖି।

ଆଉ ମୁହୂର୍ତ୍ତଟିଏ ଅପେକ୍ଷା ନକରି ମୁଁ ସାଇକେଲ୍ ଗଡାଇ ମେସ୍ ଦିଗରେ ଚାଲିଲି । ଭାଉଜଙ୍କର ମୋ ପ୍ରତି ଉପେକ୍ଷା, ଖାଇବା ଗଣ୍ଡାକ ପାଇଁ ମିଥ୍ୟାଚାର, ଚନ୍ଦ୍ରନନାଙ୍କ ପ୍ରତି ନୀଚ ଧାରଣା ଓ ଭାଇଙ୍କର କ୍ଳୀବ ନିରୁପାୟତା ପଭୃତି ମୋ ମନରେ ଆଦୌ କୌଣସି ଭାବାନ୍ତର ସୃଷ୍ଟି କରୁନଥିଲା ।

ବରଂ ମୁଁ ଗୋଟେ ଅଦ୍ଭୁତ ଭାବାବେଶରେ ସାଇକେଲ୍‌ରେ ବସି ଶୂନ୍ୟରେ ପହଁରିବା ପରି ଚାଲିଥାଏ । ରାସ୍ତାକଡରେ ଠାଏ ଠାଏ ଉଠିଥିବା ମୋର ନିତିଦେଖା ଅରଖ ଓ ଦୁଦୁରାର ଜଙ୍ଗଲି ବୁଦା ଗୁଡିକୁ ମୁଁ ଯେମିତି ପ୍ରଥମ କରି ଦେଖିବା ପରି ଅନୁଭବ କରୁଥାଏ । ଚନ୍ଦ୍ରନନାଙ୍କର ପ୍ରତିଟି କଥା ମୋ ଭିତରେ ଗୁଂଜରିତ ହେଉଥାଏ; କିନ୍ତୁ ଆଉ କୌଣସି ପ୍ରଶ୍ନବାଚୀ ସୃଷ୍ଟି କରୁନଥାଏ । ରାସ୍ତାକଡର ଲୋଡା ପଡୁ ନଥିବା ଧୂଳି ଧୂସରିତ କଣ୍ଟାବୁଦା ଓ ଜଙ୍ଗଲି ଲଟା ଭିତରେ ଅପୂର୍ବ କିଛି ଆବିଷ୍କାର କରି ପାରିବାର ବିସ୍ମୟ ଓ ପୁଲକରେ ମୋର ସମଗ୍ର ସତ୍ତା ଆଚ୍ଛନ୍ନ ହୋଇ ଯାଇଥାଏ । ପୂର୍ବରୁ କେବେ ଅନୁଭବ କରିନଥିବା ଏକ ସଜଳ କୃତଜ୍ଞତା ବୋଧରେ ମୋ ହୃଦୟ ବିଗଳିତ ହୋଇ ଯାଉଥିଲା ।



## ତାପସୀ

ଦୀର୍ଘ ପଚିଶ ବର୍ଷ ପରେ ଓଡ଼ିଶାର ବିଭିନ୍ନ କଲେଜମାନଙ୍କରେ କାମକରି ମୁଁ ଫେରିଆସିଲି ସେଇ ଶ୍ରୀମହିଳା କଲେଜକୁ ଯେଉଁଠି ମୋ ଅଧ୍ୟାପିକା ଜୀବନର ଆରମ୍ଭ ହୋଇଥିଲା । ମୋରି ପରି ଅନ୍ୟ କେତେଜଣ ମଧ୍ୟ ବାହୁଡ଼ି ଆସିଥିଲେ । କଲେଜର ଘରଦ୍ୱାର ବା ପରିବେଶରେ ବିଶେଷ କିଛି ପରିବର୍ତ୍ତନ ଜଣାପଡୁନଥିଲା । ବରଂ ମୋର ପ୍ରଥମ କାର୍ଯ୍ୟକାଳ ବେଳେ କଲେଜ ଅଫିସ ଆଗରେ ସବୁବେଳେ ବିଭିନ୍ନ ଋତୁର ଫୁଲରେ ମଣ୍ଡିହୋଇ ରହୁଥିବା ଉଦ୍ୟାନ ବି ଶୁଖିଲା ପଡ଼ିଥିଲା । କେତେଟା ଭଙ୍ଗାକୁଣ୍ଡ ଓ ପାଣି ଅଭାବରୁ ଜଳିଯାଇଥିବା କେତୋଟି ବୁଦା ଓ ଶୁଖିଲା ଘାସ ଖୁବ୍ ଦୟନୀୟ ଦିଶୁଥିଲା ।

ଅଳ୍ପସଂଖ୍ୟକ ଅଧ୍ୟାପିକା ଥିଲେ ମୋର ପରିଚିତା ଓ ଅନ୍ୟସବୁ ନୂଆମୁହଁ । ଅଫିସର କେତେଜଣ ଷ୍ଟାଫ ଅବସର ନେଇଯାଇଥିଲେ ବି ପୁରୁଣା ଲୋକ ଅନେକ ଥିଲେ । ଚାକିରି ଆରମ୍ଭ କାଳର ଖୁବ୍ ସୁନ୍ଦର ସ୍ମୃତିରେ ଜଡ଼ିତ ଏଇ କଲେଜ ମତେ ଖୁବ୍ ଭଲ ଲାଗିଲା । ଅନେକ ଦିନ ବାହାରେ ବୁଲିବା ପରେ ନିଜ ଘରକୁ ଫେରିଆସିବାର ଆନନ୍ଦ ଓ ଆଶ୍ୱସ୍ତିର ଅନୁଭବ ମୋର ହେଉଥିଲା ।

ମୁଁ କଲେଜରେ ଯୋଗଦେବାର କିଛିଦିନ ପରେ କ୍ଲାସ ବେଲ ବାଜିବା ମାତ୍ରେ ମୁଁ କମନ୍‌ରୁମରୁ ବାହାରି ରେଜିଷ୍ଟର ସବୁ ଥୁଆ ହୋଇଥିବା ଜାଗାରେ ପହଞ୍ଚିଲି । ସେଦିନ ସେ ଜାଗାରେ ନିଯୁକ୍ତି ପାଇଥିବା ପିଅନ ବଦଳରେ ଅନ୍ୟଜଣେ ଲେଡିପିଅନ ସେଠି ରେଜିଷ୍ଟର ସଜାଡ଼ି ରଖୁଥିଲା । ସେ ମତେ ନମସ୍କାର କରି ମୋ କ୍ଲାସର ନାମଡକା ଖାତାଟି ମତେ ବଢ଼ାଇ ଦେଇ ଅନ୍ୟମାନଙ୍କ ଖାତା ଖୋଜିବାରେ ଲାଗିଲା ।

ମୁଁ କ୍ଲାସ ଦିଗରେ ବାହାରି ଯିବାବେଳେ ମନେହେଲା ସେ ଲେଡିପିଅନର ଚେହେରା ଅନ୍ୟ କୌଣସି ପରିଚିତ ଚେହେରା ସହିତ ବେଶ୍ କିଛିଟା ମିଶୁଛି । କିନ୍ତୁ ସେ ପରିଚିତ ଚେହେରାଟି କାହାର ଭାବୁଭାବୁ ମୁଁ ମୋ କ୍ଲାସରୁମରେ ପହଞ୍ଚି ଯାଇଥିଲି । ତା'ପରେ ସେକଥା ମୁଁ ଭୁଲିଯାଇଥିଲି ।

ଦିନେ ମୁଁ ଓ ମନସ୍ତତ୍ତ୍ୱ ବିଭାଗର ଅଧ୍ୟାପିକା କନକଲତା ସିଂ ଏକାଠି କ୍ଲାସ ନେବାକୁ ଯାଉଛୁ ସେହି ଲେଡି ପିଅନଟି ସେଇ ବାଟଦେଇ ଆସୁଥିଲା । ସେ ଆମ ଦୁହିଁଙ୍କୁ ନମସ୍କାର କରି ଆଡ଼ ହୋଇଗଲା । ମୋର ପୁଣି ମନେପଡ଼ିଗଲା ସେ କଥା । ସେ ମତେ ଚିହ୍ନା ଚିହ୍ନା ଲାଗୁଥିଲା, ଅଥଚ କେମିତି ଚିହ୍ନା ମୁଁ ଜାଣିପାରୁନଥିଲି ।

ମୁଁ କନକକୁ ପଚାରିଲି, "ଆଚ୍ଛା କନକ ଏଇ ପିଅନଟିକୁ ଚିହ୍ନିଛକି ? ତା' ନାଁ କ'ଣ ଜାଣିଛ !"

"ହଁ ଜାଣିଛି । ତା' ନାଁ ତାପସୀ । ସିଏ ଏଇ କଲେଜରେ ଦିନେ ପାଠ ପଢୁଥିଲା । ତା'ର କଣ ସବୁ ପାରିବାରିକ ସମସ୍ୟା ଅଛି । ସେ ଏଇଠି ପିଅନ ଭାବରେ କେବେଠୁ ରହିଲାଣି ।"

କନକର କଥା ଶୁଣିବା ପରେ ମୁଁ ବୁଝିପାରିଲି ଯେ ସେ କାହିଁକି ମତେ ଚିହ୍ନା ଚିହ୍ନା ଲାଗୁଥିଲା। ତାପସୀ ନାମଟି ସହିତ ମୁଁ ଭଲଭାବରେ ପରିଚିତ ଓ ତା' ସମ୍ପର୍କରେ ସେ ସମୟର ସବୁକଥା ମୋର ସ୍ପଷ୍ଟ ଭାବରେ ମନେଅଛି । ମୋର ଯେତେବେଳେ ପ୍ରଥମ ପୋଷ୍ଟିଂ ଏଇ କଲେଜରେ ହୋଇଥିଲା ମୁଁ ସୁବିଧା ଦୃଷ୍ଟିରୁ କଲେଜର ପାଖାପାଖି ଅଞ୍ଚଳରେ ଘରଭଡ଼ା ନେଇ ରହିବାକୁ ଚାହୁଁଥିଲି । କିଛିଦିନ ଖୋଜାଖୋଜି ପରେ କଲେଜଠାରୁ ବେଶ୍ ପାଖରେ ଥିବା ସାହିରେ ଘରଟିଏ ମିଳି ଯାଇଥିଲା । ମୁଁ ଏକା ରହୁଥିବାରୁ ପାଖ ପଡୋଶୀଙ୍କ ସହିତ ପ୍ରଥମେ ନିଜର ପରିଚୟ ଦେଇ ଚିହ୍ନାଜଣା ହୋଇଗଲି । ସ୍ଥାନୀୟ ମହିଳା କଲେଜରେ ଅଧ୍ୟାପିକା ଅଛି ଜାଣି ସେମାନେ ମଧ୍ୟ ମତେ ଖୁବ୍ ଶ୍ରଦ୍ଧା ଦେଖାଇଥିଲେ ।

ବିଶେଷକରି ମୋ ଘରର ଠିକ୍ ସାମନାରେ ରହୁଥିବା ଗଣେଶ ପାତ୍ରଙ୍କର ପରିବାର ସହ ମୋର ଆତ୍ମୀୟତା ବଢ଼ିଥିଲା । କାରଣ ତାଙ୍କର ଥିଲେ ତିନୋଟି ଝିଅ । ପ୍ରଥମ ଝିଅର ନାମ ଥିଲା ତାପସୀ । ସେ ପଢୁଥିଲା ସ୍କୁଲରେ ଦଶମ ଶ୍ରେଣୀରେ । ସେ ସବୁବେଳେ ମୋ ପାଖକୁ ଆସେ । କଲେଜ ବ୍ୟତୀତ ବାହାରକୁ କୁଆଡ଼େ ଗଲେ ମୁଁ ତାକୁ ସାଙ୍ଗରେ ନେଇଯାଏ । ସେ ପ୍ରାୟ ମୋର ସାଙ୍ଗ ହୋଇଯାଇଥିଲା । ଅନେକ ସମୟରେ ତାଙ୍କ ଘରୁ ତରକାରିପତ୍ର ସେ ମୋ ପାଇଁ ନେଇଆସେ । ମୁଁ ଖାଲି ଭାତଟା ଯାହା ମୋ ପାଇଁ କରେ । ମୁଁ ତାଙ୍କ ଘରକୁ ରାନ୍ଧିକରି ତ କିଛି ଦେଇପାରେନି କିନ୍ତୁ ବଜାରରୁ ମିଠା ଫଳ ପ୍ରଭୃତି କିଣି ପଠାଇଦିଏ । ଏଇ ପ୍ରକାର ଦେବାନେବା ଆମ ଭିତରେ ବେଶ୍ ଗୋଟେ ସହଜ ସମ୍ପର୍କ ଗଢ଼ି ଦେଇଥିଲା ।

ତାପସୀର ଡାକ ନାମ ଥିଲା ଚୁଲ୍‌ବୁଲି । ସତକୁ ସତ ସେ ଥିଲା ଖୁବ୍ ଚଞ୍ଚଳ । କେତେବେଳେ ସେ ମୋ ଘରକୁ ଆସେ କେତେବେଳେ ତା' ଘରେ ଯାଇ ଉଠେ ମୁଁ ବୁଝିପାରେନି । ଦିନରାତି ଭିତରେ ଦଶବାର ଥର ସେ ମୋ ଘରକୁ ଆସୁଥାଏ ଯାଉଥାଏ । ସବୁବେଳେ ହସ ଖୁସିରେ ଫାଟି ପଡୁଥାଏ ସେ । ସାନ ଭଉଣୀମାନଙ୍କ ସାଙ୍ଗରେ ତା'ର ସବୁବେଳେ କଳିଗୋଳ ଲାଗିଥାଏ ।

ତା' କାରବାର ଦେଖି ଦିନେ ମୁଁ ତା' ମା'ଙ୍କୁ କହିଲି, "ଆଚ୍ଛା ମାଉସୀ, ତୁମର ଏ ଗେହ୍ଲି ଝିଅର ଡାକ ନାଁ ଚୁଲ୍‌ବୁଲି ଠିକ୍ ଅଛି, ତା'ର ତାପସୀ ନାମ କିଏ ଦେଲା ?"

ତା' ମା କହିଲେ, "ଜାଣିଛ ଅସୀମା ଏ ଝିଅର ପିଲାଦିନେ ସ୍ୱଭାବ ପୂରା ଭିନ୍ନ ଥିଲା । ସିଏ ଯେତେବେଳେ ଛୋଟ ଥିଲା ଜମାରୁ ଦୁଷ୍ଟ ହୁଏନି । ଗୋଟିଏ ଜାଗାରେ ଘଣ୍ଟା ଘଣ୍ଟା ଧରି ଚୁପ୍ ହୋଇ ବସିରହେ । ତାର ଉଦାସ ଗମ୍ଭୀର ମୁହଁକୁ ଦେଖିଲେ କେହି ବିଶ୍ୱାସ କରିପାରିବନି ଯେ ତା'କୁ ମାତ୍ର ତିନି କି ଚାରିବର୍ଷ । ସେଥିପାଇଁ ମୋ ଶାଶୂ ତା' ନାମ ଦେଇଥିଲେ ତାପସୀ । ସେ ସବୁବେଳେ କହୁଥିଲେ "ବୁଝିଲୁ ବୋହୂ ଆମଘରେ ତପସ୍ୱିନୀଟିଏ ଜନ୍ମ ହୋଇଯାଇଛି । କିନ୍ତୁ ଦିନକୁ ଦିନ ତା' ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ତା' ଚଗଲାମି ଏତେ ବଢ଼ିଗଲା ଯେ ଆମେ ତା'ର ତାପସୀ ନାମ ଭୁଲିଯାଇ ଚୁଲ୍‌ବୁଲି ଡାକିଲୁ ।"

ମୁଁ ତାଙ୍କ କଥା ଶୁଣି ହସିଥିଲି । ମଣିଷ ଚରିତ୍ରର ବା କୋଉ ଠିକଣା ! କେତେବେଳେ କ'ଣ ସବୁ ନିଜ ଭିତରେ ବଦଳିଯାଏ ତା'ବି ନିଜକୁ ଜଣାପଡ଼େନା ।

ତାପସୀ ମାଟ୍ରିକ ପାଶ୍ କରିବା ପରେ ଶ୍ରୀ କଲେଜରେ ନାମ ଲେଖେଇଲା । କିନ୍ତୁ କଲେଜକୁ ଆସିବା ପରେ ତାପସୀ ମୋ ସହିତ ଏତେ ଆଉ ମିଳାମିଶା କଲାନାହିଁ । ବିଶେଷକରି କଲେଜରେ ଯଦି ଦେଖାହୋଇ ଯାଉଥିଲା ତେବେ ସେ ସେଠୁ ବିଜୁଳି ପରି ଅନ୍ତର୍ଦ୍ଧାନ ହୋଇଯାଏ । ମୋ ଘରକୁ ଆସିବା ମଧ୍ୟ ତାର କମିଗଲା । ମୁଁ ସେକଥା ପଚାରିବାରୁ କହିଲା ତା ସାଙ୍ଗମାନେ କୁଆଡ଼େ ତାକୁ ନାନା କଥା କହୁଛନ୍ତି । କଲେଜର ଜଣେ ଅଧ୍ୟାପିକାଙ୍କ ସହ ତାର ଘନିଷ୍ଠତା ଜନିତ ସେ ବହୁପ୍ରକାର ସୁଯୋଗ ପାଇବ ବୋଲି ସେମାନେ ପରୋକ୍ଷରେ ତାକୁ ଜଣାଇ ଦେଉଛନ୍ତି । ତେଣୁ ସେ ମୋଠାରୁ ଯଥାସମ୍ଭବ ଦୂରତା ରକ୍ଷା କରୁଛି ।

ମୁଁ ତା' କଥାଶୁଣି ମନେ ମନେ ହସିଥିଲି । ମୁଁ ଜାଣେ କଲେଜରେ କୌଣସି ପିଲାପ୍ରତି ଜଣେ ଅଧ୍ୟାପିକାଙ୍କର ଟିକିଏ ଅଧିକ ଶ୍ରଦ୍ଧା ପ୍ରକାଶ ପାଇଗଲେ ଅନ୍ୟ ପିଲାମାନେ ତାକୁ ଈର୍ଷା କରିଥାନ୍ତି । ଭାବିଲି ଯେତିକି ଘରୋଇ ସମ୍ପର୍କ ଅଛି ସେତିକି ବରଂ ଠିକ୍ ରହୁ ।

ତାପସୀର ଆଇ.ଏ. ପରୀକ୍ଷାଫଳ ବାହାରିଲା । ଖୁବ୍ ଭଲ କରିଥିଲା ସିଏ । ବି.ଏ.ରେ କୋଉ ବିଷୟରେ ଅନର୍ସ ନେବ, କ'ଣ ପାସ୍ ରଖିବ ସେ ବିଷୟରେ ମୋ ସହିତ ଆଲୋଚନା କରୁଥିଲା । କିନ୍ତୁ ଠିକ୍ ନାମଲେଖା ପୂର୍ବଦିନ ଆସି ସେ ମତେ କାନ୍ଦି କାନ୍ଦି କହିଲା ଯେ ତା' ବାହାଘର ଠିକ୍ ହୋଇଯାଇଛି । ସେ ଆଉ ପାଠ ପଢ଼ିପାରିବନି ।

ମୁଁ ସେହିକ୍ଷଣି ତା' ଘରକୁ ଛୁଟି ଯାଇଥିଲି । ଖୁବ୍ ବ୍ୟସ୍ତହୋଇ ତା' ମାଙ୍କ ସାଙ୍ଗରେ ଏ ବିଷୟରେ କଥାହେଲି । ସେ କିନ୍ତୁ ଅବିଚଳିତ ଭାବରେ ଯାହା କହିଲେ ତା'ର ମର୍ମଥିଲା ତାପସୀ ତଳେ ଆହୁରି ଦୁଇଟି ଝିଅ ଅଛନ୍ତି । ତା' ବାପାଙ୍କର ଚାକିରିକାଳ ଭିତରେ ହିଁ ସେ ସେମାନଙ୍କୁ ବାହାଚୋରା କରି ତାଙ୍କର ଦାୟିତ୍ୱ ସାରିବେ । ତା'ଛଡ଼ା ତାପସୀ ପାଇଁ ଆସିଥିବା ପ୍ରସ୍ତାବ ଖୁବ୍ ଭଲ । ବରପାତ୍ର ସୁଧାକର ଜେନା ଓଡ଼ିଶା ସରକାରଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଜଣେ ଆସିଷ୍ଟାଣ୍ଟ ଇଂଜିନିୟର । ବିନା ଯୌତୁକରେ ସେମାନେ ତାପସୀକୁ ବୋହୂ କରିନେବାକୁ ପ୍ରସ୍ତୁତ ଥିବାରୁ ସେମାନେ ଏ ସୁଯୋଗ ହରାଇବାକୁ ଚାହାନ୍ତି ନାହିଁ ।

ମୁଁ ଦେଖିଲି ଏ ପରିସ୍ଥିତିରେ ମୋର ଆଉ ଅଧିକ କିଛି କହିବାର ନାହିଁ । ମୁଁ ଫେରିଆସିଥିଲି । ତାପସୀ ବାହାହୋଇଗଲା । ସେ କାନ୍ଦି କାନ୍ଦି ଘରୁ ବିଦାହୋଇ ଯାଇଥିଲା । ମତେ ଧରି ବି ବେଶ୍ କାନ୍ଦିଥିଲା । ମୁଁ ଭାବୁଥିଲି ସେ ତା' ଶାଶୂଘରେ ନିଶ୍ଚୟ ଖୁବ୍ ଦୁଃଖରେ ଥିବ ।

କିନ୍ତୁ ବାହାଘରର ମାତ୍ର କିଛିଦିନ ପରେ ତାପସୀ ଯେବେ ତା' ଘରକୁ ଆସିଲା ମୋ ସାଙ୍ଗରେ ଦେଖା କରିଥିଲା । ସେ ଖୁସିରେ ଉଚ୍ଛୁଳୁଥିଲା । ମତେ ପଦେ ଉପଦେଶ ଦେବାକୁ ଭୁଲିନଥିଲା ଯେ ମୋର ଶୀଘ୍ର ବାହାହୋଇ ଯିବା ଉଚିତ ହେବ ।

ମୁଁ ସେ ଘରେ ଅନ୍ୟତ୍ର ବଦଳି ହେବାଯାଏ ପ୍ରାୟ ଦୁଇବର୍ଷ ରହିଥିଲି । ତାପସୀକୁ ଅନେକଥର ତା' ଘରକୁ ଆସିବାର ଦେଖିଛି । ମତେ ବି ନିଶ୍ଚୟ ଦେଖା କରିଯାଏ । ମୋର ତାକୁ ଦେଖିଲେ ମନେହୁଏ ଯେ ସେ ଦିନକୁ ଦିନ ତାର ବିବାହ, ଘରସଂସାରକୁ ନେଇ ଏତେ ସନ୍ତୁଷ୍ଟ ହୋଇଗଲାଣି ଯେ ଘରୋଇ ଭାବରେ ପାଠପଢ଼ି ବି.ଏ. ପରୀକ୍ଷାଟା ଦେବାକୁ ବି ସେ ପ୍ରସ୍ତୁତ ନୁହେଁ ।

ମୋର ବଦଳି ହୋଇଗଲା ସମ୍ବଲପୁର । ସେଠି ରହିଗଲି ବହୁବର୍ଷ । ମୋର ମଧ୍ୟ ଘରସଂସାରର ଦାୟିତ୍ୱ ବଢ଼ିଯାଇଥିଲା । ଦୀର୍ଘ ପଚିଶବର୍ଷ ଭିତରେ ମୋର ଆଉ ତାପସୀ ବା ତା' ପରିବାରର କାହାସହିତ କୌଣସି ଯୋଗାଯୋଗ ରହିପାରିଲା ନାହିଁ । ଏଠାକୁ ଫେରିବା ପରେ ବି ମୋର ତା' କଥା ଆଦୌ ମନେ ପଡ଼ିନଥିଲା । ଆଜି ସେ ଲେଡି ପିଅନର ଚେହେରାରେ ତାପସୀର ଛାଇ ପଡ଼ିଥିବା ମନେକରି ମୋର ତା'କଥା ମନେ ପଡ଼ିଯାଇଥିଲା । କିନ୍ତୁ ସେ ଯେ ନିଜେ ତାପସୀ ଥିଲା ତାକୁ ଦେଖି ବି ମୁଁ ଜାଣି ପାରିନଥିଲି । କିନ୍ତୁ ସେ କଲେଜରେ ପିଅନ ହୋଇ ରହିଛି କାହିଁକି ? ସେ ତ ଭଲରେ ବାହାହୋଇ ଘରସଂସାର କରୁଥିଲା, ତା' ବାପାଙ୍କ ଅବସ୍ଥା ମଧ୍ୟ ମନ୍ଦ ନୁହେଁ, ତେବେ କ'ଣ ହୋଇଛି ତା'ର ! ମନଟା ବହୁତ ଗୋଳେଇ ପୋଳେଇ ହେଲା । ଭାବିଲି ତାପସୀକୁ ଡାକିକରି ପଚାରିବିକି ? କିନ୍ତୁ ଏତେ ବର୍ଷ ହେଲା ଆମ ଭିତରେ କୌଣସି ସମ୍ପର୍କ ରହିପାରିନି, ତେଣୁ ହଠାତ୍ ତାକୁ ଡାକି କିଛି ବ୍ୟକ୍ତିଗତ କଥା ପଚାରିବାଟା ଠିକ୍ ହେବନି । ତା'ଛଡ଼ା ମୁଁ ସିନା ତାକୁ ଚିହ୍ନି ପାରିଲିନି, ସେ ତ ମତେ ବେଶ୍ ଭଲରେ ଜାଣିଥିବ । ତଥାପି ମତେ ସେ ଦେଖାକରିବାକୁ ଆସିନାହିଁ ପୁଣି ଦେଖା ହୋଇଗଲେ ବାଟ ବଦଳାଇ ଚାଲିଯାଉଛି !

ମତେ ତାପସୀର ଚିନ୍ତା ଲାଗିରହିଲା । ମୋ ଚାକିରି ଜୀବନର ଆରମ୍ଭରେ ସେ ଚୁଲ୍‌ବୁଲି ଝିଅଟି ସହିତ କଟାଇଥିବା ସମୟ ମୋର ମନେପଡୁଥିଲା । ତା'ପାଇଁ ମୋ ବ୍ୟସ୍ତତାର ଆଉ ସୀମା ରହିଲାନି । ତା'ସହିତ କିପରି ଭେଟି କଥାହେବି ତାହାହିଁ ଭାବୁଥାଏ । କିନ୍ତୁ ସମସ୍ତଙ୍କ ସାମନାରେ ତାକୁ ଡାକି କିଛି ପଚାରିବା ଉଚିତ ହେବନି ବୋଲି ଜାଣି ଚୁପ୍ ରହିଲି ।

ସେଦିନ କଲେଜ ଛୁଟି ଥାଏ । ମୁଁ ଆସି କଲେଜରେ ପହଞ୍ଚିଲି । ସେତେବେଳକୁ ଘଣ୍ଟାରେ ବାରଟା ବାଜିଥାଏ । କିଏ କେଉଁଠି ନାହାନ୍ତି । ସବୁବେଳେ ପିଲାଙ୍କର କୋଳାହଳରେ ମୁଖରିତ ହେଉଥିବା କଲେଜର ପରିସର କେମିତି ଗୋଟେ ଖାଁ ଖାଁ ଲାଗୁଥାଏ ।

ହଠାତ୍ ମତେ କୋଉ କୋଣରୁ ଦେଖି ପକାଇ ଅଫିସ ପିଅନ ରବି ଦଉଡ଼ି ଆସି ପଚାରିଲା, "ମ୍ୟାଡାମ, ଆପଣ କେମିତି ? ଆଜି ତ କଲେଜ ଛୁଟି ଅଛି ।"

"ମୁଁ ଜାଣିଛି । ଆଚ୍ଛା ଏଇ କ୍ୟାମ୍ପସରେ ପିଅନମାନଙ୍କ ପାଇଁ ଥିବା କୋଉ କ୍ୱାର୍ଟରରେ ତାପସୀ ପରା ରହୁଛି ? କୋଉ ଘରଟା ତାର ?"

"ଆସନ୍ତୁ, ମୁଁ ଦେଖେଇ ଦଉଛି'' କହି ରବି ଆଗେ ଆଗେ ଚାଲିଲା । ମୁଁ ତା' ପଛେ ପଛେ ଯାଉଥାଏ । କଲେଜର ଶେଷଆଡ଼କୁ ପିଅନମାନଙ୍କର ଦୁଇ ବଖରିଆ ଲେଖେ ଧାଡ଼ିଏ ଘର ଥିଲା । ସେ ମତେ ତାପସୀ ରହୁଥିବା ଘର ଦିଗରେ ହାତ ବଢ଼ାଇ ଦେଖାଇଦେଇ ନିଜ କାମରେ ଚାଲିଗଲା ।

ମୁଁ ଯାଇ ତା' ଦ୍ୱାର ମୁହଁରେ ପହଞ୍ଚି ଡାକିଲି, 'ତାପସୀ' ।

ତାପସୀ ତରତର ହୋଇ ଘର ଭିତରୁ ବାହାରିଆସିଲା ସେ ପିନ୍ଧିଥିଲା ସାଦା କୁମ୍ଭପକା ଧଡ଼ିର ଶାଢ଼ିଟିଏ । ମୁଣ୍ଡ ଧୋଇଥିଲା କି କଣ ତା'ର କିଶୋରୀ ବୟସର ସେଇ ଦୀର୍ଘ ଗହବାବାଳ ସେମିତି ଥିଲା । ସେ ମତେ ଦେଖିପକାଇ ଥତମତ ହୋଇଯାଇ କହିଲା "ମ୍ୟାଡାମ୍ ଆପଣ ?"

"ମତେ ଭିତରକୁ ଡାକିବୁନା ନାହିଁ ?" ମୁଁ ତାକୁ ଟିକେ ଥଟ୍ଟା କରି କହିଲି ।

"ଆସନ୍ତୁ, ଆସନ୍ତୁ'' କହି ସେ ମତେ ଭିତରକୁ ଡାକିନେଲା ।

ଛୋଟ ବଖରାଟିଏ । ମୁହୂର୍ତ୍ତକ ଭିତରେ ମୁଁ ସବୁଆଡ଼େ ଆଖିବୁଲାଇ ନେଲି । ଖଟ ଉପରେ ସଫା ବିଛଣା ଚାଦର, ବସିବା ପାଇଁ ଭଲ ଗଦି ଥିବା ଦୁଇଟି ଚୌକି, ପାଖ ଟେବୁଲ ଉପରେ ଥାକ ଥାକ ବହି । ଲୁଗାପଟା ରଖିବାର ଛୋଟ ଆଲମିରାଟିଏ । କାନ୍ଥରେ ମରାଯାଇଥିବା କାଠର ଛୋଟ ଆସ୍ଥାନଟିଏ ଉପରେ ଶିବ ଠାକୁରଙ୍କର କାଚ ବନ୍ଧାଇ ବଡ଼ ଫଟୋଟିଏ । କିଛି ଫୁଲ ମଧ୍ୟ ଫଟ ତଳେ ଦିଆଯାଇଛି । ଆଉ କିଛି ଇଆଡୁ ସିଆଡୁ ଆସବାବପତ୍ର ନଥିଲା । ଛୋଟ ହେଲେ ବି ଖୁବ୍ ପରିଚ୍ଛନ୍ନ ଥିଲା ପରିବେଶ । ପିଣ୍ଡା କଡ଼କୁ ବୋଧେ ଥିଲା ତା'ର ଛୋଟ ରୋଷେଇ ଘରଟି ।

ମୁଁ ଚୌକୀରେ ବସିଲି । ଆମ ଭିତରେ କିଛି ସମୟର ନୀରବତା କଟିଯିବା ପରେ ପଚାରିଲି "ତାପସୀ, ଘଟଣା କ'ଣ ? ତୁ ଏଠି କିପରି ?''

- ମ୍ୟାଡାମ, ସେ ବହୁତ କଥା ।

- ଦେଖ୍ ତୁ ମତେ କିଛି କହ କି ନ କହ, ଅନ୍ତତଃ ମ୍ୟାଡାମ୍ ବୋଲି ଡାକନା । ଯାହା ଦିନେ ଡାକୁଥିଲୁ, ତାହା ହିଁ ଡାକ, ସୀମା ଅପା । ନହେଲେ ମୁଁ ଚାଲିଯାଉଛି ।

- ନାଁ ମ୍ୟାଡାମ, ଆପଣ କଲେଜର ଜଣେ ବରିଷ୍ଠ ଅଧ୍ୟାପିକା । ମୁଁ ଗୋଟେ ସାଧାରଣ ପିଅନ । ଆପଣଙ୍କୁ ଅପା ଡାକିବି, ତୁମେ ବୋଲି କହିବି ଯଦି ଲୋକଙ୍କୁ କ'ଣ ଭଲ ଲାଗିବ !

ମୁଁ ଏଥର ତାକୁ ସହଜ କରିଦେବାକୁ ଯାଇ ହସି ହସି କହିଲି, "ଆରେ ପାଗଳି, ସାମାଜିକ ପ୍ରତିଷ୍ଠା କ'ଣ ସମ୍ପର୍କକୁ ବଦଳାଇ ଦିଏ ? ମୁଁ ତତେ ସାନ ଭଉଣୀଟି ପରି ଦେଖୁଥିଲି । ଆଜି ବି ଦେଖୁଛି । ତେଣୁ ସେଇ ସମ୍ପର୍କକୁ ନେଇ ତୋ' ପାଖକୁ ଆଜି ଆସିଛି । ତୁ ଯଦି ସୀମା ଅପାକୁ ସ୍ୱୀକାର କରୁନାହୁଁ ତେବେ ମୁଁ ବା କୋଉ ପରିଚୟରେ ତୋ'ପାଖରେ ବସିବି ।''

ତା' ଆଖିରେ ଲୁହ ଛଳ ଛଳ ହୋଇଉଠିଲା । ସେ ତାକୁ ଲୁଚାଇବାକୁ ଯାଇ ମୋ ପାଇଁ ଚା' କରିବା ବାହାନାରେ ଉଠି ଯାଉଥିଲା । ମୁଁ ତାକୁ ଧରି ପକାଇ ଅଟକାଇ ଦେଇ କହିଲି, "ଆଉ ଦିନେ ତୋ' ଘରକୁ ଖାଇବାକୁ ଆସିବି । ଏବେ ତୁ ମୋ ପାଖରେ ବସ ।''

ତାପସୀ ତଳେ ବସି ପଡୁଥିଲା, ମୁଁ ତାକୁ ଟାଣିନେଇ ଖଟ ଉପରେ ବସାଇଲି ଓ ନିଜେ ବି ତା' ପାଖରେ ବସିଗଲି । ସେ ଅବିଚଳିତ ଭାବରେ ଯାହା କହିଲା, ତା'ଥିଲା ଆମ ସମାଜରେ ଘଟୁଥିବା ଏକ ସାଧାରଣ ଘଟଣାର ବିବରଣୀ । ବାହାଘରର କିଛିବର୍ଷ ତା'ର ଭଲରେ କଟିଯାଇଥିଲା । ତା'ପରେ ଆସିଲା ଏକ ଭିନ୍ନ ମୋଡ଼ । ଯୌତୁକ ନନେଇ ବାହାହୋଇ ଥିବାରୁ ତା' ବରଘର ଲୋକେ ଖୁବ୍ ଗର୍ବରେ ସମସ୍ତଙ୍କ ଆଗରେ କହୁଥିବା କଥାର ସ୍ୱର ବଦଳିଗଲା । ଯୌତୁକ ନନେଇ ସେମାନେ ତାପସୀକୁ ଦୟା କରିଥିବା ଓ ତିନି ତିନୋଟି କନ୍ୟା ଦାୟଗ୍ରସ୍ତ ବାପକୁ ଅନ୍ତତଃ ଗୋଟିଏ କନ୍ୟାର ଦାୟରୁ ମୁକ୍ତ କରିଛନ୍ତି ବୋଲି ତାକୁ ଶୁଣାଇ ଶୁଣାଇ କହିଲେ । ଘରେ ସମସ୍ତଙ୍କର ବ୍ୟବହାର ତା' ପ୍ରତି ବଦଳିବାକୁ ଲାଗିଲା । ଏପରିକି ତାକୁ ବହୁତ ଶ୍ରଦ୍ଧା କରୁଥିବା ଶ୍ୱଶୁର ମଧ୍ୟ ଆଉ ଆଡ଼ ଆଖିରେ ଚାହିଁଲେ ନାହିଁ ।

କିନ୍ତୁ ଏସବୁ ଘଟଣା ଯେ ଯୌତୁକ ନ ଆଣିବା କାରଣରୁ ଘଟୁନାହିଁ ସେକଥା ତାପସୀ ବୁଝିପାରିଥିଲା । ତେବେ ସ୍ୱାମୀର ତା' ପ୍ରତି ଦେଖାଯାଇଥିବା ଉଦାସୀନତା

କ୍ରମେ ତୀବ୍ର ଉପେକ୍ଷାରେ ପରିଣତ ହେବା ପଛରେ ସେଇ ଅନ୍ୟ କାରଣଟି କ'ଣ ହୋଇପାରେ ସେ ଜାଣିବାକୁ ଚେଷ୍ଟା କରିଥିଲା ଓ ସହଜରେ ଜାଣିଗଲା ଯେ ନିଜର ସ୍ୱାମୀକୁ ଛାଡ଼ି ଆସିଥିବା ଜଣେ ମହିଳା ସାଙ୍ଗରେ ତା' ସ୍ୱାମୀର ସମ୍ପର୍କ ଗଢ଼ିଉଠିଛି । ତେଣୁ ଏକଦା ତାର ପ୍ରାଣପ୍ରିୟା ଥିବା ପତ୍ନୀ ଓ ପୁତ୍ର ତାକୁ ବିଷପରି ବୋଧ ହେଉଛନ୍ତି । ଏକଥା ମଧ୍ୟ ସେ ବୁଝିପାରିଲା ଯେ ତା'ର ଶାଶୂଶ୍ୱଶୁର ମଧ୍ୟ ଅସହାୟ । କାରଣ ତାଙ୍କର ଏକମାତ୍ର ପୁତ୍ର ତାକୁ ସହଯୋଗ ନକଲେ ସେ ଯେ ଘରଛାଡ଼ି ଚାଲିଯିବ ଓ ତାଙ୍କ ଭଲ ମନ୍ଦରେ ଠିଆ ହେବନାହିଁ ବୋଲି ଦେଇଥିବା ଏକପ୍ରକାର ଧମକରେ ସେମାନେ ଭୟଭୀତ ହୋଇ ପଡ଼ିଛନ୍ତି । ତା'ଛଡ଼ା ପରଝିଅ ପାଇଁ ନିଜ ପୁଅକୁ ବା କିଏ ହରାଇବାକୁ ଚାହିଁବ ! ଏଣେ ପାଞ୍ଚବର୍ଷର ନାତିକୁ ଛାଡ଼ିବାକୁ ସେମାନଙ୍କୁ ବହୁତ କଷ୍ଟ ହେଉଥାଏ । କଣ କରିବେ, ଯେଉଁ ନୂଆବୋହୂ ଆସିବ ସେ ମୂଳରୁ ସ୍ପଷ୍ଟ କରିଦେଇଛି ଯେ ସେ ଘରେ ସେ ପହଞ୍ଚିବା ବେଳକୁ ସୁଧାକରଙ୍କର ପ୍ରଥମ ବିବାହର କୌଣସି ପରିଚୟ ସେଠି ଯେପରି ନ ରହେ ।

ଏଣିକି ତାପସୀକୁ ବହିଷ୍କାର କରିବାର ଯୋଜନା ଆରମ୍ଭ ହୋଇଗଲା । ଶାଶୂଶ୍ୱଶୁର ଖରାପ ଲୋକ ନଥିଲେ । ତାପସୀକୁ ଅଯଥା ଆକ୍ଷେପ କରୁଥିବା ବେଳେ ସେମାନଙ୍କର ସ୍ୱର ତାକୁ ଖୁବ୍ କରୁଣ ଶୁଣାଯାଏ । ସେମାନେ ସମସ୍ତେ ବୁଝି ସାରିଥିଲେ ଯେ ଏମିତି ଖାଲି ଗାଳି ଅପମାନ ଦେଲେ ତାପସୀର ବୋହୂ ଅଧିକାର କାଢ଼ିନେଇ ପାରିବେନି । କିନ୍ତୁ କୋଉ କାରଣରୁ ବା ତାକୁ ଡାଇଭୋର୍ସ କରାଯାଇପାରିବ । ତାହା ଆଦୌ ସମ୍ଭବ ନୁହେଁ । ସେମାନେ କ'ଣ କରିବେ ବୁଝିପାରୁନଥାନ୍ତି । ଏଣେ ପୁଅ ଅସମ୍ଭାଳ ।

ଦିନେ ବେଶ୍ ରାତିରେ ସୁଧାକର ସିଧାସଳଖ ସେ ସ୍ତ୍ରୀଲୋକକୁ ନେଇଆସି ଘରେ ପହଞ୍ଚିଗଲେ । ଶୋଇବା ଘରୁ ତାପସୀ ଓ ତା' ପୁଅର ସମସ୍ତ ଜିନିଷପତ୍ର ବାହାରକୁ ଫୋପାଡ଼ି ଦେଲେ । ଶାଶୂଶ୍ୱଶୁର ନୀରବ । ନିଜ ଘର ଭିତରକୁ ପଶିଯାଇ ସେମାନେ କବାଟ କିଳିଦେଲେ ।

ପୁଅଟି କିଛି ବୁଝିପାରୁନଥାଏ । ପଥରଖଣ୍ଡଟିଏ ପରି ତଳକୁ ମୁଣ୍ଡକରି ଚଟାଣ ଉପରେ ବସିପଡ଼ିଥିବା ମା'କୁ କୁଣ୍ଢାଇ ଧରି ସେ ଭୋ ଭୋ ହୋଇ କାନ୍ଦିବାକୁ ଲାଗିଥାଏ । ତାକୁ ସବୁବେଳେ କୋଳରେ କାଖରେ ଧରି ଗେହ୍ଲା କରୁଥିବା ଜେଜେବାପା ଓ ଜେଜେମାଙ୍କୁ ଡାକିଡାକି ତାଙ୍କ କବାଟ ବାଡାଉଥାଏ । କୌଣସି ଉତ୍ତର କୋଉଠୁ ନାହିଁ । ସବୁ ଶୂନ୍‌ଶାନ । ସତେ ଯେମିତି ସମସ୍ତେ ମୂକ ହୋଇଯାଇଛନ୍ତି । ପୁଅଟି ଶେଷରେ ନିରାଶ ହୋଇ ମା' ପାଖକୁ ଫେରିଆସି ତା' ଉପରକୁ ଆଉଜିଗଲା ।

ଏଇ ଭିତରେ ତାପସୀ ସେ ଘରେ ତା'ର ସ୍ଥିତି ବୁଝିସାରିଥାଏ । ଏଥର ସେ ନୀରବରେ ଉଠିଲା, ପୁଅର ହାତଧରି ସେହିପରି ଅବସ୍ଥାରେ ଆଉ କୁଆଡ଼ିକି ନ ଚାହିଁ ଘରୁ ବାହାରିଆସି କିଛିବାଟ ଚାଲିବା ପରେ ରିକ୍‌ସାଟିଏ କରି ବାପ ଘରେ ଆସି ପହଞ୍ଚିଲା ।

ପୂର୍ବରୁ ଝିଅ ମୁହଁରୁ ନିଜର ଶ୍ୱଶୁର ଘର ବିଷୟରେ କେବେ କିଛି ଅଭିଯୋଗ ଶୁଣିନଥିବା ତା' ବାପା ମା ଦୁହେଁ ତାକୁ ସେପରି ଅବସ୍ଥାରେ ଦେଖି କାବା ହୋଇଗଲେ । ଘଟଣାଟି ବୁଝିବା ପରେ ସେମାନେ କ'ଣ କରିବେ ବୁଝିପାରୁନଥିଲେ ।

ଅସମୟରେ ଝିଅଟିଏ ବାପଘର ବ୍ୟତୀତ ଆଉ ବା କୁଆଡ଼େ ଯିବ ! ବାପା ମା ଦୁହେଁ ଝିଅ ଓ ନାତିକୁ ନିଜ ପରିସ୍ଥିତିର ମୁକାବିଲା କରି ବଞ୍ଚିବା ପାଇଁ ସହଯୋଗ କରୁଥାନ୍ତି । କିନ୍ତୁ କିଛି ଦିନ ପରେ ଏକ ଅଭାବିତ ଦିଗରୁ ଯେ ବିପଦଟିଏ ପୁଣି ତାକୁ ଟଳିଟଳାନ୍ତ କରିବାକୁ ଆସି ପହଞ୍ଚିଯିବ ସେକଥା ତାପସୀ ମନକୁ ଭୁଲରେ ବି ଥରେ ଆସିନଥିଲା ।

ଏ ଭିତରେ ବାହା ହୋଇଯାଇଥିବା ତା' ତଳ ଦୁଇ ଭଉଣୀଙ୍କ ସ୍ୱାମୀ ଦିହେଁ ପରସ୍ପର ସହିତ କଥାହୋଇ ଆସି ତାଙ୍କ ଘରେ ପହଞ୍ଚି ଯାଇଥିଲେ । ତାପସୀର ବାପା ମାଙ୍କ ପରେ ତାଙ୍କର ସ୍ଥାବର ସମ୍ପତ୍ତି ବିଶେଷକରି କଟକରେ ଥିବା ତାଙ୍କ ଘରର ବଣ୍ଟାବଣ୍ଟି ଏବଠାରୁ କରିଦେବାକୁ ବାଧ୍ୟ କଲେ । ସେମାନଙ୍କର ବୋଧେ ଧାରଣା ହୋଇଯାଇଥିଲା ଯେ ତାପସୀ ଯେଉଁ ଅବସ୍ଥାରେ ଆସି ରହୁଛି ହୁଏତ ତା' ବାପା ଘରଟି ତା' ନାଁରେ କରିଦେଇ ଝିଅ ଓ ନାତିର କିଛି ବ୍ୟବସ୍ଥା କରିଦେବେ ।

ସେଦିନ ତାର ଦୁଇ ଭଉଣୀ ଜ୍ୱାଇଁ ଯେପରି କଥାବାର୍ତ୍ତା କଲେ ଓ ତା ବାପା ମାଙ୍କୁ ଧମକଚମକ ଦେଲେ ସେଥିରେ ତାପସୀର ଦୁଃଖ ଶ୍ୱଶୁର ଘରୁ ଚାଲିଆସିଥିବାର ଦୁଃଖ ଅପେକ୍ଷା ବଳିପଡ଼ିଥିଲା । ସାଙ୍ଗ ସାଥି ତା' ସ୍ୱାମୀ ବିରୋଧରେ କେଶ୍ କରିବାକୁ ତାକୁ ପରାମର୍ଶ ଦେଉଥାନ୍ତି । କାରଣ ମା' ପୁଅଙ୍କର ଭରଣ ପୋଷଣ ତ ତା'ର ଦାୟିତ୍ୱ ।

କିନ୍ତୁ ତାପସୀ କୋର୍ଟ କଚେରିକୁ ଯିବାକୁ ଚାହିଁଲା ନାହିଁ । ତାକୁ ପ୍ରତ୍ୟାଖ୍ୟାନ କରିଥିବା ମଣିଷର ଟଙ୍କାରେ ବଞ୍ଚିବା ତା' ପାଇଁ ଅସହ୍ୟବୋଧ ହୋଇଥିଲା । ଦିନେ ସେ ପଢୁଥିବା କଲେଜରେ ପିଅନ ପୋଷ୍ଟଟିଏ ଅଛି ଜାଣି ସେ ପ୍ରିନ୍‌ସିପାଲଙ୍କୁ ସାକ୍ଷାତ କରି ତା'ର ଅବସ୍ଥା କଥା ଜଣାଇଥିଲା । ଯାହାହେଉ ସେ ତାର ବ୍ୟବସ୍ଥା କରିବା ସଙ୍ଗେ ପିଅନଙ୍କ ପାଇଁ ଉଦ୍ଦିଷ୍ଟ କ୍ୱାର୍ଟର ଖଣ୍ଡିକ ମଧ୍ୟ ଦେଇଦେଲେ ।

ସେଦିନର ଘଟଣା ପରଠାରୁ ତା' ବାପା ମା କେମିତି ସଂକୁଚିତ ହୋଇପଡ଼ିଥିଲେ । ତାଙ୍କ ନିଜ ଘର ଯେପରି ଆଉ ତାଙ୍କର ନିଜର ହୋଇ ନଥିଲା । ଯେଉଁଦିନ ତାପସୀ

ତା'ର ସାମାନ୍ୟ କିଛି ଜିନିଷପତ୍ର ନେଇ ପୁଅକୁ ସାଙ୍ଗରେ ଧରି ବାପଘର ଛାଡ଼ି ଆସିଲା, ତାକୁ ସେମାନେ ଅଟକାଇ ପାରିନଥିଲେ । ଘର ଛାଡ଼ିବା ପଛରେ ତାପସୀର ଅହଂକାର ନଥିଲା କି ଅଭିମାନ ମଧ୍ୟ ନଥିଲା । ସେ ଚାହୁଁଥିଲା ସେ ଘରୁ ଚାଲିଆସିଲେ ଦୁଇ ଭାଇଙ୍କର ଦୌରାତ୍ମ୍ୟ କମିଯିବ ଓ ତା' ବାପା ମା ମଧ୍ୟ ଟିକେ ଶାନ୍ତିରେ ରହିପାରିବେ ।

ଯେଉଁ କଲେଜରେ ସେ ପାଠ ପଢୁଥିଲା, ସେଇଠି ଚାକିରି ଖଣ୍ଡେ ପାଇ ଚଳିବା ସଙ୍ଗେ ପୁଅକୁ ବି ପାଠପଢ଼ାଇ ମଣିଷ କରିବାର ଚେଷ୍ଟାରେ ସେ ଲାଗିପଡ଼ିଲା ।

ତାପସୀର କଥା ଶୁଣି ମୋର ମନେପଡ଼ିଲା ତା' ପୁଅ କଥା । ମୁଁ ହଠାତ୍ ଉଦ୍‌ବିଗ୍ନ ହୋଇ ପଚାରିଲି "ଆଚ୍ଛା, ତୋ ପୁଅକୁ ତ ଦେଖୁନି । ବେଶ୍ ବଡ଼ ହୋଇଯିବଣି । କ'ଣ କରୁଛି ସେ ?''

ମୋ ପ୍ରଶ୍ନର ଉତ୍ତରରେ ତାପସୀ ଖୁବ୍ ଶାନ୍ତ ଭାବରେ କହିଲା, "ସେ ଆଉ ମୋ ପାଖରେ ରହୁନି ।''

"ମାନେ ? କୋଉଠି ରହୁଛି ସେ ?''

"ଦୁଇ ବର୍ଷ ହେଲାଣି । ସେ ତା ବାପାଙ୍କ ପାଖକୁ ଚାଲିଯାଇଛି ।''

"ବାପା ପାଖକୁ ଯାଇଛି, ଏତେ ବର୍ଷ ପରେ ? ଆଉ ତୋ' କଥା ?''

"ମୋ କଥା ଆଉ କ'ଣ । ଯେମିତି ଥିଲି ସେମିତି ଅଛି ।''

"ସେ ତୋ' ସହିତ ଯୋଗାଯୋଗ ରଖିଛି ତ ?''

"ନାଁ, ସେ ଆଉ ଏଠାକୁ ଆସେ ନାହିଁ ।''

"କାହିଁକି ? ଯୋଉ ମା' ତାକୁ ଏତେ କଷ୍ଟରେ ପାଳିନାଳି ପାଠ ପଢ଼ାଇଥିଲା ସେ ବାପା ପାଖକୁ ଯାଇ ମା'କୁ ଭୁଲିଗଲା କିପରି ?''

ଏଥର ତାପସୀ ମୋ ମୁହଁକୁ ସିଧା ଚାହିଁ ହସି ହସି କହିଲା, "ଅପା ଆପଣ ଏପରି ଆଶ୍ଚର୍ଯ୍ୟ ହେଉଛନ୍ତି କାହିଁକି ! ପିଅନ ମା'ର ପୁଅ ହେବା ଓ ସୁପରିଟେଣ୍ଡେଣ୍ଟ ଇଂଜିନିୟର ସୁଧାକର ଜେନାଙ୍କର ପୁଅ ଭାବରେ ପରିଚିତ ହେବା ଭିତରେ ଯେ ଆକାଶ ପାତାଳ ଫରକ । ସେ ଯେତେବେଳେ ସୁଯୋଗ ପାଇଲା ବାପର ପରିଚୟରେ ସମାଜରେ ପରିଚିତ ହେବାପାଇଁ, ସେ ଏଠି ଆଉ କାହିଁକି ରହିଥାନ୍ତା । ତା' ପାଇଁ ମା'ର ଆବଶ୍ୟକତା ସରିଯାଇଥିଲା ।''

ତା'ର ସହଜ ଭାବରେ କହୁଥିବା କଥାକୁ ମୁଁ ଆଦୌ ସହଜ ଭାବରେ ନେଇ ପାରୁନଥିବା ସେ ବୁଝି ପାରିଥିଲା । ତାପରେ ସେ ଯାହା କହିଲା ସେଇଥିରୁ ମୁଁ ବୁଝିଲି ଯେ

ତା' ସ୍ୱାମୀଠାରୁ ତା'ର ବିଧିବଦ୍ଧ ଛାଡ଼ପତ୍ର ହୋଇନଥିବାରୁ ତା' ସ୍ୱାମୀ ସହିତ ସ୍ତ୍ରୀ ଭାବରେ ରହୁଥିବା ଶୋଭାରାଣୀ ସବୁବେଳେ କାଳେ ବିଚଳିତ ରହୁଥିଲା ଓ ଗୋଡ଼େ ଗୋଡ଼େ ତା' ସ୍ୱାମୀକୁ ଜଗୁଥିଲା । କାଳେ ସେ ତା'ର ସ୍ତ୍ରୀ ଓ ପୁଅ ସହିତ କିଛି ଯୋଗାଯୋଗ ରଖିବେ । କିନ୍ତୁ ଦୈବବିଧାନରୁ ତା'ର କୌଣସି ସନ୍ତାନ ସନ୍ତତି ହେଲେନାହିଁ । ବୟସ ବଢ଼ିବା ସଙ୍ଗେସଙ୍ଗେ ସୁଧାକର ଜେନା ମଧ୍ୟ ପୁତ୍ର ଥାଇବି ଅପୁତ୍ରିକ ହୋଇ ରହିବା କଥାକୁ ଆଉ ଗ୍ରହଣ କରିପାରୁନଥିଲେ । ସେଥିପାଇଁ ତାଙ୍କ ବାପା ମାଙ୍କର ଚାପ ମଧ୍ୟ ବଢୁଥିଲା । ମୋ ପାଖରେ ଆସି ପୁଅକୁ ନେବାକଥା କହିବା ପାଇଁ ତାଙ୍କର ସାହସ ନଥିଲା । ତା'ଛଡ଼ା ମହିଳା କଲେଜର ପରିସରରେ ଥିବା ପିଅନ କ୍ୱାଟର୍ସକୁ ଆସିବାକୁ ବୋଧେ ସେମାନେ ସଂକୋଚ କରୁଥିବେ । ତେଣୁ ସହଜ ଉପାୟ ହେଲା ପୁଅ ରିତେଶ ସହିତ ସିଧା ଯୋଗାଯୋଗ କରିବା । ପୁଅ ଏଠାରେ ଏକ ସ୍ଥାନୀୟ କଲେଜରେ ପି.ଜି. କରୁଥାଏ । ତା' ଡିପାର୍ଟମେଣ୍ଟ ବାହାରେ ଲମ୍ବାଗାଡ଼ିରେ ସୁଧାକର ଜେନା ପହଞ୍ଚି ଯେତେବେଳେ ରିତେଶକୁ ଖବର ପଠାଇଲେ ଦେଖା କରିବା ପାଇଁ ସେ ଆସିବାକୁ କୁଣ୍ଠିତ ହେଉଥିଲା । କିନ୍ତୁ ଡିପାର୍ଟମେଣ୍ଟ ପିଅନ ଯେତେବେଳେ ବାରମ୍ବାର କହିଲା, "ରିତେଶ ବାବୁ ଆପଣଙ୍କ ବାପା ତଳେ ଅପେକ୍ଷା କରୁଛନ୍ତି । କ'ଣ ଜରୁରୀ ଦରକାର ଅଛି ଶୀଘ୍ର ଯାଆନ୍ତୁ ।"

ସେ ନଗଲେ ଅନ୍ୟମାନେ କାଳେ କ'ଣ ଭାବିବେ ବୋଲି ରିତେଶ ତଳକୁ ଓହ୍ଲାଇ ଗାଡ଼ି ପାଖକୁ ଗଲା । ସୁଧାକର ସେହିକ୍ଷଣି ତାକୁ ଗାଡ଼ିରେ ବସାଇ ନିଜ ଘରକୁ ନେଇଗଲେ । ବାହାନା ଥିଲା ଯେ ଜେଜେବାପାଙ୍କର ଦେହ ବହୁତ ଖରାପ ସେ ନାତିକୁ ଦେଖିବାକୁ ଚାହୁଁଛନ୍ତି ।

ପୂର୍ବରୁ ରିତେଶର ତା' ବାପାଙ୍କୁ ଦେଖିବାର ସୁଯୋଗ ଆସିଛି; କିନ୍ତୁ ସେ କଥାବାର୍ତ୍ତା କରିବାକୁ କେବେ ବି ଚେଷ୍ଟା କରିନି । ବରଂ ସେ ସ୍ଥାନ ଛାଡ଼ି ଚାଲିଯିବାକୁ ସେ ପସନ୍ଦ କରିଛି । ସୁଧାକର ମଧ୍ୟ କେବେ ବି ତା'କୁ ପାଖକୁ ଡାକି ନାହାନ୍ତି । ହୁଏତ ସେଥିପାଇଁ ଶୋଭାରାଣୀର ନିଷେଧାଜ୍ଞା ଥିବ ।

ସେଦିନ ରିତେଶକୁ ନେଇ ସେ ତାଙ୍କର ବିରାଟ ଦୋମହଲା ଘର, ସୌଖୀନ ଆସବାବପତ୍ର ଓ ଅନ୍ୟାନ୍ୟ ଐଶ୍ୱର୍ଯ୍ୟ ବୁଲାଇ ଦେଖାଇବା ପରେ, ସେସବୁର ରିତେଶ ଯେ ଏକମାତ୍ର ମାଲିକ ତାହା ତାକୁ ଜଣାଇ ଦେବାରେ ହେଳା କଲେନି । ତାର ବୁଢ଼ା ଜେଜେବାପା ଜେଜେମା ମଧ୍ୟ ତାକୁ କୋଟିନିଧି ପାଇବା ପରି ଆଦର କଲେ ।

ସେଠାରୁ ଫେରିଆସି ରିତେଶ ମା' ଆଗରେ ସବୁକଥା କହିଥିଲା ଓ ବିରକ୍ତି ମଧ୍ୟ ପ୍ରକାଶ କରୁଥିଲା । କିନ୍ତୁ ତାପସୀ ଲକ୍ଷ୍ୟକରି ପାରିଥିଲା ସେହିଦିନଠାରୁ ରିତେଶର ଅନ୍ୟମନସ୍କତା । ରିତେଶ କଲେଜରୁ ଫେରୁଥିଲା ବିଳମ୍ବରେ ଓ ବାହାରେ ଖାଇଆସିଛି ବୋଲି କହୁଥିଲା । ମା' ପାଖରୁ କିଛି କଥା ଯେ ସେ ଗୋପନ ରଖୁଛି ଏକଥା ତାପସୀର ବୁଝିବାରେ ଅସୁବିଧା ହେଉନଥିଲା । ତା ମନ ବି ଆଶଙ୍କା ଭିତରେ ବୁଡ଼ି ରହିଲା । ତା ଜୀବନର ଏକମାତ୍ର ପାଥେୟ ତା ପୁଅକୁ ସେ କୌଣସି ପ୍ରକାରେ ହରାଇବାକୁ ଚାହୁଁନଥିଲା । କିନ୍ତୁ ମୁହଁ ଖୋଲି ତା'ର ଆଶଙ୍କାର କଥା କହିଦେଲେ କାଳେ ରିତେଶ ବିରକ୍ତ ହେବ ଭାବି ସେ କିଛି ନ ହୋଇଥିବା ପରି ଆଚରଣ କରୁଥିଲା ।

କିନ୍ତୁ ଦିନେ କଲେଜରୁ ରିତେଶ ଆଉ ଘରକୁ ଫେରିଲା ନାହିଁ । ତାପସୀ ବ୍ୟସ୍ତ ହୋଇପଡ଼ିଲା । ତେବେ କାହାକୁ ଯାଇ ପଚାରିବ ପୁଅ ଖବର । ରିତେଶ ମୂଳରୁ ମା' ସହିତ ଆସି ପିଅନ କ୍ୱାଟର୍ସରେ ରହିବା କଥାକୁ ଗ୍ରହଣ କରିପାରି ନଥିଲା । ସେ ସେତେବେଳକୁ ବେଶ୍ ବଡ଼ ହୋଇ ଯାଇଥିଲା ତା' ନିଜ ଘର ଓ ଅଜା ଘରର ସ୍ମୃତି ତା' ମନରେ ସତେଜ ଥିଲା । ତେଣୁ ଏପରି ଦୟନୀୟ ଅବସ୍ଥା ଭିତରେ ସେ ଅଗତ୍ୟା ରହିବାକୁ ବାଧ୍ୟ ହୋଇଥିଲେ ବି ବାହାରେ ନିଜ ଘରର ଠିକଣା କାହାକୁ ଦେଉନଥିଲା ବା କୋଉ ସାଙ୍ଗକୁ ଘରକୁ ଡାକୁ ନଥିଲା । ତେଣୁ ତାପସୀ କାହାସହିତ ଯୋଗାଯୋଗ କଲେ ପୁଅର ଖବର ପାଇପାରିବ ବୁଝିନପାରି ବ୍ୟସ୍ତହୋଇ ବାରମ୍ବାର ବାହାରକୁ ଆସି ଗେଟ ପାଖକୁ ଯାଇ ଫେରୁଥିଲା ।

ପାଖ ଘରେ ରହୁଥିବା ପିଅନ ବିଦିଆ ଜାଣିଥିଲା ତାପସୀର କଥା । ସେ ସେହିକ୍ଷଣି ତା' ସାଇକଲଟି ଧରି କୁଆଡ଼େ ବାହାରିଗଲା । ପ୍ରାୟ ଦୁଇ ଘଣ୍ଟା ପରେ ବିଦିଆ ଫେରିଆସିଲା । ଏକ ବଖୁରିଆ ଘରର ଦ୍ୱାରବନ୍ଧକୁ ଆଉଜି ତା' ଫେରିବା ବାଟକୁ ଏକା ଆଖିରେ ଚାହିଁ ଠିଆହୋଇଥିବା ତାପସୀକୁ ଜଣାଇଦେଲା ଯେ ରିତେଶ ତା ବାପା ସୁପରିଟେଣ୍ଡେଣ୍ଟ ଇଂଜିନିୟର ସୁଧାକର ଜେନାଙ୍କ ବଙ୍ଗଳାରେ ରହୁଛି । ସନ୍ତାନ ଜନ୍ମ ଦେଇ ପାରିନଥିବାର ଗ୍ଲାନିରେ ପୀଡ଼ିତା ଶୋଭାରାଣୀ ରିତେଶକୁ ଗୋଟିଏ ସର୍ତ୍ତରେ ଗ୍ରହଣ କରିବାକୁ ରାଜି ହୋଇଛି ଯେ ଜେନା ପରିବାରର କେହି ତାପସୀ ସହିତ ସମ୍ପର୍କ ରଖିପାରିବେନି ବା ସେ ଯେପରି କେବେ ବି ପୁଅକୁ ଦେଖିବାର ବାହାନାରେ ତା କମ୍ପାଉଣ୍ଡ ଭିତରେ ପାଦ ନରଖେ ।

ମୁଁ ଏତିକି ଶୁଣୁ ଶୁଣୁ ଚିତ୍କାର କରି ଉଠି କହିଲି, "ତାପସୀ ତୋ' ପୁଅ କ'ଣ ଏ ସର୍ତ୍ତକୁ ମାନିଗଲା ? ସେ କ'ଣ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ପ୍ରତିଷ୍ଠା ପାଇଁ ତା' ମା'ର ମମତାକୁ ଭୁଲିଯାଇ ପାରିଲା ? କେଡ଼େ କୃତଘ୍ନ ସେ ପିଲା !''

ତାପସୀ ସେମିତି ଶାନ୍ତ ଭାବରେ କହିଲା, "ଅପା ଆପଣ କ'ଣ ଅନ୍ୟ ସମସ୍ତଙ୍କ ପରି ପ୍ରତିକ୍ରିୟା ପ୍ରକାଶ କରୁଛନ୍ତି କି ? ମା'ର ମମତା ପାଖରେ ସବୁ କିଛି ତୁଚ୍ଛ କଥାଟା କେବଳ ବହିର ଭାଷା ବା କଥାର କଥା । ଗୋଟେ ପତିପରିତ୍ୟକ୍ତା ପିଅନ ମା'ର ପୁଅ ଭାବରେ ପରିଚିତ ହେବା, ଏକ ବଖୁରିଆ ଘରେ, ପୁଣି ଛୋଟ ଚାକିରିଆଙ୍କ ଗହଣରେ ବିପନ୍ନ ବର୍ତ୍ତମାନ ଓ ଅନିଶ୍ଚିତ ଭବିଷ୍ୟତକୁ ନେଇ ରହିବା ଅପେକ୍ଷା ଜଣେ ସରକାରୀ ବରିଷ୍ଠ ଇଂଜିନିୟରଙ୍କ ପୁଅ ଭାବରେ ସମାଜରେ ଗଣାହେବା ସହ ଘର, ଗାଡ଼ି ଓ ଅନ୍ୟାନ୍ୟ ସମସ୍ତ ପ୍ରକାର ପ୍ରାଚୁର୍ଯ୍ୟ ବିନାଶ୍ରମରେ ପାଇଯିବାର ସୁଯୋଗକୁ ସେ ଉପେକ୍ଷା କରିପାରିଥାନ୍ତା କି ? ସେ କଣ ଯୋଗୀ ହୋଇଛି ! ସେ ଠିକ୍ କରିଛି । ମୁଁ ମଧ୍ୟ ତା' ପାଇଁ ଆଶ୍ୱସ୍ତ ।''

ସେ ଯେତେ ସହଜ ଭାବରେ କହିଲେ ବି ତା'ର କଣ୍ଠସ୍ୱର ଯେ ବାଷ୍ପରୁଦ୍ଧ ହୋଇ ଅଟକି ଅଟକି ଯାଉଛି ତା' ମୁଁ ଅନୁଭବ କରିପାରୁଥିଲି । ଗୋଟେ ଆବେଶରେ ମୁଁ ତା' ହାତକୁ ମୋ ହାତମୁଠାରେ ଚାପିଧରି କହିଲି, "ତୁ ଚାଲ, ମୋ ପାଖରେ ରହିବୁ । ତତେ ଏମିତି ଏକୁଟିଆ ଜୀବନ ବଂଚିବାକୁ ମୁଁ ଛାଡ଼ିଦେଇ ପାରିବିନି ।''

କିନ୍ତୁ କଥାପଦକ କହିଦେବା ପରେ ମନ ମୋର ଶଙ୍କିତ ହୋଇଉଠିଲା ସତରେ କ'ଣ ମୁଁ ତାର ଦାୟିତ୍ୱ ନେଇପାରିବି !

ସେ ହଠାତ୍ ମନଖୋଲି ହସିବାକୁ ଲାଗିଲା । ମୁଁ ଆଶ୍ଚର୍ଯ୍ୟ ହୋଇ ତା ମୁହଁକୁ ଚାହିଁଥାଏ । ସେ ସେମିତି ହସୁ ହସୁ କହିଲା "ଅପା ଜୀବନ ମୋ ସହିତ ତା' ମରଜିରେ ସବୁବେଳେ ଖେଳିଛି । ମୋ ଚାହିଁବା ଅନୁସାରେ କେବେ କିଛି ହୋଇନାହିଁ । ପାଠ ପଢ଼ିବାକୁ ଚାହିଁବାବେଳେ ପାଠପଢ଼ା ବନ୍ଦ କରିଦିଆଗଲା, ଏତେ ଅଳ୍ପ ବୟସରେ ବାହା ହୋଇବି କେତେ ମନ ଦେଇ ସଂସାର କରୁଥିଲି, ସ୍ୱାମୀ ଶାଶୂଶ୍ୱଶୁରଙ୍କ ସେବା ଯତ୍ନରେ ସାମାନ୍ୟ ହେଳା କରୁନଥିବା ବେଳେ ବି ଗୋଟାଏ ମୁହୂର୍ତ୍ତରେ ମତେ ମୋ ସଂସାର ଭିତରୁ ଟାଣି ଓଟାରି ବାହାର ରାସ୍ତାକୁ ଫୋପାଡ଼ି ଦିଆଗଲା । ଭାବିଥିଲି ବାପା ମାଙ୍କ ଶରଣରେ ପୁଅକୁ ନେଇ ବଞ୍ଚିଯିବି, ହେଲେ ଭଉଣୀମାନଙ୍କର ବାଦରେ ତା'ବି ହେଲାନାହିଁ । ଶେଷ ଭରସା ଥିଲା ମୋର ପୁଅ । ଭାଗ୍ୟବଶରୁ ପିଅନ ଚାକିରିଟିଏ କରି ନିଜେ ବଞ୍ଚି ପୁଅକୁ ମଣିଷ କରିଥିଲି, ଆଶା ରଖିଥିଲି ତାରି ଭରସାରେ ଜୀବନର ଅବଶେଷ ଭଲରେ କଟିଯିବ । ଦେଖ୍ କଣ ହେଲା ସେ ପୁଅ ବି ମତେ ଛାଡ଼ିଦେଇ ଗଲା ମୋ ସହିତ ସମ୍ପର୍କ ନ ରଖିବାର ସର୍ତ୍ତରେ । ଏବେ ତୁମେ କହୁଛ ତୁମ ସହିତ ଯିବାପାଇଁ । ଅପା ତୁମ

ଘରଲୋକ ତୁମର ଏ ନିଷ୍ପତ୍ତିକୁ ଗ୍ରହଣ କରିବେ ତ ! ମୁଁ ଜାଣେ ମତେ ପୁଣି ଫେରିଆସିବାକୁ ହେବ ଏଇ ଘରକୁ ଆହୁରି ଅପମାନର ଜୀବନ ବଞ୍ଚିବାକୁ ।''

ତାପସୀ ନୀରବ ରହିଲା । ତା' କଥା ଉପରେ ଆଉ କିଛି ମତଦେବାର ଅଛି ବୋଲି ମୁଁ ଭାବିପାରୁନଥିଲି ।

ମୋର ବିଷଣ୍ଣତା ଲକ୍ଷ୍ୟକରି ତାପସୀ କହିଲା, "ଅପା, ବିଶ୍ୱାସ କରନ୍ତୁ ମୋର କାହା ବିରୋଧରେ କୌଣସି ଅଭିଯୋଗ ନାହିଁ । ଏବେ ଆଉ କାହାପାଇଁ ମୋର ଚିନ୍ତା କରିବାର ନାହିଁ କି କାହାର ଭଲ ମନ୍ଦର ଆଶଙ୍କାରେ ଆତଙ୍କିତ ହେବାର ନାହିଁ । ମାନଅପମାନ ଏବେ ମୋ ପାଇଁ ସମାନ କଥା; ହରେଇବା ପାଇବାର ପ୍ରସଙ୍ଗ ମଧ୍ୟ ମୋ ପାଇଁ ଅର୍ଥହୀନ । ନଦୀ ପରି ଜୀବନ ବି ତା'ର ନିଜର ଗତି ନେଇ ଚାଲିଛି; ଖୁବ୍ ସ୍ୱଚ୍ଛନ୍ଦ, ଖୁବ୍ ସହଜ । ମୋ ପାଇଁ ଈଶ୍ୱରଙ୍କ ବିଧାନକୁ ମୁଁ ସ୍ୱୀକାର କରିନେଇଛି । ମୁଁ ସାଲିସକରା ଜୀବନ ବଞ୍ଚୁନାହିଁ, ଶାନ୍ତିର ଜୀବନ ବଞ୍ଚୁଛି । ଏତେ ଦିନ ପରେ ହିଁ ମୁଁ ବଂଚିବାର ପ୍ରକୃତ ଅର୍ଥ କଣ ବୁଝିପାରିଛି । ଆପଣ ମୋ ପାଇଁ ଆଦୌ ବ୍ୟସ୍ତ ହେବେନି ।''

ତା' ସ୍ୱରରେ ଆନ୍ତରିକତାର ପ୍ରକାଶ ମତେ ଅଭିଭୂତ କରିଥିଲା । ମୁଁ ସେତିକିବେଳେ ବୁଝିପାରିଲି ଯେ ତା' ଜେଜେମା ତା'ର ତାପସୀ ନାମଟି କାହିଁକି ଦେଇଥିଲେ । ହୁଏତ ତା'ର ପିଲାବେଳେ ବି ସେ ଅନୁଭବ କରି ପାରିଥିଲେ ସେ ଛୋଟ ଝିଅଟିର ଚୁଲବୁଲପଣ ସାଗରର ଚଞ୍ଚଳ ଢେଉ ପରି ସିନା, ଭିତରକୁ ଭିତରକୁ ବେଶ୍‌ଗଭୀର, ପ୍ରଶାନ୍ତ ।

ମୁଁ ଏକ ଆଶ୍ୱସ୍ତି ନେଇ ଫେରିଆସିଥିଲି ।



## ଫୁଟପାଥର ବହି

ଦିନେ ମୋର ଜଣେ ଛାତ୍ର ଆସି କହିଲା, "ମ୍ୟାଡାମ ଦୁଇ ତିନିମାସ ତଳେ ଆପଣଙ୍କ ବାପାଙ୍କ ଉପରେ ଲେଖା ଯାଇଥିବା ଯେଉଁ ପୁସ୍ତକଟିର ଉନ୍ମୋଚନ ହୋଇଥିଲା, ଏବେ ଦେଖିଲି ସେ ବହି ଫୁଟ୍‌ପାଥରେ ବିକ୍ରି ହେଉଛି ।"

ମୁଁ ଟିକେ ଆଶ୍ଚର୍ଯ୍ୟ ହୋଇଗଲି । କାରଣ ସେ ବହିର ପ୍ରକାଶକ ମୁଁ ନିଜେ । କେବଳ ଜଣେମାତ୍ର ବହିଦୋକାନୀକୁ ସେ ବହିସବୁର ବିତରଣ କରିବାର ଦାୟିତ୍ୱ ଦେଇଥିଲି । ତେଣୁ ସେ ବହି ଫୁଟ୍‌ପାଥରେ କିପରି ବିକ୍ରି ହେଉଛି !ପୁଣି ଭାବିଲି ହୁଏତ ଫୁଟପାଥବାଲା ସେହି ଦୋକାନୀଠାରୁ କିଛି ବହି ବିକିବା ପାଇଁ ନେଇଥିବ !

ମନେ ମନେ ଖୁସିହେଲି ଯାହାହେଉ ବାପାତ ସବୁକାଳେ ସାଧାରଣ ମଣିଷଙ୍କ ପାଇଁ କାମ କରୁଥିଲେ, ଏବେ ସେଇ ସାଧାରଣ ଲୋକେ ଯଦି ଫୁଟ୍‌ପାଥରୁ ତାଙ୍କ ଉପରେ ଲେଖାଯାଇଥିବା ବହିକୁ କମ୍‌ଦାମରେ କିଣି ପଢ଼ିବେ, ଭଲ କଥା ।

ବାପାଙ୍କ କଥା ପଢୁ ପଢୁ ମୁଁ ତାଙ୍କରି ଭାବନାରେ ବୁଡ଼ିଗଲି । ବାପା ଥିଲେ ମୋର ଜଣେ ସ୍ୱାଧୀନତା ସଂଗ୍ରାମୀ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ପାଇଁ ବାପା ମା, ଘରଦ୍ୱାର ଓ ଆପଣାର ନବବିବାହିତା ପତ୍ନୀକୁ ଛାଡ଼ି ଦିନେ ସେ

ନଖୋଜ ହୋଇଯାଇଥିଲେ । ଜଗତସିଂହପୁରର କେଉଁ ଏକ ନିପଟ ମଫସଲରେ ଥିଲା ଆମଘର । ବାପାଙ୍କୁ ଖୋଜି ପାଇବାର ସାମର୍ଥ୍ୟ ବି କାହାର ନଥିଲା । ତାଙ୍କ ସମ୍ପର୍କରେ କିଛି ଜାଣିବାର ମଧ୍ୟ ସମ୍ଭାବନା ନଥିଲା ।

କିନ୍ତୁ ଯେଉଁଦିନ ପୋଲିସ ଆମ ଗାଁରେ ପହଞ୍ଚି ବିଦ୍ୟାଧର ଜେନାଙ୍କ ଘର ଖୋଜି ଆମ ଘରେ ଆସି ପହଞ୍ଚିଲା ସେଦିନ ଘଟଣାଟା ଆଉ କାହାରିକୁ ଅଜଣା ରହିଲାନାହିଁ ।

କଥାଟା ବିଜୁଳି ପରି ବ୍ୟାପିଗଲା ଯେ ଗାଁରେ ବିଦିଆ ରୂପେ ପରିଚିତ ମଧୁ ପ୍ରଧାନଙ୍କର ଏକମାତ୍ର ପୁତ୍ର ବିଦ୍ୟାଧର ଇଂରେଜ ସରକାରଙ୍କ ବିରୋଧରେ କଣ ସବୁ କାର୍ଯ୍ୟ କରି ଜେଲ ଯାଇଥିଲା । ଗାଁଟା ଯାକର ଲୋକେ ଆମ ଦୁଆରେ ଜମା ହୋଇଗଲେ । ପୁଅର ଦୋଷ ଲାଗି ପୋଲିସ ସମସ୍ତଙ୍କ ଆଗରେ ଗାଁର ଜଣେ ମୁରବୀ ସ୍ଥାନୀୟ ଲୋକ ମୋର ଜେଜବାପାଙ୍କୁ ମାଡ଼ମାରି ଲହୁଲୁହାଣ କରି ଦେଇଥିଲା ଓ ଜେଜେଙ୍କୁ ଓ ଗାଁ ଲୋକଙ୍କୁ ଚେତାବନୀ ଦେଇଯାଇଥିଲା ଯେ ବିଦ୍ୟାଧର ଓରଫ ବିଦିଆ ଯଦି ଗାଁକୁ ଆସେ ଗ୍ରାମବାସୀ ତାକୁ ଧରି ପୋଲିସ ଥାନାରେ ଖବର ଦେବେ । ଯଦି ସେ ଗାଁକୁ ଆସିଥିବ ବା କେହି ତାକୁ ଆଶ୍ରୟ ଦେଇଥିବାର ଖବର ପୋଲିସ ଜାଣିବାକୁ ପାଇବ ତେବେ ଆଜି ମଧୁ ପ୍ରଧାନଙ୍କର ଯେଉଁ ଅବସ୍ଥା ହେଲା ତା'ଠାରୁ ଅଧିକ ଦଣ୍ଡ ସମସ୍ତ ଗ୍ରାମବାସୀଙ୍କୁ ଦିଆଯିବ । ପୁଣି ବିଦିଆ ବିଷୟରେ ଯଦି କେହି କୌଣସି ଖବର ପାଇ ପୁଲିସକୁ ଜଣାଇବ ତେବେ ସରକାର ବାହାଦୁର ତାକୁ ଇନାମ୍ ଦେବେ ।

ଗାଁରେ ତା'ପରଠାରୁ କୁଆଡ଼େ କୋକୁଆ ଭୟ ଖେଳି ଯାଇଥିଲା । ଗାଁ ଲୋକେ ଆମକୁ ଏକ ଘରିକିଆ କରି ଦେଇଥିଲେ । ଘରଟି ଭିତରେ ପଡ଼ିରହିଥିଲେ ଦୁଇଜଣ ବୁଢ଼ାବୁଢ଼ୀ ଓ ଷୋଳ ସତର ବର୍ଷର ଭୂଆସୁଣୀଟିଏ । କି କଷ୍ଟରେ ସେମାନେ ଚଳିଥିବେ ସେକଥା କଳ୍ପନା କରିବାକୁ ମୋର ଭୟହୁଏ ।

ବାପା ଫେରିଥିଲେ ପନ୍ଦରବର୍ଷ ପରେ । ଦେଶ ସ୍ୱାଧୀନ ହେବାର ଦୁଇବର୍ଷ ପୂରି ଯାଇଥିଲା । ଜେଜେବାପା ମରି ଯାଇଥିଲେ, ଘରେ ଥିଲେ ଜେଜିମା ଓ ମୋ ବୋଉ । ବାପାଙ୍କୁ ସେତେବେଳକୁ ଚାଳିଶ ବର୍ଷହେବ । ସେ କୁଆଡ଼େ ଷାଠିଏ ସତୁରି ବର୍ଷର ବୁଢ଼ାପରି ଦିଶୁଥିଲେ । ତାଙ୍କୁ ଆଉ କେହି ଚିହ୍ନିବା ସମ୍ଭବ ନଥିଲା । କିନ୍ତୁ ମୋ ଜେଜିମା ତା'ର ଆଉ ଭଲ ଦିଶୁନଥିବା ଆଖି ଓ ଚମ ଧୁଡୁଧୁଡୁ ଅବସ୍ଥାରେ ବି ବାପାଙ୍କର ଖାଲି "ବୋଉ" ଡାକଟିରୁ ଜାଣିପାରି ଖୁସିରେ କିଛିକାଳ ପାଗଳିପରି ହୋଇଯାଇଥିଲା । ନିଜ ପିଲାକୁ ଚିହ୍ନିବା ପାଇଁ ମାଟିଏର ନିଜ ଆଖିର ବା କୌଣସି ପ୍ରମାଣପତ୍ରର ସାହାଯ୍ୟ ଲୋଡ଼ା ପଡ଼େନି । ମୋ ବୋଉ ବିଚାରି ପ୍ରତିଦିନ ଲୁଚାଇ ଲୁଚାଇ ଖୁଦ ଦୁଇ ମୁଠା ଅଗଣା କଣକ

ରଖିଦେଇ ଶୁଭ କାଉଠାରୁ କିଛି ବାତନି ପାଇବା ଆଶାରେ ଉତ୍କଣ୍ଠିତ ହୋଇ ଓଢ଼ଣା କୋଣରୁ ଚାହିଁରହି ନିରାଶ ହେଉଥିଲା । କିନ୍ତୁ ସେଇଦିନ କୁଆଡ଼େ ଶୁଭ କାଉ ବାପାଙ୍କର ଫେରିବାଟା ନିଧାର୍ଯ୍ୟ ବୋଲି ମାନସିକ ଥିବା ଖୁଦ ମୁଠାରୁ ଲାଗଲାଗ ଥଣ୍ଟ ଭର୍ତ୍ତି ଖୁଦ ନେଇ ଉଡ଼ିଯାଇଥିଲା । ବୋଉ ସେକଥା କାହାକୁ କହି ଲୋକହସା ନ ହେବା ପାଇଁ ଗୁଡାଏ ଖୁସିକୁ ଏକା ନିଜ ଭିତରେ ଚାପିରଖି ଆକ୍ତାମାକ୍ତା ହୋଇ ଯାଉଥିଲା ।

ଖରାବେଳଟାରେ ଦାଣ୍ଡ ପଟୁ ଜେଜୀମାର ଏକା ସାଙ୍ଗରେ କାନ୍ଦ ଓ ହସର ଅଦ୍ଭୁତ ସ୍ୱର ଭାସିଆସୁଥିବାର ଶୁଣି ବୋଉ କୁଆଡ଼େ ସେ ଠିଆ ହୋଇଥିବା ମାଟି ଉପରେ ଲମ୍ବ ହୋଇ ଶୋଇପଡ଼ି ମା ବୃନ୍ଦାବତୀଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ପିଟିପିଟି ତା'ର କୃତଜ୍ଞତା ଜଣାଇଥିଲା ।

ବାପା ଆସିଲେ । ଗାଁରେ ତାଙ୍କୁ ସ୍ୱାଧୀନତା ସଂଗ୍ରାମୀ ଭାବରେ ଗାଁର ଯୁବକମାନେ ବେଶ୍ ଗୋଟେ ଭବ୍ୟ ସମ୍ବର୍ଦ୍ଧନା ଦେଲେ । ବାପାଙ୍କୁ ନେଇ ପାଖଆଖ ଗାଁଲୋକଙ୍କ ଭିତରେ ମଧ୍ୟ କିଛିଦିନ ବେଶ୍ ଚର୍ଚ୍ଚା ଚାଲିଲା । ସକାଳେ ସଂଜେ ଆମଦୁଆର ମୁହଁରେ ଲୋକଙ୍କର ଭିଡ଼ ଲାଗିରହିଥିଲା ।

ବାପାଘରେ ବେଶିଦିନ ଚୁପ୍‌ହୋଇ ବସି ପାରିଲେନି । ଗାଁର କିଛି ଉନ୍ନୟନ କାର୍ଯ୍ୟ ଗାଁ ଯୁବକମାନଙ୍କର ସହାୟତାରେ କରିବାରୁ ଗାଁଲୋକଙ୍କର ମଧ୍ୟ ଆଗ୍ରହ ବଢ଼ିଲା । ତେଣିକି ବାପାଙ୍କ ପାଇଁ ପୁଣି ତାଙ୍କର ବୁଢ଼ୀ ମା ଓ ପତ୍ନୀ ଗୌଣ ହୋଇଗଲେ । ସେ ଜେଲରେ ଶିଖିଥିବା ଅନେକ କାମ ଲୋକଙ୍କୁ ଶିଖାଇ ଦେଇ ପାରିଲେ । ରାତିରେ ଘରୁ ଲଣ୍ଠନ ନେଇ ଗାଁଲୋକଙ୍କୁ ଗୀତା, ଭାଗବତ ଓ ଅନ୍ୟାନ୍ୟ ପୁରାଣ ସବୁ ପ୍ରତିଦିନ ପଢ଼ି ଶୁଣାଇଲେ । ସକାଳେ ଆମ ଦାଣ୍ଡ ଚାଳିଆରେ ଛୋଟ ପିଲାଙ୍କ ପାଇଁ ଖୋଲି ଦେଇଥିଲେ ଚାଟଶାଳୀଟିଏ ।

ମୁଁ ଜନ୍ମ ହୋଇଥିଲି ମୋ ବାପାଙ୍କୁ ପଇଁଚାଳିଶ ବର୍ଷ ବୟସ ହେବାବେଳେ । ସେଇ ଗାଁରେ ମୋର ଜନ୍ମ, ବାପାଙ୍କର ଚାଟଶାଳୀରେ ମୋର ବିଦ୍ୟାରମ୍ଭ । ମୋର ସବୁପ୍ରକାର ଶିକ୍ଷାଦୀକ୍ଷା ବାପାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ମୁଁ ପାଠପଢ଼ିବାରୁ ଗାଁର ଝିଅମାନେ ଧୀରେ ଧୀରେ ଆସି ଯୋଗ ଦେଇଥିଲେ ବାପାଙ୍କ ଚାଟଶାଳୀରେ । ଗାଁର ପରିବେଶ ବଦଳି ଯାଇଥିଲା । ସେ ଖଣ୍ଡମଣ୍ଡଳରେ ଆମ ଗାଁକୁ ଲୋକେ ଆଦର୍ଶ ଗାଁ ବୋଲି ମଣୁଥିଲେ ।

ମୁଁ ଗାଁ ହାଇସ୍କୁଲରୁ ପାଶ୍ କଲି । କଟକରେ ଥିବା ମାମୁଘରେ ରହି କଲେଜରେ ପାଠ ପଢ଼ିଲି । ଅଧ୍ୟାପିକା ହେଲି । କିନ୍ତୁ ମୋ ବାହାଘର କଥା ପଡ଼ିବାରୁ ବାପା ତାଙ୍କ କଥା ସ୍ପଷ୍ଟ କରିଦେଲେ ଯେ ଝିଅକୁ ଜାତି, ଜାତକ ଓ ଯୌତୁକ ବିଚାରରେ ବାହାଘର କରିବେନି । ତାଙ୍କ ବିଚାରରେ ଏ ଦେଶରେ ରହୁଥିବା ସବୁ ମଣିଷଙ୍କର ଗୋଟିଏ ଜାତି,

ସମସ୍ତେ ଭାରତୀୟ । ଜାତକକୁ ଗୁରୁତ୍ୱ ଦେବାର ଅର୍ଥ ଜଗନ୍ନାଥଙ୍କ ପାଖରୁ ଦୂରେଇ ଯାଇ ଗ୍ରହମାନଙ୍କ କବଳକୁ ଚାଲିଯିବା ଆଉ ଯୌତୁକ ସବୁଠାରୁ ଘୃଣ୍ୟ ଓ ନିନ୍ଦନୀୟ ପ୍ରଥା, ଯାହାକୁ ସମସ୍ତେ ପ୍ରତ୍ୟାଖ୍ୟାନ କରିବା ଉଚିତ୍ ।

ଗାଁରେ ଏକଥା ଶୁଣି ଲୋକେ ଫୁସୁରୁଫାସର ହେଲେ ଯେ ବାପ ବୁଢ଼ାଦିନେ ଘରେ ବସି ଝିଅର ରୋଜଗାର ଟଙ୍କା ଖାଇବ ବୋଲି ଗୋଟେ ଫନ୍ଦି କରିଛି । କାରଣଏମିତି କଥାରେ କ'ଣ ବାହାଘର ହୋଇପାରିବ !

ବାପାଙ୍କ କାନକୁ ବି କଥାଟା ଗଲା । କିନ୍ତୁ ତାଙ୍କର କୌଣସି ପ୍ରତିକ୍ରିୟା ହେଲାନାହିଁ । ସେ ଓଲଟା କହିଲେ, "ମୋ ଲୋକମାନେ ଶିକ୍ଷା ପାଇନାହାନ୍ତି, କୁସଂସ୍କାରରେ ବଢ଼ିଛନ୍ତି । କେଉଁ ଯୁଗରୁ ଆମ ସମାଜରେ ଚଳି ଆସୁଥିବା ଅନ୍ଧଚଳଣି ସହିତ ଅଭ୍ୟସ୍ତ ହୋଇ ରହିଛନ୍ତି । ସେମାନେ କିପରି ନୂଆ ଚିନ୍ତା ବିଚାରକୁ ସହଜରେ ଗ୍ରହଣ କରିପାରିବେ ! ସେଥିରେ ସେମାନଙ୍କର ଦୋଷନାହିଁ । କିନ୍ତୁ ମୁଁ ମୋ ବିଚାରକୁ ବଳିଦେଲେ ମୁଁ ନିଜକୁ କ୍ଷମା କରିପାରିବି ନାହିଁ । ମୋ ଝିଅ ବାହା ନହେଉ, ନିଜ ପେଟ ତ ସେ ନିଜେ ପୋଷି ପାରିବ । କିନ୍ତୁ ନିଜର ନୀତିନିୟମ ଆଦର୍ଶକୁ ବଳିଦେଇ କି ସଂସାର କରିବ ସେ ।"

ମୁଁ ବି ବାପାଙ୍କ କଥାରେ ଏକମତ ଥିଲି । ବୋଉ ମଧ୍ୟ ଜୀବନରେ ଏତେ ଝଡ଼ଝଂଜା ଭିତର ଦେଇ ଯାଇଥିଲା ଯେ ଝିଅ ବାହାଘର ନହୋଇ ପାରିଲେ କ'ଣ ଗୋଟେ ପ୍ରଳୟ ହୋଇଯିବ ସେକଥା ସେ ଭାବୁନଥିଲା । ଯାହା ବାଡ଼େଇ ଛାଟି ହେଉଥିଲେ ଆମ କୁଟୁମ୍ବ ଓ ଗାଁ ଲୋକେ ।

ତେବେ ବାପାଙ୍କର ଜାତକ ଓ ଯୌତୁକ ନିୟମକୁ ମାନି ନେଇଥିବା ଆମ ଜାତିର ଜଣେ ଉଚ୍ଚଶିକ୍ଷିତ ଓ ଖୁବ୍ ଭଲ ଚାକିରି କରୁଥିବା ଜଣେ ଯୁବକଙ୍କ ସହିତ ମୋର ବାହାଘର ହୋଇଗଲା । ତାଙ୍କ ପରିବାର ମଧ୍ୟ ଏଥିରେ ସମ୍ମତ ଥିଲେ ।

ମଝିରେ ମଝିରେ ବାପା ମୋ ଘରକୁ ଆସନ୍ତି, ରୁହନ୍ତି ଦୁଇ ଚାରିଦିନ । ପ୍ରଥମ ଥର ସେ ଆସିଥିବାବେଳେ ମୋ ଖୁଡୀଶାଶୂ ତାଙ୍କୁ ଥଟ୍ଟା କରି କହିଥିଲେ, "କ'ଣ ସମୁଦି, ଝିଅ ଆମ ଘରେ ଦେଇଛ ଯେତେବେଳେ ଏଠିତ ପାଣି ଛୁଇଁବନି ନା । ପାଖରେ ତ ଏଠି ସେମିତି ଭଲ ଦୋକାନ ବଜାର ନାହିଁ କଣ କୋଉଠି ଖାଇବ ?"

ବାପା ଏସବୁ ଥଟ୍ଟାଟାପରା ବୁଝନ୍ତିନି । ସେ ସିଧା ମୋ ସ୍ୱାମୀଙ୍କ ନାମ ଧରି କହିଲେ, "ମୋ ଝିଅ ଶୁଭଦାକୁ ଦେଇ ପୁଅ ଅବିନାଶକୁ ପାଇଛି । ମୋ ପୁଅ ଘରେ ମୁଁ ଖାଇବି, ଏଥିରେ ଦୋଷ କଣ ?"

ତାଙ୍କ କଥା ଶୁଣି ଖୁଡୀ ଶାଶୂ ଆଉ କିଛି କହିବା ପୂର୍ବରୁ ମୋ ଶାଶୂ ତାଙ୍କୁ ସେଠାରୁ ଠାରି ଅନ୍ୟଆଡ଼େ ନେଇଗଲେ । ବାପାଙ୍କର ବ୍ୟକ୍ତିତ୍ୱରେ ମୋ ସ୍ୱାମୀ, ଶାଶୂ ଶ୍ୱଶୁର ଓ ଶାଶୂଘର ଲୋକେ ଖୁବ୍ ପ୍ରଭାବିତ ଥିଲେ ।

ହଠାତ୍ ବାପା ବୋଉ ଡକାଡକି ହୋଇ ମାସଟି ଭିତରେ ଚାଲିଗଲେ । ସତକୁ ସତ ଅବିନାଶ ହିଁ ମୁଖାଗ୍ନି ଦେବାଠାରୁ ସବୁ କିଛିକର୍ମ କଲେ । ସେ ବି ନିଜକୁ ମୋ ବାପାଙ୍କର ଜ୍ୱାଇଁ ନୁହେଁ ପୁଅ ବୋଲି ହିଁ ଭାବୁଥିଲେ ।

ବାପା ଯିବାର ଅନେକ ବର୍ଷ ପରେ ହଠାତ୍ ଆ'ଙ୍କ ମନକୁ ଆସିଲା ବାପାଙ୍କର ଜୀବନୀଟିଏ ଲେଖାଯିବା ନିହାତି ଦରକାର । ମୁଁ ଖୁସିହେଲି । ବାପାଙ୍କ ଜୀବନୀ ମୋ ବ୍ୟତୀତ ଆଉ ବା କିଏ ଲେଖିପାରିବ । ମତେ ବେଶ୍ ଦିନ ଲାଗିଲା । କାରଣ ମୋର ଅତି ଆପଣାର ମଣିଷଟି ବିଷୟରେ ଆବେଗ, ବିଚାର ଓ ନିରପେକ୍ଷତା ଭିତରେ ସମନ୍ୱୟ ରକ୍ଷା କରି ଲେଖିବାକୁ ହେଲା ।

ବହିଟି ପ୍ରସ୍ତୁତ ହେବାପରେ ବିଧିବଦ୍ଧ ଭାବରେ ତା'ର ଉଦ୍‌ଘାଟନ ମଧ୍ୟ କରାଗଲା । ଆମ ଦୁଇଜଣଙ୍କର ଅନୁରୋଧ ରକ୍ଷାକରି ବେଶ୍ ପ୍ରତିଷ୍ଠିତ ଲୋକମାନେ ଆସିଥିଲେ । ଭଲ ଖାଇବା ପିଇବାର ବନ୍ଦୋବସ୍ତ ମଧ୍ୟ କରାଯାଇଥିଲା । ଖୁବ୍ ଭଲରେ ପୁସ୍ତକ ଉନ୍ମୋଚନ କାର୍ଯ୍ୟ ଓ ଭୋଜିଭାତ ସରିଗଲା ।

ଏଥର ବହି ବାଣ୍ଟିବାର ପାଳି । କାରଣ ମୁଁ ତ ନିଜେ ପଇସା ଖର୍ଚ୍ଚ କରି ବହି ଛପେଇଛି । ସେସବୁ ବିକ୍ରି କରି ପଇସା ରୋଜଗାର କରିବା ତ ଉଦ୍ଦେଶ୍ୟ ନୁହେଁ । ତେଣୁ ସେଦିନ ଯେଉଁମାନେ ଆସିଥିଲେ ଓ ଆସିନଥିବା ଆମର ଜଣାଶୁଣା କେତେକ ବିଶିଷ୍ଟ ବକ୍ତିଙ୍କ ଘରେ ପହଞ୍ଚି ବହିଟିଏ ଲେଖାଏଁ ଦେଇ ନମସ୍କାର କରି ଆସଥିଲି । ଆଉ କେତେକ ବହି ଦେଇଥିଲି ସନ୍ତୋଷ ବୁକ୍ ଷ୍ଟଲରେ ବିକ୍ରି କରିବା ପାଇଁ ।

କିନ୍ତୁ ସେ ଛାତ୍ରଜଣକ ରାସ୍ତାକଡ଼ର ଫୁଟ୍‌ପାଥରେ ବହି ଦେଖିଛି ମାନେ ଫୁଟପାଥବାଲା ହିଁ ସେ ଷ୍ଟଲରୁ ନେଇ ବିକୁଛି । ଯାହାହେଉ ଏତେଦିନ ପରେ ଜଣେ ସାଧାରଣ ମଣିଷର ଅସାଧାରଣ ଜୀବନ ବଂଚିବାର କାହାଣୀ ତାଙ୍କର ନିଜ ଝିଅ ଲେଖିଥିବାରୁ ବହିପ୍ରତି ଲୋକଙ୍କର ଆଗ୍ରହ ବଢ଼ିଛି । ତା'ନହେଲେ ନୂଆ ବହିଗୁଡାକ ଫୁଟପାଥବାଲା କାହିଁକି ଆଣିଥାନ୍ତା । ମୋ ମନ କୁଣ୍ଢେ ମୋଟ ହୋଇଗଲା । ବାପାଙ୍କ ପାଇଁ ପୁଣି ଆଜି ଗର୍ବ ଅନୁଭବ କଲି ।

ସେତେବେଳକୁ ସେ ଛାତ୍ରଜଣକ ଚାଲିଗଲାଣି । ତେବେ ମୋଟାମୋଟି ସେ ଯେଉଁ ଅଞ୍ଚଳଟି କଥା କହିଲା ମୁଁ ବୁଝିପାରିଥିଲି । ତେଣୁ ନିଜେ ଗାଡ଼ି ଧରି ବାହାରିଗଲି । ସେଠି ପହଞ୍ଚି ଦେଖିଲି ସତକୁ ସତ ବାପାଙ୍କ ଜୀବନୀ ଅନ୍ୟ ସବୁ ବହି ଭିତରେ ସଜା ହୋଇ ରହିଛି । ମୁଁ ତାକୁ ଗାଡ଼ି ଭିତରେ ବସି ଦୁଇଖଣ୍ଡ ବହିର ଦାମ ପଚାରି ତାକୁ ଟଙ୍କାଟା ବଢ଼ାଇଦେଇ ବହି ଦୁଇଟି ଆଣି ଗାଡ଼ି ଚଲାଇ ଘରକୁ ଫେରିଆସିଲି । ମୋର ବହ କିଣିବାର ଉଦ୍ଦେଶ୍ୟ ଥିଲା ଫୁଟପାଥବାଲା ଅନ୍ତତଃ ବୁଝୁ ଯେ ଏ ବହିର ଚାହିଦା କେତେ ଅଛି ।

ଘରେ ପହଞ୍ଚି ବହି ଦୁଇଟିକୁ ଥାକରେ ରଖିଦେବା ପୂର୍ବରୁ ଦୈବାତ୍ ପ୍ରଥମ ପୃଷ୍ଠାଟି ଓଲଟାଇ ଦେଇ ଚମକି ପଡ଼ିଲି । ସେଠି କଣ ସବୁ ହାତରେ ଲେଖାଯାଇଛି । ମୁଁ ତରତର ହୋଇ ଚଷମାଟା ଲଗାଇ ଲେଖାଟିକୁ ଦେଖୁ ଦେଖୁ ନିଜ ଅକ୍ଷରକୁ ଚିହ୍ନିପାରି ପୁଣି ଥରେ ଚମକି ଗଲି ।

ଏଥର ଲେଖାପଢ଼ିବାର ପାଳି । ପ୍ରଥମ ସାଦା ପୃଷ୍ଠାରେ ମୋ ହାତ ଅକ୍ଷରରେ ଲେଖାଅଛି, "ଆମ ସାହିତ୍ୟର ପ୍ରଥିତଯଶା ସାରସ୍ୱତ ସାଧକ କବି ଶ୍ରୀରଘୁନନ୍ଦନ ଦାସଙ୍କୁ ଗଭୀର ଶ୍ରଦ୍ଧା ଓ ସମ୍ମାନ ସହ – ଶୁଭଦା ।"

ମୁଁ ଗୁମ୍ ମାରି ବସିଗଲି । ମୁଁ କେତେ ଆଗ୍ରହରେ କବି ରଘୁନନ୍ଦନଙ୍କ ଘରକୁ ଯାଇ ବହିଖଣ୍ଡିକ ଦେବାବେଳେ ସେ କେତେ ଖୁସି ହୋଇଥିଲେ ମନେ ପକାଇଲି । ଝିଅଟିଏ ତା ବାପାର ସ୍ମୃତି ପ୍ରତି କେତେ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇ ଜୀବନୀଟିଏ ଲେଖିଛି ବୋଲି ତାଙ୍କ ସ୍ତ୍ରୀଙ୍କୁ ଡାକି କହିଥିଲେ । ଏମିତି ଝିଅଟିଏ ତାଙ୍କୁ କାହିଁକି ଭଗବାନ ଦେଲେ ନି ବୋଲି ଟିକେ ଦୁଃଖ ବି ପ୍ରକାଶ କରିଥିଲେ । ଏ ବହିଟିକୁ ସାଇତି ରଖିବା କଥା ବୋଲି ମଧ୍ୟ ଜୋର୍ ଦେଇଥିଲେ । ଅଥଚ ପନ୍ଦରଦିନ ନ ଯାଉଣୁ ବହିଟାକୁ ଏମିତି ଭାବରେ ଫୋପାଡ଼ି ଦେଲେ !

ଭାରି କାନ୍ଦ ମାଡ଼ିଲା । ଭାବିଲି ହଁ ଜଣକୁ ବହିଟା ଭଲ ନ ଲାଗିଲେ ବା ଘରେ ଅଧିକ ବହି ହୋଇଗଲେ ତାକୁ ଅନ୍ୟ କାହାକୁ ଦେଇଦେବା ବେଳେ ବା ଖବର କାଗଜବାଲାକୁ ବିକିଦେବା ବେଳେ ଅନ୍ତତଃ ତାଙ୍କୁ ଉତ୍ସର୍ଗ କରାଯାଇଥିବା ପୃଷ୍ଠାଟିକୁ ଚିରିଦେବା ଉଚିତ ହୁଅନ୍ତା ।

ଏମାନେ ସାହିତ୍ୟିକ, କବି ହୋଇଛନ୍ତି ଏତିକି ସଂବେଦନଶୀଳତା କ'ଣ ନାହିଁ ! ଯେତେ ଛୋଟିଆ ଲେଖକଟିଏ ହେଉ ପଛେ ନିଜ ସୃଷ୍ଟିକୁ ନେଇ କେତେ ଭାବପ୍ରବଣ ଥାଏ ! ବଡ଼ ବଡ଼ ସାହିତ୍ୟିକଙ୍କୁ ବହିଟିଏ ଦେଇ କୃତକୃତ୍ୟ ହୋଇଯାଏ । ଯଦି ଫୁଟପାଥର ବହିମେଳାରେ ନିଜ ହାତଲେଖା ଉତ୍ସର୍ଗପତ୍ର ସହ ବହିଟି ଦେଖେ, ତେବେ ତା' ମନରେ ଅବସ୍ଥା କ'ଣ ହୁଏ !

ଆଉ ବହିଖଣ୍ଡିକ କେଉଁ କବି ସାହିତ୍ୟିକଙ୍କ ପାଖରୁ ପୁରୁଣା କାଗଜବାଲା ଦେଇ ଫୁଟପାଥକୁ ଯାଉଛି ମୋର ଆଉ ଜାଣିବାକୁ ଇଚ୍ଛା ହେଲାନି । ଘରେ କାଳେ କେହି ଦେଖିଦେବ ବୋଲି ନିଜେ କିଛି ଚୋରି କରିଥିବା ପରି ମୁଁ ବହି ଦୁଇଟିକୁ ମୋର ବହିଥାକର ପଛପଟେ ଲୁଚାଇ ଦେଇଥିଲି ।



# ଜୀବନ ଜଳଧି

ଏଇମାତ୍ର କିଛିଦିନ ତଳେ ସକାଳବେଳା ଝଙ୍କାଳିଆ ଗଙ୍ଗଶିଉଳି ଗଛମୂଳରେ ଦୁଇଟି ଚୌକୀ ପକାଇ ବସୁଥିଲେ ଦୁହେଁ । ଚାରିକଡ଼ରେ ଝରା ଗଙ୍ଗଶିଉଳି ଫୁଲର ବହଳ ଆସ୍ତରଣ ।

ନିତିଦିନ ଫୁଟୁଥିବା ଟଗର, କନିଅର ଓ ମନ୍ଦାର ଫୁଲର ପ୍ରାଚୁର୍ଯ୍ୟରେ ଭରପୂର ଛୋଟ ବଗିଚାଟି । ବେଶ୍ କେତୋଟି କୁଣ୍ଡରେ ଯତ୍ନରେ ବଢ଼ାଯାଇଥିବା ଜଣାଅଜଣା ଫୁଲର ସୁଗନ୍ଧି ଓ ବର୍ଣ୍ଣଳତା ବାରବାର ତା'ରି ଦିଗରେ ଦୃଷ୍ଟି ଆକର୍ଷିତ କରିନେଉଥାଏ ।

ଗଛ ଡାଳରେ ଏପଟ ସେପଟ ହୋଇ ଉଡ଼ିବୁଲୁଥିବା ପକ୍ଷୀ ଓ ବିଚିତ୍ରବର୍ଣ୍ଣା ପ୍ରଜାପତିଙ୍କର ଫୁଲସହିତ ଖେଳ ଦୁହେଁ ମନଭରି ଉପଭୋଗ କରୁଥିଲେ ।

ସୁଧାଂଶୁଙ୍କ ସହିତ ଅଲିଭାଙ୍କର ବିବାହ ଏଭିତରେ ତିନିବର୍ଷ ବିତିଯାଇଥିଲା । କିନ୍ତୁ ପରସ୍ପର ପ୍ରତି ପ୍ରଗାଢ଼ ଆକର୍ଷଣ ଟିକିଏ ବି ଊଣା ପଡ଼ିନଥିଲା । ମାନ ଅଭିମାନ ବେଳେ ବେଳେ ସ୍ୱାଭାବିକ ଭାବରେ ପ୍ରକାଶ ପାଇଲେ ବି ତା'ର ସ୍ଥାୟିତ୍ୱ ମାତ୍ର ରହୁଥିଲା କେତୋଟି ମୁହୂର୍ତ୍ତ । ପଦଟିଏ ମିଠା କଥାରେ, ଟିକିଏ ଦୁଷ୍ଟାମିରେ ଅପସରି ଯାଉଥିଲା ପୋଥିଏ ଅନୁଯୋଗ ।

ସ୍ୱାମୀ ସୁଧାଂଶୁଙ୍କ ସହିତ ସକାଳର ଏତିକିମାତ୍ର ସମୟ ନିଶ୍ଚିନ୍ତରେ ଏକାଠି କଟାଇବାର ସୁଯୋଗ ମିଳେ ଅଲିଭାଙ୍କୁ । ତେଣିକି ଆରମ୍ଭ ହୋଇଯାଏ ନିତିଦିନିଆ ଜୀବନର ଧରାବନ୍ଧା କାମର ଜଞ୍ଜାଳ । ସୁଧାଂଶୁଙ୍କର ଅଫିସରୁ ଫେରୁ ଫେରୁ ସଂଜ ଓ କେଉଁ ଦିନ ରାତି । ଘରକୁ ଫେରନ୍ତି ଅନେକ କ୍ଲାନ୍ତି ନେଇ । ଟିକେ ଫ୍ରେଶ୍ ହେବାପରେ ଟିଭିରେ କେବଳ ନିଉଜ ଚ୍ୟାନେଲ କେତୋଟିକୁ ଏପଟସେପଟ କରିଦେଖନ୍ତି । ତା'ପରେ ଖାଇବା ପିଇବା ସାରି ଶୋଇବାକୁ ବାହାରନ୍ତି । ଅଲିଭାଙ୍କୁ ଆଉ ବାହାରେ ରହି କିଛି ସମୟପାଇଁ ମଧ୍ୟ କାମ କରିବାକୁ ଦିଅନ୍ତିନାହିଁ ।

ସକାଳେ ତାଙ୍କର ମୁଡ୍ ଖୁବ୍ ଭଲଥାଏ । ଏକାଠି ବସି ଚା' ପିଉପିଉ କିଛି ଅର୍ଥହୀନ କଥା ହେଉ ପଛେ ପରସ୍ପରର ସାନ୍ନିଧ୍ୟ ଦୁହିଁଙ୍କ ପାଇଁ ଖୁବ୍ ଆନନ୍ଦକର ହୋଇଥାଏ ।

କିନ୍ତୁ ଅଲିଭା ପରିପୂର୍ଣ୍ଣ ଖୁସିର ଅନୁଭବ ପାଇପାରନ୍ତି ନାହିଁ । ଯେତେ ବାରଣ କଲେ ବି ସୁଧାଂଶୁ ଗୋଟାଏ ପରେ ଗୋଟାଏ ସିଗାରେଟ ଟାଣିଚାଲନ୍ତି ଚା'କପ ହାତରେ ଧରି । ବିଭିନ୍ନ ପ୍ରକାରେ ପ୍ରସ୍ତୁତ ହେଇଥିବା ତିନି ଚାରି କପ୍ ଚା' ପାନ ଭିତରେ ସେ ଆଠ ଦଶଟି ସିଗାରେଟ ଟାଣିଥାନ୍ତି । ଅଲିଭା ବୁଝିପାରନ୍ତିନି ଏତେ ସୁନ୍ଦର ଶାନ୍ତ ନୀରବ ସକାଳବେଳାରେ ସୁଧାଂଶୁ ଏତେ ଧୂମପାନ କରନ୍ତି କାହିଁକି !

କାହିଁକି ପୁଷ୍ପର ସୁଗନ୍ଧିରେ ସୁରଭିତ ପରିବେଶକୁ ତମାଖୁ ବାସ୍ନାରେ ନଷ୍ଟ କରିଦିଅନ୍ତି !

କାହିଁକି ସିଗାରେଟ ଧୂଆଁରେ ଧୂମାଛନ୍ନ କରିଦିଅନ୍ତି ସକାଳର ସ୍ୱଚ୍ଛ ପରିଚ୍ଛନ୍ନତାକୁ !

ଏଇ ଗୋଟିଏ କଥାରେ ଅଲିଭାଙ୍କର ବାରଣ ସେ ମାନିପାରନ୍ତି ନାହିଁ ।

କିଛି ସମୟ ପରେ ଖବରକାଗଜ ଆସିଗଲେ ତାଙ୍କର ଗପସପ ବନ୍ଦ ହୋଇଯାଏ । ଦୁହେଁ ଦୁଇଟି କାଗଜ ଧରି ପୃଷ୍ଠା ଉପରେ ଦୃଷ୍ଟି ନିବଦ୍ଧ କରନ୍ତି । କିନ୍ତୁ ସେଇ ଭିତରେ ଅଲିଭାଙ୍କୁ ବାରମ୍ବାର ଭିତରକୁ ଉଠିଆସିବାକୁ ପଡ଼େ, ଚା' ତିଆରି କରିବାପାଇଁ । ତିଆରି ହୋଇ ରହିଥିବା ଚା' ସୁଧାଂଶୁ ପିଅନ୍ତି ନାହିଁ । ତା'ଛଡ଼ା ପର୍ଯ୍ୟାୟକ୍ରମରେ ସ୍ୱତନ୍ତ୍ର ଭାବରେ ପ୍ରସ୍ତୁତ ହୁଏ, ଲେମନ୍ ଟି, ଗ୍ରୀନ୍ ଟି, ଅଦା ଗୋଲମରିଚ ପଡ଼ିଥିବା ଚା ଓ ଶେଷ କପ୍‌ଟି ଭଲକରି ସିଝିଥିବା କ୍ଷୀରରେ ପ୍ରସ୍ତୁତ ଚା ।

ସେଦିନ ଅଲିଭା ପଢୁଥିବା କାଗଜଟିକୁ ରଖିଦେଇ ଶେଷ କପ୍ ଚା'ର ପ୍ରସ୍ତୁତି ପାଇଁ ଭିତରକୁ ଉଠିଯାଇଥିଲେ । ଘର ଓଳାପୋଛା ଓ ବାସନମଜା ପାଇଁ ଠିକା ଚାକରାଣୀଟି

ବ୍ୟତୀତ ସେ ଅନ୍ୟ କାମପାଇଁ କାହାଉପରେ ନିର୍ଭର କରନ୍ତି ନାହିଁ । ଦୁଇଜଣତ ମଣିଷ । ଜଣେ କେବଳ ସାଧାରଣ କିଛି ଜଳଖିଆ ଖାଇ ଯାଆନ୍ତି ପୁଣି ରାତି । ତେଣୁ ଅଲିଭା ମଧ୍ୟ ମଧ୍ୟାହ୍ନରେ ନିଜପାଇଁ କିଛି ରାନ୍ଧନ୍ତି ନାହିଁ । ରାତିରେ ସୁଧାଂଶୁଙ୍କ ପାଇଁ ଅତି ଯତ୍ନରେ ପ୍ରସ୍ତୁତ କରୁଥିବା ଖାଦ୍ୟର ବଳକା ରହିଯାଇଥାଏ ଫ୍ରିଜ୍‌ରେ । ସେଇଥିରେ ତାଙ୍କର ଦିନବେଳାଟା ଚଳିଯାଏ ।

କିଛିସମୟ ଟି.ଭି. ଦେଖାରେ ଓ ବହୁତ ସମୟ ଆଲମିରା ଭର୍ତ୍ତି ବହିରୁ ଖଣ୍ଡେ ଖଣ୍ଡେ ଆଣି ପଢ଼ିବା ଭିତରେ ଅଲିଭାଙ୍କର ସମୟ କେତେବେଳେ କଟିଯାଏ । ସନ୍ଧ୍ୟାରେ ରୋଷେଇ ଘରୁ ବାରମ୍ବାର ବାହାରି ଦାଣ୍ଡଫାଟକ ଉପରେ ଆଖିବୁଲାଇ ନିଅନ୍ତି ସୁଧାଂଶୁଙ୍କର ଗାଡ଼ି ଆସିଲାକି ! ତିନିବର୍ଷ ବିତିଗଲାଣି ବିବାହର । ପିଲାଛୁଆ ନଥିବାର ସଂସାର ଏପର୍ଯ୍ୟନ୍ତ ତାଙ୍କୁ ବିମର୍ଷ କରିପାରିନାହିଁ ।

ସୁଧାଂଶୁଙ୍କୁ ଗଭୀର ଭଲପାଇବା ଭିତରେ ଅଲିଭା ଅନ୍ୟକିଛିର ଅଭାବ ଏପର୍ଯ୍ୟନ୍ତ ଅନୁଭବ କରିପାରିନାହାନ୍ତି । ସୁଧାଂଶୁ ମଧ୍ୟ କୌଣସି ଆଗ୍ରହ ପ୍ରକାଶ କରିନାହାନ୍ତି ସନ୍ତାନ ପାଇଁ । ପରିବାରରେ ବଡ଼ମାନେ ସେ ବିଷୟରେ କିଛି କହିଲେ ସେ ହସିଦେଇ କୁହନ୍ତି "କିଛି ବିଳମ୍ବିତ ହୋଇନି । ପାଞ୍ଚସାତ ଜନ୍ମ କରିବାର ଥିଲେ ସିନା ଅସୁବିଧା ହୁଅନ୍ତା । ଗୋଟିଏ ତ ଛୁଆ ହେବା ଦରକାର । ଆଉ କିଛିଦିନ ଯାଉ । ଏବେ ଆମେ ଦି'ଜଣ କେବଳ ପରସ୍ପରକୁ ନେଇ ଜୀବନଟିଏ ବଞ୍ଚୁନା । ପିଲା ପାଇଁ ଏତେ ବ୍ୟସ୍ତହେବାର କ'ଣ ଅଛି ।"

ଅଲିଭା ସୁଧାଂଶୁଙ୍କ କଥା ମନେପକାଇ ହସୁଥିଲେ । ସିଝିସିଝି ବହଳିଆ ହୋଇଥିବା କ୍ଷୀରର ଚା' କପେ ପିଇଲେ ସୁଧାଂଶୁ ଖୁସିରେ ଉଠି ବାହାରୁ ଭିତରକୁ ଆସିବେ । ତେଣିକି ନିତ୍ୟକର୍ମ ସାରି ଅଫିସ ଯିବାର ପ୍ରସ୍ତୁତି ଚାଲିବ ।

ସେଦିନ ବାମ୍ଫ ବାହାରୁଥିବା ଦୁଇକପ୍ ଗରମ ଚା ଟ୍ରେରେ ସଜାଡ଼ି ଅଲିଭା ବାହାରେ ବସିଥିବା ସୁଧାଂଶୁଙ୍କ ପାଖକୁ ଆସିଲେ । ଖବରକାଗଜ ଧରି ଚୌକୀର ଗୋଟେ କଡ଼କୁ ଢଳିବା ପରି ହୋଇ ବସିଥିବା ସୁଧାଂଶୁଙ୍କ ଉଦ୍ଦେଶ୍ୟରେ କହିଲେ "କ'ଣ ଶୋଇପଡ଼ିଲ କି ? ଚା ନିଅ ।"

କୌଣସି ଉତ୍ତର ନାହିଁ ।

ଅଲିଭା ଚା' ଟ୍ରେଟି ଟିପୟ ଉପରେ ରଖି ସୁଧାଂଶୁଙ୍କ ହାତରୁ ଖବରକାଗଜଟା ଟାଣିନେଇ କହିଲେ "କ'ଣ ଏମିତି ଚୁପ୍ ହୋଇ ବସିଛ ଯେ !"

କିନ୍ତୁ ସୁଧାଂଶୁଙ୍କର କୌଣସି ପ୍ରତିକ୍ରିୟା ନଦେଖି ମଧ୍ୟ ସେ ଆଦୌ ବିଚଳିତ ହେଲେନି । କାରଣ କୌଣସି ଅଘଟଣର ଆଶଙ୍କା ତାଙ୍କ ମନକୁ ଛୁଇଁନଥିଲା । ସେ ଓଲଟି ହସିହସି କହିଲେ, "ଯଦି ସତରେ ନିଦ ମାଡୁଛି ଆଜି ଦିନଟା ଛୁଟି ନେଇଯାଇ ବିଶ୍ରାମ ନିଅ । ଏଇ ସକାଳଟାରୁ ଶୋଉଛୁ କ'ଣ ମ !"

କିନ୍ତୁ ହଠାତ୍ ଅଲିଭାଙ୍କ ଆଖିରେ ପଡ଼ିଲା ସୁଧାଂଶୁଙ୍କର ଡାହାଣ ହାତର ଦୁଇ ଆଙ୍ଗୁଠି ମଝିରେ ରହିଥିବା ସିଗାରେଟ୍‌ର ଶେଷ ଅଂଶ ଜଳିଜଳି ତାଙ୍କ ଆଙ୍ଗୁଠିରେ ଲାଗିଗଲାଣି ।

ଏଥର ଏକ ଭୟଙ୍କର ଆତଙ୍କ ନିମିଷକ ମଧ୍ୟରେ ଗ୍ରାସିଗଲା ତାଙ୍କର ସମଗ୍ର ସତ୍ତାକୁ । ଶବ୍ଦଟିଏ ବି କଣ୍ଠରୁ ସ୍ଫୁରିଲାନାହିଁ । କେଇଟି ମୁହୂର୍ତ୍ତ ସେ ସ୍ତବ୍ଧ ହୋଇ ରହିଗଲେ । କିନ୍ତୁ କିଛି ସମୟ ପରେ ସେ ନିଜକୁ ସଂବରଣ କରିନେଇ ସୁଧାଂଶୁଙ୍କୁ ହଲାଇଦେଇ କହିଲେ, "କ'ଣ ହେଲା ତୁମର ? ଏମିତି ଚୁପ୍ ହୋଇ କାହିଁକି ବସିଛ ?"

ବିନା ଶବ୍ଦରେ ଢ଼ଳି ପଡ଼ିଥିବା ସୁଧାଂଶୁଙ୍କର ଶରୀର ମାଟି ଉପରେ ଚୌକୀ ସହିତେ ଗଳିପଡ଼ିଥିଲା ।

ଅଲିଭା ବୁଝିପାରିଥିଲେ ଯେ, ନିଶ୍ଚୟ ସୁଧାଂଶୁଙ୍କର ହୃଦ୍‌ଘାତ ହୋଇଛି । ସେହି ମୁହୂର୍ତ୍ତରେ ତାଙ୍କୁ ହସ୍‌ପିଟାଲକୁ ନେଇଯିବା ଆବଶ୍ୟକ । କିନ୍ତୁ କାହାକୁ ଡାକିବେ, କ'ଣ କରିବେ ସେ କିଛି ବି ବୁଝିପାରୁନଥିଲେ । ଏଇ ମାତ୍ର କିଛି ମାସ ତଳେ ଭୁବନେଶ୍ୱରର ଉପାନ୍ତ ଅଞ୍ଚଳରେ ଥିବା ଘରଟିଏ ଭଡ଼ାନେଇ ରହୁଥିଲେ ସେମାନେ । କୌଣସି ସାଇପଡ଼ିଶାଙ୍କୁ ଜାଣନ୍ତି ନାହିଁ ସେ । ଘରେ ଗାଡ଼ି ଅଛି କିନ୍ତୁ ସେତ ଚଲାଇ ଜାଣନ୍ତି ନାହିଁ । ବାରମ୍ବାର ସୁଧାଂଶୁ ତାଙ୍କୁ ଗାଡ଼ି ଚଲାଇବା ଶିଖିବାପାଇଁ କହିଥିଲେ । କିନ୍ତୁ ଅଲିଭା ଡ୍ରାଇଭିଙ୍ଗ ସିଟ୍‌ରେ ବସିବାକୁ ପ୍ରସ୍ତୁତ ହେଲେନାହିଁ । ସେ ଧରି ନେଇଥିଲେ ଯେ ସେ ସବୁବେଳେ ସୁଧାଂଶୁଙ୍କ ବାଁପଟ ସିଟ୍‌ରେ ହିଁ ବସିବେ । ଏମିତି ଏକ ସମୟ ଯେ ଆସିପାରେ ଏକଥା ତାଙ୍କ ମନକୁ କେବେ ବି ଆସିନଥିଲା ।

କୌଣସି ପ୍ରକାରେ ଶ୍ୱଶୁର ଘରକୁ ଫୋନ କଲେ ଅଲିଭା । ସୁଧାଂଶୁଙ୍କର ଚିହ୍ନାଜଣାଙ୍କର ନମ୍ବର ଖୋଜିବାକୁ ଚେଷ୍ଟାକରି ସେ ତାଙ୍କ ମୋବାଇଲଟିକୁ ଖୋଜି ଲାଗିଲେ । ତା'ନହେଲେ କୋଉଠୁ ବା ପାଇବେ ନମ୍ବର ! ଘର ଭିତରେ କୋଉଠି ରହିଯାଇଥିବ ଭାବି ସେ ନିଜ ମୋବାଇଲରୁ ସୁଧାଂଶୁଙ୍କ ନମ୍ବରକୁ ବାରମ୍ବାର ଡାଏଲ କରୁଥିଲେ । ଏକା ଉତ୍ତର ଅପହଞ୍ଚ ଦୂରତାରେ ଅଛି । ସବୁ ଦିଗରୁ ନିରାଶ ହୋଇ ସେ କେବଳ ସୁଧାଂଶୁଙ୍କ

ମୁହଁରେ ପାଣି ଛିଂଚି ଖବର କାଗଜରେ ବିଞ୍ଚି ଚାଲିଥିଲେ । କୌଣସି ଡାକ୍ତରଙ୍କୁ ଡାକିବା କଥା ତାଙ୍କର ମନେପଡୁନଥିଲା ।

ସେଇ ମାଟି ଉପରେ ଅବାଗିଆ ଅବସ୍ଥାରେ ଲୋଟୁଥିଲା ସୁଧାଂଶୁଙ୍କର ନିଶ୍ଚଳ ହୃଷ୍ଟପୁଷ୍ଟ ତରୁଣ ଶରୀର । ତାକୁ ଟେକିଆଣି ଅନ୍ତତଃ ଖଣ୍ଡେ ଚାଦର ଉପରେ ଶୁଆଇଦେବାର ସାମର୍ଥ୍ୟ ତାଙ୍କର ନଥିଲା ।

ତାଙ୍କ ଘରଲୋକେ ବିଭିନ୍ନ ଚିହ୍ନାଜଣାଙ୍କୁ ଫୋନ କରି ଜଣାଇଲେ ବି ପ୍ରଥମ ଆତ୍ମୀୟ ଜଣକ ସହାୟତା ପାଇଁ ପହଞ୍ଚିବା ବେଳକୁ ବେଶ୍ ସମୟ ହୋଇଯାଇଥିଲା । ସୁଧାଂଶୁଙ୍କର ଶରୀରର ଉଷ୍ମତା ଅନୁଭବ କରି ଅଲିଭା ଆଶା କରୁଥିଲେ ଚିକିତ୍ସା ହେଲେ ସେ ବଞ୍ଚିଯିବେ । କିନ୍ତୁ ଆତ୍ମୀୟ ଜଣକ ବୁଝିସାରିଥିଲେ ଯେ ସୁଧାଂଶୁ ଆଉ ନାହାନ୍ତି । ସକାଳର ସୂର୍ଯ୍ୟ ଉପରକୁ ଉଠି ଆସିଲେଣି । ମାଟି ଉପରେ ଓଜାଡ଼ି ହୋଇପଡୁଥିବା ଖରା ହିଁ ସୁଧାଂଶୁଙ୍କୁ ଉଷ୍ମ କରି ରଖିଛି ।

ପ୍ରଥମ ହୃଦ୍‌ଘାତରେ ବତିଶ ବର୍ଷର ଯୁବକ ସୁଧାଂଶୁଙ୍କ ଜୀବନରେ ଶେଷ ଯବନିକା ପଡ଼ିଯାଇଥିଲା ।

ଯଥାରୀତି ସମ୍ପନ୍ନ ହେଲା ସୁଧାଂଶୁଙ୍କର ଶୁଦ୍ଧିକ୍ରିୟା । ଅଲିଭାଙ୍କର ଶାଶୂଶ୍ୱଶୁର ଥରଟିଏ ପାଇଁ ବି ବୋହୂ ସହିତ କଥା ହୋଇନଥିଲେ । କାର୍ଯ୍ୟ ସରିବା ପରେ ଅଲିଭା ମଧ୍ୟ କାହାରି କଥା ନଶୁଣି ଫେରି ଆସିଥିଲେ ତାଙ୍କର ସାଥି ପକ୍ଷୀଟି ଉଡ଼ିଯାଇଥିବା ଶୂନ୍ୟ ନୀଡ଼କୁ ।

ଅନିଶ୍ଚିତ ଭବିଷ୍ୟତ ତାଙ୍କୁ ଚିନ୍ତିତ କରୁନଥିଲା । ଚଳିବା ପାଇଁ ଅର୍ଥର ଆବଶ୍ୟକତା କଥା ମଧ୍ୟ ସେ ଚିନ୍ତା କରୁନଥିଲେ । ସେ କେବଳ ଚାହୁଁଥିଲେ ତାଙ୍କର ସେଇ ବିପର୍ଯ୍ୟସ୍ତ ବର୍ତ୍ତମାନ ମଧ୍ୟରେ ବଞ୍ଚିରହିବା ପାଇଁ । ଶୋଇବା ଘରର ଖଟ ଉପରେ ଶୂନ୍ୟ ହୋଇଯାଇଥିବା ଅଂଶକୁ ସେ ନିଜ ବାହୁରେ ଆବୋରି ଧରୁଥିଲେ ନିବିଡ଼ ଭାବରେ । ସୁଧାଂଶୁଙ୍କର ପ୍ରତିଟି ବ୍ୟବହୃତ ଜିନିଷକୁ ସେ ଆଦରରେ ସାଇତି ରଖୁଥିଲେ । ସୁଧାଂଶୁ ପିନ୍ଧୁଥିବା ପୋଷାକପତ୍ରରେ ଏବେ ବି କୋଉଠି କେମିତି ରହିଯାଇଥିବା ତାଙ୍କ ଶରୀରର ଗନ୍ଧକୁ ସେ ମନଭରି ଆଘ୍ରାଣ କରୁଥିଲେ । ଫଟୋରେ ଦିଶୁଥିବା ସୁଧାଂଶୁଙ୍କ ସହିତ ସେ କଥା ହେଉଥିଲେ । ଫଟୋ ଆଲବମରେ ଥିବା ଫଟୋଗୁଡ଼ିକ ଦେଖୁ ଦେଖୁ କେତେବେଳେ ଓ କୋଉଠି ସେସବୁ ଉଠିଥିଲା, ସେ ସମୟରେ ସୁଧାଂଶୁ କ'ଣ କହିଥିଲେ ମନେପକାଇ ଅଲିଭା ଆପେଆପେ ହସୁଥିଲେ ତ ପୁଣି କାନ୍ଦୁଥିଲେ ।

ତାଙ୍କର ସେ ନିର୍ଜନବାସକୁ କେହି ନଆସନ୍ତୁ ବୋଲି ସେ ଫାଟକରେ ତାଲା ପକାଇ ଦେଇଥିଲେ । ଝରକା ସବୁ ବନ୍ଦ ରହୁଥିଲା । ତା'ଛଡ଼ା କିଏ ବା କାହିଁକି ଆସିବ, ପିଲାଦିନୁ ତ ବାପା ମା ନଥିଲେ । ଏକମାତ୍ର ଭାଇ ତାଙ୍କର ବାହାଘର କରିଦେଇ ଫେରିଯାଇଥିଲେ ଆମେରିକା । ସୁଧାଂଶୁଙ୍କର ମୃତ୍ୟୁଖବର ପାଇ ମଧ୍ୟ ସେ ବିଶେଷ ଅସୁବିଧାରୁ ଆସି ପାରିନଥିଲେ । ଶାଶୂ ଶ୍ୱଶୁର ସୁଧାଂଶୁଙ୍କର ସମସ୍ତ ବ୍ୟାଙ୍କ ଆକାଉଣ୍ଟରେ ନମିନି ଥିଲେ । ଅଳିଭାଙ୍କର ଆବଶ୍ୟକତା ସେମାନଙ୍କ ପାଇଁ ତୁଟି ଯାଇଥିଲା । ହୁଏତ ଅଳିଭା ଚାହିଁଥିଲେ ସେମାନେ ତାଙ୍କୁ ଘରେ ରହିବାକୁ ମନା କରିନଥାନ୍ତେ ! କିନ୍ତୁ ନିଜ ତରଫରୁ ବୋହୂକୁ ସେକଥା କହିଲେ ନାହିଁ । ନିଜ ପୁଅକୁ ହରାଇଥିବା କଷ୍ଟ ଯେତେ ହେଲେ ବି ବୋହୂକୁ ପଦଟିଏ ସାନ୍ତ୍ୱନା କ'ଣ ଦେଇପାରିନଥାନ୍ତେ । ଅସହାୟ ହୋଇ ଯାଇଥିବା ଝିଅଟାକୁ କ'ଣ ଟିକେ କୋଳକୁ ଆଉଜାଇ ନେଇପାରିନଥାନ୍ତେ । ତଥାପି ସେମାନଙ୍କର ଏ ସମୟରେ ଏପରି ଉପେକ୍ଷା ମଧ ଅଳିଭାଙ୍କୁ ବିବ୍ରତ କଲାନାହିଁ ।

କାରଣ ସେ କାହା ନିକଟରୁ କୌଣସି ସାନ୍ତ୍ୱନା ଲୋଡୁନଥିଲେ । ତେଣୁ କାହାପାଇଁ ତାଙ୍କ ମନରେ କୌଣସି ଅନୁଯୋଗ ସୃଷ୍ଟି ହେଉନଥିଲା । ସୁଧାଂଶୁଙ୍କୁ ହରାଇବାର ଦୁଃଖ ତାଙ୍କର ମନପ୍ରାଣକୁ ଏପରି ଭାବରେ ଆକ୍ରାନ୍ତ କରି ରହିଥିଲା ଯେ ସେ ଅନ୍ୟ କିଛି ପ୍ରତିକ୍ରିୟା ପ୍ରକାଶ କରିବାକୁ ସମର୍ଥ ନଥିଲେ । ଘରର ଫୋନ ଲାଇନ କାଟି ଦେଇଥିଲେ ସେ । ସେ ଚାହୁଁନଥିଲେ ଅନ୍ୟ କାହାରି ସ୍ୱର ଶୁଣିବା ପାଇଁ ବା ପଦଟିଏ କଥା ନିଜ ତରଫରୁ କହିବାପାଇଁ ।

ସମ୍ପୂର୍ଣ୍ଣ ଆତ୍ମନିର୍ବାସନ ଭିତରେ ଅଳିଭାଙ୍କର କେତେଦିନ କଟିଯାଇଥିଲା ସେ ହିସାବ ତାଙ୍କ ପାଖରେ ନଥିଲା ।

ଅଦୂରରେ ଥିବା ଘର ଗୁଡ଼ିକର ଲୋକେ କେହି ତାଙ୍କର ପରିଚିତ ନଥିଲେ; କିନ୍ତୁ ସେ ବନ୍ଦ ଘର ଭିତରେ ରହୁଥିବା ଅଳିଭା ମୃତ କି ଜୀବିତ ଜାଣିବାର କୌତୂହଳ ହୁଏତ ସେମାନଙ୍କର ସ୍ୱାଭାବିକ ଥିଲା । ସେପରି କିଛି ଅଘଟଣ ଘଟିଲେ ଅନ୍ତତଃ ପୋଲିସକୁ ଖବର ଦେବାକୁ ତ ପଡ଼ିବ । ସେଥିପାଇଁ ବେଳେବେଳେ କେହି ହୁଏତ ଫାଟକ ପାଖରେ ଉଙ୍କି ମାରୁଥିଲେ । ଏବେ ଗେଟ୍ ପାଖରେ ସେମିତି ପଡ଼ି ରହୁଥିବା ଖବର କାଗଜ ଦେଖିବା ପରେ ହକର ଆଉ କାଗଜ ପକାଉ ନଥିଲା । ଠିକା ଚାକରାଣୀ ମଧ୍ୟ ଆସିବା ବନ୍ଦ କରିଦେଇଥିଲା ।

ଦର୍ପଣ ଉପରେ ଭୁଲରେ ଆଖି ପଡ଼ିଗଲେ ଅଲିଭା ଅନ୍ୟ କେହି ଜଣେ ଘର ଭିତରକୁ ପଶିଆସିଛି ଭାବି ଚମକି ପଡୁଥିଲେ । ସେ ନିଜେ ଆଉ ନିଜକୁ ଚିହ୍ନି ପାରୁନଥିଲେ । ଖାଦ୍ୟାଭାବରେ ଶରୀର ଶୀର୍ଣ୍ଣ ହୋଇଯାଇଥିଲା । ଦେହର ତୋଫା ଗୋରା ରଙ୍ଗ ମଳିନ ପଡ଼ିଯାଇଥିଲା, ଆଖି ଦୁଇଟିର ଚାରିପାଖରେ କଳାରଂଗ ଯେମିତି ନେସିହୋଇ ଯାଇଥିଲା । ଦୀର୍ଘଦିନ ଧରି ପାନିଆ ବାଜିନଥିବା ସୁନ୍ଦର ଗହଳା କେଶରାଶି ଜଟରେ ପରିଣତ ହୋଇଯାଇଥିଲା ।

ସତେଇଶ ବର୍ଷର ସୁନ୍ଦରୀ ତରୁଣୀ ଅଲିଭା କେଇଟି ଦିନ ଭିତରେ ସତୁରି ବର୍ଷୀୟା ବୃଦ୍ଧା ପରି ଦିଶୁଥିଲେ । ଅବଶ୍ୟ ତାଙ୍କୁ କେହି ଦେଖିବାର ଅବକାଶ ନଥିଲା । ଫାଟକରେ ପଡ଼ିଥିବା ତାଲା ହୁଏତ କେହି ଆସୁଥିଲେ ବି ତାକୁ ସେଇ ବାହାରୁ ହିଁ ଫେରେଇ ଦେଉଥିଲା ।

ସେ ଅନ୍ୟ କାହାରି କଥା ଭାବୁନଥିଲେ କାହାର ଉପସ୍ଥିତି ଲୋଡୁନଥିଲେ । ସେ କେବଳ ବଞ୍ଚିଥିଲେ ସୁଧାଂଶୁଙ୍କର ସ୍ମୃତି ଭିତରେ ।

କିନ୍ତୁ ପ୍ରତିଦିନ ସକାଳେ ସେ ବସୁଥିବା ଜାଗାରେ ଦୁଇଟି ଚୌକି ପକାଉଥିଲେ, ଦୁଇ କପ୍ ଚା ଯତ୍ନରେ ତିଆରିକରି ଆଣି ସେଇଠି ବସୁଥିଲେ । ଗୋଟିଏ କପ୍ ସରି ସରି ଯାଉଥିଲା, ଅନ୍ୟ କପ୍‌ଟି ସେମିତି ପୂର୍ଣ୍ଣହୋଇ ରହୁଥିଲା । ତାଙ୍କର ମନେ ହେଉଥିଲା ହୁଏତ ହଠାତ୍ ସୁଧାଂଶୁ କୋଉଠୁ ବାହାରିଆସି କହିବେ "ମୋ ଚା'ଟା ଥଣ୍ଡା ହୋଇଗଲା ଯେ !"

ଯେଉଁ ସିଗାରେଟ ଧୂଆଁ ତାଙ୍କର ଅସ୍ୱସ୍ତିର କାରଣ ହେଉଥିଲା ସେଇ ଧୂଆଁର ଗନ୍ଧ ବାରିବାପାଇଁ ସେ ବ୍ୟାକୁଳ ହୋଇଉଠୁଥିଲେ ।

ବିନା ପାଣିରେ କୁଣ୍ଡରେ ଥିବା ଗଛଗୁଡ଼ିକରୁ ପତ୍ର ଝଡ଼ି ସେଗୁଡ଼ିକ ଶୁଖିଲା ଡାଙ୍ଗରେ ପରିଣତ ହୋଇଯାଇଥିଲେ । ନାନା ବର୍ଣ୍ଣର ଫୁଟିଲା ଫୁଲରେ ବର୍ଣ୍ଣିଳ ହୋଇ ଉଠୁଥିବା ପରିବେଶ କେମିତି ବିବର୍ଣ୍ଣ ହୋଇଯାଇଥିଲା । ଚଢ଼େଇଙ୍କର କିଚିରି ମିଚିରି ଶୁଣାଯାଉନଥିଲା କି ସେମାନେ ଆଉ ଡାଳରୁ ଡାଳକୁ ଡେଇଁ ବୁଲୁନଥିଲେ । ରଙ୍ଗ ବେରଙ୍ଗର ପ୍ରଜାପତିମାନେ ବାଟ ଭୁଲି ଯାଇଥିଲେ । ଅଲିଭାଙ୍କର ଆଖି କିଛି ଦେଖିବାକୁ ହୁଏତ ପ୍ରସ୍ତୁତ ନଥିଲା ।

ସେ ଏକ ଜଡ଼ପିଣ୍ଡରେ ପରିଣତ ହୋଇଯାଇଥିଲେ । ଯନ୍ତ୍ରବତ୍ ଚଲାବୁଲା କରୁଥିଲେ । କିନ୍ତୁ ମନର ଭାବନା ସେମିତି ସକ୍ରିୟ ଥିଲା । ସେ ନିଷ୍ପତ୍ତି ନେଇ ସାରିଥିଲେ

ଯେ ଏମିତି ସୁଧାଂଶୁଙ୍କୁ ଝୁରି ଝୁରି ସବୁରି ଅଗୋଚରରେ ସେ ଝରିଯିବେ । ତେଣିକି ସେ ଖବର କାହାପାଖରେ ପହଞ୍ଚୁ ବା ନ ପହଞ୍ଚୁ ।

ସେଦିନ ରାତି ସେପର୍ଯ୍ୟନ୍ତ ପାହିନଥିଲା । ନିଦ କ'ଣ ଭୁଲିଯାଇଥିବା ଅଲିଭା ନିଜର ଦୁର୍ବଳ ଶରୀରକୁ ବାଧ୍ୟକରି ବିଛଣାରୁ ଉଠାଇଲେ । ବାହାର କବାଟ ଖୋଲି ଚୌକୀ ଦୁଇଟିକୁ କୌଣସି ପ୍ରକାରେ ଟେକିନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ପକାଇଲେ । ଆଜି ଟ୍ରେରେ ମାତ୍ର ଗୋଟିଏ କପ୍ ଚା' ଧରି ଆସିଲେ ସେ । ଟିପୟ ଉପରେ ରଖିଲେ ।

ପାଖରେ ବସିଥିବା ମଣିଷକୁ କହିବାପରି କହିଲେ, "ଦେଖ ଚା'ଟା ପି'ନିଅ । ମୋର ଆଉ ଚା' ପିଇବାର ନାହିଁ । ହୁଏତ କାଲିଠାରୁ ମୁଁ ତୁମପାଇଁ ମଧ୍ୟ ଚା' କରିପାରିବିନି ।"

ପରିବେଶ ଶାନ୍ତ ଥିଲା । ନିସ୍ତବ୍ଧ ଥିଲା ସମଗ୍ର ଅଞ୍ଚଳ । ପବନ ରହିରହି ବୋହୁଥିଲା । ରାତିଶେଷର ବାକି ଥିବା ଅନ୍ଧାର ଭିତରେ ଗଛବୃଛ ସ୍ପଷ୍ଟ ବାରି ହେଉନଥିଲେ ।

ଟିପୟ ଉପରେ ଥିବା କପରେ ଚା' ଥଣ୍ଡାହୋଇ ଆସିଥିଲା । ମାଛି କେତୋଟି ବସିଥିଲେ ଧାରରେ । ଅଲିଭା ତାଙ୍କୁ ଉଡାଇଦେବାକୁ ଚେଷ୍ଟା କଲେନାହିଁ । ଏଥର ସେ ଜାଣିସାରିଥିଲେ ସେ ଚା' ଆଉ କେହି ପିଇବେ ନାହିଁ । କାରଣ ଅଚାନକ ସୁଧାଂଶୁ କେଉଁଠୁ ବାହାରି ଆସିବାର ଆଶା ତାଙ୍କର ମରିଯାଇଥିଲା ।

ଅଲିଭା ସ୍ଥାଣୁ ପାଲଟି ଯାଇଥିଲେ । ଆଖିପତା ଲାଗି ଲାଗି ଆସୁଥିଲା । ଭିତରେ ଭିତରେ ସଂକୁଚିତ ହୋଇଯାଉଥିଲା ତାଙ୍କର ଚେତନସତ୍ତା ।

ହଠାତ୍ ତାଙ୍କର ମନେହେଲା ସତେ ଯେମିତି ପାଦତଳେ ଥିବା ମାଟି ତାଙ୍କୁ ତା'ର ମଧୁମନ୍ଦ୍ର ସ୍ୱରରେ ଡାକୁଛି, ସତେ ଯେମିତି ତାଙ୍କୁ ଆଲିଙ୍ଗନ କରିବାପାଇଁ ବାହୁ ପ୍ରସାରିତ କରି ରଖିଛି ।

ଅଲିଭା ଗୋଟାଏ ଆବେଗରେ ଲୋଟିପଡ଼ିଲେ ସେଇ ମାଟି ଉପରେ । ତାଙ୍କର ସମଗ୍ର ସତ୍ତାରେ ମାଟିର ପ୍ରଗାଢ଼ ସ୍ପର୍ଶ । ସେ ଅନୁଭବ କରିପାରିଲେ ମାଟିର ପ୍ରତିଟି ଅଣୁକଣାରେ ସେଇ ଅମୃତପଥ ଯାତ୍ରୀର ପୁଣ୍ୟ ନିଃଶ୍ୱାସ ବିଜଡ଼ିତ ହୋଇରହିଛି । ତା'ରି ତଳେ ତାଙ୍କ ଜୀବନର ସୁମଧୁର ଅଧ୍ୟାୟଟି ସମାଧିସ୍ଥ ହୋଇଯାଇଛି ।

ତାଙ୍କ ଜୀବନର ପରମ ଆତ୍ମୀୟ ଚାଲିଯାଇଛି କେଉଁ ଅଜଣା ଜଗତକୁ । ମହାଶୂନ୍ୟରେ ମିଳାଇଯାଇଛି ତା'ର କଣ୍ଠସ୍ୱର । ଯାହାର ଏତେ ଟିକେ ପ୍ରୀତି ସ୍ପର୍ଶ ଜୀବନକୁ ଆହ୍ଲାଦରେ ଭରି ଦେଉଥିଲା, ଯାହାର କଣ୍ଠସ୍ୱର ତାଙ୍କ ହୃଦୟକୁ ପୂର୍ଣ୍ଣକରିଦେଉଥିଲା ସେ

ଆଉ ନାହିଁ । ଚିରଦିନ ପାଇଁ ଏ ଦୁନିଆରୁ ସେ ହଜିଯାଇଛି; କେଉଁ ଦୂର ଆକାଶର ବୁକୁରେ ତାରାର ଚାହାଣୀରେ ପରିଣତ ହୋଇଯାଇଛି । ଦିନର ଆଲୋକରେ ତା'ର କୌଣସି ଅସ୍ତିତ୍ୱ ନାହିଁ ।

ଅଲିଭା ବୁଝିପାରୁଥିଲେ ତାଙ୍କ ଜୀବନର ଶ୍ରେଷ୍ଠ ଅବଲମ୍ବନ ଭାଙ୍ଗିପଡ଼ିଛି, ଜୀବନର ଶତଦଳ କାଳର ଆଘାତରେ ଗୋଟିଗୋଟି ହୋଇ ଝରିପଡ଼ି କାହିଁ କେଉଁ ଦିଗରେ ଭାସିଯାଇଛି । ସବୁଦିଗରୁ ମାଡ଼ିଆସୁଛି ଅନ୍ଧକାରର ସ୍ରୋତ । ସେଇ ନିରନ୍ଧ୍ର ଅନ୍ଧକାର ଭିତରେ ଅଲିଭା ମୃତବତ୍ ଶରୀରରେ କେବଳ ଅନୁଭବ କରିପାରୁଥିଲେ ତାଙ୍କର ଅବଲୁଂଠିତ ଶରୀରରେ ମାଟିର ରୁକ୍ଷ କୋମଳ ସ୍ପର୍ଶ ।

ଅଲିଭା ସଚେତନ ହୋଇଉଠିଲେ, ସବୁର ଶେଷ ପରିଣତି କ'ଣ ଏଇ ମାଟି ! ସବୁ ସ୍ନେହ, ପ୍ରେମ, ମାୟାମମତା, ହସକାନ୍ଦ, ମାନଅଭିମାନର ସମାପ୍ତି କ'ଣ ଏଇ ରୁକ୍ଷ ପ୍ରାଣହୀନ ମାଟିରୁ ମୁଠାଏ ! ଅଲିଭା ନିଜ ଭିତରେ ଶୁଣି ପାରୁଥିଲେ ସେ ଯେଉଁ ପ୍ରଶ୍ନ ପଚାରୁଛନ୍ତି ତାହାତ ମଣିଷ ଯୁଗଯୁଗାନ୍ତରରୁ ପଚାରି ଆସିଛି, କେହି କ'ଣ ତା'ର ଉତ୍ତର ପାଇଛନ୍ତି ଯେ ସେ ଉତ୍ତରର ଆଶା କରୁଛନ୍ତି ! ପୁଣି କାହାଠାରୁ ? ସବୁ ପ୍ରଶ୍ନତ ବିନା ଉତ୍ତରରେ ମିଳାଇଯାଏ ମହାଶୂନ୍ୟରେ ।

ତା'ହେଲେ ମଣିଷ ଏତେ ଭ୍ରାନ୍ତ ହୁଏ କାହିଁକି ? କାହିଁକି ସେ ଭଲପାଏ ଏତେ ନିବିଡ଼ ଭାବରେ ଯାହାର ପରିଣତି କେବଳ ଶୂନ୍ୟତା, ବ୍ୟର୍ଥତା, ବେଦନାସିକ୍ତ ଅଶ୍ରୁର ପ୍ଲାବନ ।

ଅଲିଭାଙ୍କର ପୁଣି କେମିତି ମନେହେଲା ବିଶାଳ ଏଇ ପୃଥିବୀ ଅନନ୍ତ ଏହାର କାଳପରିଧି । ଗୋଟିଏ ଦିଗରେ ଅଛି ପ୍ରେମ, ପ୍ରୀତି, ଆନନ୍ଦର ଅଫୁରନ୍ତ ଉତ୍ସ ଅନ୍ୟଦିଗରେ ଦୁଃଖ, ବେଦନା, ବିଚ୍ଛେଦର ଉଷ୍ଣ ଦୀର୍ଘଶ୍ୱାସ । ଏଇସବୁକୁ ନେଇତ ମଣିଷ ବଞ୍ଚିଆସିଛି । ଏଇ ରୂପ-ରସ-ଶବ୍ଦ ଗନ୍ଧଭରା ପୃଥିବୀକୁ ନେଇ ମଣିଷ ଭଲପାଏ, ଦୁଃଖ ପାଏ । ଜୀବନର ରିକ୍ତପାତ୍ର ପୂର୍ଣ୍ଣତାର ପ୍ରସାଦରେ ଭରିନିଏ । ନିଃସଙ୍ଗ ଜୀବନର ଦୁର୍ବିସହତାରେ ଆର୍ତ୍ତନାଦ କରିଉଠେ, ପୁଣି ଭୁଲିଯାଏ ତ । ଅତୀତର ସ୍ମୃତିର ଗନ୍ତାଘରେ ସେ କେବଳ କେବେ ଦେଖିଥିବା ଗୋଟିଏ ଅଧାଦେଖା ସ୍ୱପ୍ନପରି ରହିଯାଏ ।

ଭଲପାଇବା ଜୀବନର ଗୋଟିଏ ସୁନ୍ଦରତମ ମୁହୂର୍ତ୍ତର ପରମ ପ୍ରକାଶ ବୃକ୍ଷର ଏକ ପତ୍ରଶାଖାରେ ପୁଷ୍ପର ପ୍ରସ୍ଫୁଟନ ପରି । ସବୁ ରୂପ-ରସ-ବର୍ଣ୍ଣ-ସୌରଭ ନେଇ ତାର ଜନ୍ମହୁଏ, ଝରିଯାଏ, ପୁଣି ଫୁଟିଉଠେ ଅନ୍ୟ ଏକ ବୃନ୍ତରେ । ସେଇ ବର୍ଣ୍ଣିଳ ଗନ୍ଧଭରା

ସୁରଭିତ ପ୍ରକାଶ । ସେମିତି ମଣିଷ ଅନ୍ତରରୁ ପ୍ରେମର ଧାରା ଶୁଖିଯାଏନି, ଭଲପାଇବା ମରିଯାଏନି... ଚିର ସବୁଜତାର ପ୍ଲାବନ ନେଇ ପୁଣି ସେଇ ଶାଶ୍ୱତ ପ୍ରେମର ଧାରା ଝରିଆସେ । ଅନ୍ତରର ସମସ୍ତ ଦୁଃଖବେଦନାର କାଳିମାକୁ ଧୋଇନିଏ, ପୁଣି କାନରେ ଶୁଣାଇଦିଏ ନୂତନ ଦିଗନ୍ତର ଆହ୍ୱାନ ।

ଅଲିଭାଙ୍କର କ୍ଳାନ୍ତ ଦେହରେ ମାଟିର ସ୍ପର୍ଶ ଓ ପବନର ଶୀତଳ ଛୁଆଁରେ ପ୍ରାଣଶକ୍ତି ଯେପରି ଫେରିଆସୁଥିଲା ।

ଆକାଶରେ ରାତ୍ରିଶେଷର ପ୍ରହରଭଙ୍ଗା ଶୁକ୍ରତାରାର ଉଜ୍ଜ୍ୱଳ ଆଖିନେଇ ଜୀବନ ଯେପରି ତାକୁ ଚାହିଁ ରହିଥିଲା ।

ଅଲିଭା ସେମିତି ମାଟି ଉପରେ ଶୋଇରହି ଚାହିଁରହିଲେ ସେଇ ଦିଗରେ । ତାଙ୍କୁ ଲାଗିଲା ସତେ ଯେମିତି ସେଇ ସୁଦୂର ନକ୍ଷତ୍ରଲୋକରୁ ଭାସି ଆସୁଥିବା କିଛି ଅବୁଝା ଭାଷାରେ ତାଙ୍କୁ କେହି କିଛି କହୁଛି । କେମିତି ଏକ ଅବର୍ଣ୍ଣନୀୟ ଆନନ୍ଦରେ ତାଙ୍କର ପ୍ରାଣମନ ପୁଲକିତ ହୋଇଉଠିଲା । ଏତେ ଦିନର କ୍ଳାନ୍ତି ଯେମିତି ଅପସରି ଯାଇଥିଲା । ଏକ ଅପୂର୍ବ ଆନନ୍ଦର ଧାରା ତାଙ୍କ ସତ୍ତାର ଅଣୁକଣାରେ ପ୍ରବାହିତ ହେବାକୁ ଆରମ୍ଭ କରିଥିଲା ।

ପୂର୍ବ ଦିଗନ୍ତରେ ସୂର୍ଯ୍ୟ ଉଠି ଆସୁଥିଲେ । ଆଲୋକ ଓ ଅନ୍ଧାର ଯେମିତି ମିଶି ମିଶି ଯାଉଥିଲେ ।

ଅଲିଭା ଶୁଣି ପାରୁଥିଲେ ପାହାନ୍ତି ପହରର ପକ୍ଷୀଙ୍କ କାକଳି, ଡାଳରୁ ଡାଳକୁ ଉଡ଼ିବାର ଶବ୍ଦ । ଦେଖି ପାରୁଥିଲେ ଉଡ଼ି ଆସୁଥିବା କିଛି ବିଚିତ୍ରବର୍ଣ୍ଣା ପ୍ରଜାପତିଙ୍କୁ । ମାଟିରେ ଢେର ଲମ୍ବାଇଥିବା ଗଛମାନଙ୍କରେ ଯଥାରୀତି ଫୁଟୁଥିବା ବିବିଧ ରଂଗର ଫୁଲମାନେ ତାଙ୍କ ଦୃଷ୍ଟିରେ ପଡୁଥିଲେ । କେତେ ଦିନଧରି ପରିବେଶରେ ଛାଇ ରହିଥିବା କୁହେଳି ପରିଛନ୍ନ ହୋଇ ଆସୁଥିଲା ।

ଏଇ କେତେଦିନ ହେଲା କୁଣ୍ଡରେ ଶୁଖି ଯାଇଥିବା ଫୁଲଗଛ କେବଳ ଅଲିଭାଙ୍କର ଆଖିରେ ପଡୁଥିଲା । ମହାଏ ମାଟିକୁ ଅବଲମ୍ବନ କରି ଅଳ୍ପ କିଛି ଟେକାପାଣିରେ ବଞ୍ଚିଥିବା ଜୀବନ କେତେ ଶୀଘ୍ର ଶେଷ ହୋଇଗଲା, କେତେ ଶୀଘ୍ର ହଜିଗଲା ସେମାନଙ୍କର ଅସ୍ତିତ୍ୱ ।

ମାଟିର ଅମାପ ରସର ସ୍ରୋତ ସହିତ ସଂଯୁକ୍ତ ହୋଇଯାଇଥିବା ଗଛଟିମାନ କେତେ ସତେଜ, କେତେ ଶ୍ୟାମଳ, କେତେ ପୁଷ୍ପିତ ।

ମାଟି ଶେଯରୁ ଉଠିବସିଲେ ଅଲିଭା । ତାଙ୍କର ହଠାତ୍ ଅନୁଭବ ହେଲା ଏଇ ମାଟି, ଏଇ ଆକାଶ, ଏଇସବୁ ଗଛଲତା ପକ୍ଷୀ ପ୍ରଜାପତି ଓ ତାଙ୍କୁ ରହି ରହି ଛୁଇଁ ଯାଉଥିବା ପବନ ସାଙ୍ଗରେ ଯେମିତି ଅନାଦି କାଳରୁ ତାଙ୍କର ଏକ ଅଖଣ୍ଡ ବନ୍ଧନର ସୂତ୍ର ରହିଆସିଛି ।

ନିଜକୁ ଆଉ ଭିନ୍ନ ଭାବରେ ଦେଖିପାରିଲେନି ଅଲିଭା । ତାଙ୍କର ଯେପରି କୌଣସି ସ୍ୱତନ୍ତ୍ର ସତ୍ତା ନାହିଁ । ସେ କିଛି ନୁହନ୍ତି; କେହି ନୁହନ୍ତି । ସେ ସମସ୍ତଙ୍କ ଭିତରେ ନିଜକୁ ଅନୁଭବ କରୁଥିଲେ । ତାଙ୍କୁ ଲାଗୁଥିଲା କେହି ଯେମିତି ହଜିଯାଇନି, କେହି କିଛି ହରେଇନି । ଏକ ଅଦୃଶ୍ୟ ବନ୍ଧନରେ ସମସ୍ତେ ଏକାଠି ବାନ୍ଧି ହୋଇ ରହିଛନ୍ତି ।

ଅତୀତ ବର୍ତ୍ତମାନ ଭବିଷ୍ୟତ ମଧ୍ୟ କେବଳ ମହାକାଳର ମାଳାରେ ଆଗପଛ ହୋଇ ଗୁନ୍ଥାହୋଇଛି । ସମସ୍ତେ ସେହି ମହାଜୀବନର ଗୋଟିଏ ଗୋଟିଏ ସ୍ୱରୂପ ମାତ୍ର; ଗୋଟିଏ ଗୋଟିଏ ପ୍ରକାଶ ଭିନ୍ନ ଅଧିକ କିଛି ନୁହନ୍ତି ।

ଗୋଟିଏ ସ୍ୱରୂପ ହଜିଯାଇଛି ସ୍ୱାଭାବିକ ଭାବରେ, ପ୍ରକୃତିର ନିୟମରେ । କିନ୍ତୁ ସେ କ'ଣ କରିବାକୁ ଚାହୁଁଛନ୍ତି ? ଏସବୁର ବିରୋଧରେ ଅସ୍ୱାଭାବିକ ଭାବରେ ଅନ୍ୟ ଏକ ସ୍ୱରୂପକୁ ନଷ୍ଟ କରିଦେବାକୁ ଚେଷ୍ଟା କରୁଛନ୍ତି !

କେତେବଡ଼ ଅପରାଧ ସେ କରିବାକୁ ଯାଉଥିଲେ ! ଅଲିଭାଙ୍କ ହୃଦୟର ଜମାଟବନ୍ଧା ବ୍ୟଥା ବିଗଳିତ ହୋଇ ଲୁହ ରୂପରେ ଝରିପଡୁଥିଲା । ଧୀରେ ଧୀରେ ଶାନ୍ତ ଓ ସ୍ୱଚ୍ଛ ହୋଇଯାଉଥିଲା ତାଙ୍କର ଅନ୍ତର ।

ଏପର୍ଯ୍ୟନ୍ତ ଏକ ଗଭୀର ଆବେଶରେ ଥାଇ ଅଲିଭା ବୁଝିପାରିନଥିଲେ ଯେ ତାଙ୍କ ଅନୁଭବର ସହଭାଗୀ ହୋଇ ପ୍ରକୃତି ଗଙ୍ଗଶିଉଳି ଗଛର ସବୁତକ ଫୁଲ ତାଙ୍କରି ଉପରେ ଅଜାଡ଼ି ଦେଇଛି ।





# ହଂସ ପ୍ରହରୀ

## ଅର୍ଚ୍ଚନା ନାୟକ

ସାଂପ୍ରତିକ ଓଡ଼ିଆ କଥାସାହିତ୍ୟ ଜଗତରେ ଅର୍ଚ୍ଚନା ନାୟକ ଜଣେ ଅନନ୍ୟ କଥାଶିଳ୍ପୀ ଭାବରେ ସୁପରିଚିତା। ଉପନ୍ୟାସ, ଗଳ୍ପ, ନାଟକ, ଗୀତିକବିତା, ପ୍ରବନ୍ଧ ଓ ଅନୁବାଦ ସମେତ ତାଙ୍କର ଅଦ୍ୟାବଧି ପ୍ରକାଶ ପାଇଛି ପଞ୍ଚତିରିଶ ଖଣ୍ଡ ପୁସ୍ତକ। 'ହଂସପ୍ରହରୀ' ତାଙ୍କର ଦ୍ୱାଦଶ ଗଳ୍ପ ସଂକଳନ। ତାଙ୍କର ଗଳ୍ପଗୁଡ଼ିକର ବୈଶିଷ୍ଟ୍ୟ ହେଲା ତାହା ପାଠକକୁ ଜୀବନ ଓ ଜଗତକୁ ଅଧିକ ବ୍ୟାପକ ଓ ଗଭୀର ଭାବରେ ବୁଝିବାପାଇଁ ସାହାଯ୍ୟ କରିଥାଏ। ସେ ସ୍ୱପ୍ନ ସହ ବାସ୍ତବକୁ, ଅତୀତ ସହ ବର୍ତ୍ତମାନକୁ ଓ ପାର୍ଥିବ ସହ ଅପାର୍ଥିବ ଚେତନାକୁ ଏପରି କଳାକୁଶଳତାର ସହ ମିଶାଇ ଦେଇପାରନ୍ତି ଯାହା ପାଠକକୁ ଚମତ୍କୃତ କରିବା ସହ ତା' ମନରେ ଏକ ମହତ୍ତର ଜୀବନ ବଞ୍ଚିବା ପାଇଁ ଆସ୍ପୃହା ସୃଷ୍ଟି କରିପାରେ।